# ଠୁମ୍ରି



ଭି. ପି. କାଲେ

୧୯୯୪ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କୃତ

ଅନୁବାଦକ—ଡଃ ଭି. ଏସ୍. କୋଗଲେକର

# ଠୁମରି

ମୂଳ ମରାଠୀ ରଚନା :

ଭି. ପି. କାଲେ

ଅନୁବାଦ :

ଡା. ଭି. ଏସ୍. କୋଗଲେକର

ପ୍ରକାଶକ :

ଆନନ୍ଦ ପବ୍ଲିଶର୍ସ

# ଠୁମରି

(କ୍ଷୁଦ୍ରଗଳ୍ପ ସଙ୍କଳନ)

ପ୍ରକାଶକ :

ଆନନ୍ଦ ପବ୍ଲିଶର୍ସ

C/o: ଏସ୍‌ସାଇନ୍ସ ଡ୍ରାଇ ଓ୍ୱାର୍କସ

ଚଉଳିଆଗଞ୍ଜ, କଟକ-୪

ପ୍ରଚ୍ଛଦ :

ଶଶିକାନ୍ତ ରାଉତ

ପ୍ରଥମ ସଂସ୍କରଣ : ୧୯୯୩

ମୁଦ୍ରଣ :

ନୋବେଲ୍ ପ୍ରିଣ୍ଟର୍ସ

ନେତାଜୀ ନଗର, କଟକ-୧୦

ମୂଲ୍ୟ : ତିରିଶି ଟଙ୍କା ମାତ୍ର

# THUMRI

*By :* **V. P. Kale**
11 JHAPURJHA
SAHITYA SAHAVAS
BANDRA EAST
Bombay-400 051

*Translated by :*
**Dr. V. S. Joglekar**
Chauliaganja, Cuttack-4

*Publisher :*
**Ananda Publisher's**
Chauliaganja, Cuttack-4

First Edition-1993
*Price :* **Rs. 30-00**

କାଳେ ସାହେବ ।

ଏ କୃତ ଆପଣଙ୍କର ।

କେବଳ ଭାଷାର ମାଧ୍ୟମ ବଦଳିଛୁ ।

ମରାଠୀ ସାହିତ୍ୟ ଜଗତରେ ଆପଣଙ୍କ

ସ୍ଥାନ ଅତି ଉଚ୍ଚରେ ।

କୀର୍ତ୍ତିର ଆଉ ଏକ ଦ୍ୱାର ଆଜ ଉନ୍ମୁକ୍ତ

ଏ କୀର୍ତ୍ତି ଏମିତି ଦଶଦଗକୁ ବ୍ୟାପ୍ତ ହେଉ ।

ଏହି ଶୁଭେଚ୍ଛା ସହ, ଏ କୃତଟିକୁ

ଆପଣଙ୍କୁ ଅର୍ପଣ କରୁଛୁ ।

ଡା. ଯୋଗଳେକର



# 'ତୁମର' ସଂପର୍କରେ ପଦେ

ଶ୍ରୀଯୁକ୍ତ ଭି. ପି. କାଲେ, ମରାଠୀ ସାହିତ୍ୟର ଜଣେ ବିଶିଷ୍ଟ କଥାକାର । ତାଙ୍କର ଖ୍ୟାତି କେବଳ ମହାରାଷ୍ଟ୍ର ଭିତରେ ସୀମାବଦ୍ଧ ହୋଇ ରହିନାହିଁ, ଭାରତ ବର୍ଷର ଅନ୍ୟାନ୍ୟ ଭାଷାରେ ତାଙ୍କ ଗଳ୍ପଗୁଡ଼ିକ ଅନୂଦିତ ହୋଇ ବେଶ୍ ଗ୍ରହଣୀୟ [illegible] ପାରିଛି । ଭି. ପି କାଲେ ଜଣେ କଥାକାର; ଜଣେ ମନସ୍ୱୀ ସମ୍ବେଦନଶୀଳ କଥାକାର । ତାଙ୍କର କଥାରେ ଅଛି ବିଚିତ୍ର ଏବଂ ଗତି ପ୍ରବାହ ମଧ୍ୟ ବିଚିତ୍ର । ଯେତେବେଳେ କେଉଁ ପରିସ୍ଥିତିକୁ ଉପଜୀବ୍ୟ କରି କଥା ସୃଷ୍ଟି କରନ୍ତି ତାହା କେବଳ ସେହି ମନସ୍ୱୀ ସ୍ରଷ୍ଟା ଜାଣନ୍ତି । ସାଂପ୍ରତିକ କାଳର ସାମାଜିକ ଜୀବନରେ ସୃଷ୍ଟିହୋଇଥିବା ଚରିତ୍ରମାନଙ୍କୁ ସେ ନିର୍ବାଚିତ କରିନିଅନ୍ତି ଆପଣାର ଗଳ୍ପ ଭିତରକୁ ଏବଂ ସେହି ସେହି ଚରିତ୍ରମାନଙ୍କ ପରିସ୍ଥିତି ଓ ସତ୍ତା ଭିତର ଦେଇ ସମଗ୍ର ସାମାଜିକ ପ୍ରାଣସତ୍ତାକୁ ପ୍ରକାଶ କରିଦିଅନ୍ତି । କଥା–ସ୍ରୋତର ଅନ୍ତଃସ୍ଥଳରେ ଥାଏ ଏକ ବେଦନାବୋଧ; ଅଥଚ ବ୍ୟଙ୍ଗ ବିଦ୍ରୂପ ଓ ହାସ୍ୟରେ ତାହା ଏପରି ଆଚ୍ଛନ୍ନ ହୋଇ ରହିଥାଏ ଯେ ପାଠକ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ନିବିଷ୍ଟ ହୋଇ ରହିଯାଏ । ଏକ ଗଭୀର ଉଲ୍ଲାସବୋଧ ସୃଷ୍ଟି ହୁଏ ପାଠକ ହୃଦୟରେ । ଯେତେବେଳେ ପାଠକ ହାସ୍ୟର ପରଦା ଭେଦକରି ଭିତରକୁ ଯାଏ ସେତେବେଳେ ସେ ଅନୁଭବ କରେ ଶାଣିତ ବ୍ୟଙ୍ଗ ଓ ବିଦ୍ରୂପର ସ୍ୱର । ସେହି ବ୍ୟଙ୍ଗ ଅତ୍ୟନ୍ତ ଶକ୍ତିଶାଳୀ । କ୍ଷମତାମଦମତ୍ତ, ଅର୍ଥପ୍ରମତ୍ତ ଓ ଅଯଥା ମୂଲ୍ୟବୋଧ ପ୍ରତି ଆସକ୍ତ ମଣିଷମାନଙ୍କୁ ତୀବ୍ର ବ୍ୟଙ୍ଗ କରାଯାଇଛି ଏବଂ ସେହି ମଣିଷମାନଙ୍କ ଦୁର୍ବଳ ସତ୍ତାକୁ ଆବିଷ୍କାର କରାଯାଇ ପ୍ରକୃତ ମଣିଷକୁ ଦେଖେଇ ଦିଆଯାଇଛି । କାଲେଙ୍କ ଗଳ୍ପ-ଜଗତର ମଣିଷ ଆଞ୍ଚଳିକ ସୀମା ସରହଦକୁ ଅତିକ୍ରମ-କରି ସର୍ବଜନୀନ ହୋଇ ଯାଇଛନ୍ତି । ଭାଷା ମରାଠୀ । ମଣିଷମାନେ କିନ୍ତୁ ସବୁ ଅଞ୍ଚଳର । ଯେକୌଣସି ଭାଷାର ପାଠକ କାଲେଙ୍କ ଚରିତ୍ରମାନଙ୍କୁ ଆପଣାର ଭାଷା–ପରିମଣ୍ଡଳ ଭିତରେ ଲକ୍ଷ୍ୟ କରିପାରେ ।

'ରମି' ଗଳ୍ପରେ ସିକ୍ୱେନ୍ସର ସିକ୍ୱେନ୍ସ ହୋଇଯିବାର ମହତ୍ତ୍ୱ ପାଠକକୁ ଯେପରି ଅଭିଭୂତ କରେ ସେହିପରି 'କାନ୍ତି' ଗଳ୍ପରେ ଟଙ୍କା କରଜ ଦେଇ ମାସକୁ ମାସ ନିର୍ଦ୍ଦିଷ୍ଟ ତାରିଖ ଓ ସମୟରେ ଆଦାୟ କରୁଥିବା ମଣିଷର ଅର୍ଥ ସଞ୍ଚୟ ଓ ତଜ୍ଜନିତ ବେଦନାବୋଧ, ଟଙ୍କା କରଜ ନେଇ ସେହି ଟଙ୍କାରେ ଆଧୁନିକ ଭ୍ରାନ୍ତ ଅଭିଜାତ୍ୟ ଦେଖାଉଥିବା ମଣିଷର ଅସହାୟତା ଓ ସର୍ବୋପରି କରଜ ଦେଉଥିବା ମଣିଷର ତିରୋଧାନ ପରେ ଲୁପ୍ତିହୋଇ ରହିଥିବା ତା'ର ସ୍ତ୍ରୀ ଓ ପିଲାଙ୍କର ଜୀବନକୁ ଟିକେ ଫୁର୍ତ୍ତି କରିବାର ଅଭିଳାଷ ବେଶ୍ ହୃଦ୍ୟ ଓ ମର୍ମସ୍ପର୍ଶୀ । ଏପରି ଚରିତ୍ର ସର୍ବତ୍ର ପରିଦୃଷ୍ଟ । 'ଫେରିଲିନ' ଗଳ୍ପରେ କଦାକାର ଅଥଚ ଶକ୍ତିଶାଳୀ ମଣିଷଟିର ସୁନ୍ଦରୀ ସ୍ତ୍ରୀ ଓ ତଜ୍ଜନିତ ମାନସିକ ଭାବାବେଗର ବିଶ୍ଳେଷଣ ଏବଂ ସେହି ବ୍ୟକ୍ତିର

ନନ୍ଦକୁ ସୁନ୍ଦର ଟେରଲିନ୍ ପୋଷାକରେ ସଜ୍ଜୀକରଣ କରି ସ୍ତ୍ରୀକୁ ଆକର୍ଷଣ କରିବାର ଅଭିଳାଷ, 'ଦୂରତା' ଗଳ୍ପରେ ପ୍ରସିଦ୍ଧ ଲେଖକ ଅଧ୍ୟାପକ ଚନ୍ଦ୍ରଚୂଡ଼ଙ୍କର ଶିକ୍ଷକ ସଦାନନ୍ଦଙ୍କ ନିମନ୍ତ୍ରଣ କ୍ରମେ ତାଙ୍କ ଗ୍ରାମକୁ ଆଗମନ ଓ ଭାଷଣ ପ୍ରଦାନ, ସଦାନନ୍ଦଙ୍କ ସ୍ତ୍ରୀଙ୍କ ପ୍ରତି ନୀରବ ଆକର୍ଷଣ, ଓ ସମ୍ପର୍କ ସ୍ଥାପନ, ପରେ ତାଙ୍କର ମାନସିକ ଯନ୍ତ୍ରଣା ଓ ପୁନର୍ବାର ସଦାନନ୍ଦଙ୍କ ଗୃହକୁ ଆଗମନ, ସଦାନନ୍ଦଙ୍କ ମହାନତାରେ ଚନ୍ଦ୍ରଚୂଡ଼ଙ୍କର ବ୍ୟକ୍ତିତ୍ୱର ଲଘୁତା ଜୀବନ୍ତ ଭାବରେ ରୂପାୟିତ । ନାରୀର ଅବଚେତନର ରହସ୍ୟ ମଧ୍ୟ ଏହି ଗଳ୍ପରେ ରୂପାୟିତ । ଏକ ପକ୍ଷରେ ପରିପୂର୍ଣ୍ଣ ଆଦର୍ଶ ଓ ଅନ୍ୟପକ୍ଷରେ ଆଦର୍ଶର ଅନ୍ତରାଳରେ ଉତ୍କଟ ଉପଭୋଗ-ତୃଷ୍ଣା -- ଏହି ଦୁଇଟି ମଧ୍ୟରେ ଦୂରତା ଯେ ଯୋଜନ ଯୋଜନ; କଥାକାର ଏହି ସତ୍ୟକୁ ପ୍ରକାଶ କରିଅଛନ୍ତି । ଏହିପରି 'ଋତୁ ବସନ୍ତ ଋତୁଗନ୍ଧି', କ୍ୟାଲେଣ୍ଡର, ବଦଳ, ଅବତାର, ଝୋଜା ଆଦି ବିଭିନ୍ନ ଗଳ୍ପରେ ହାସ୍ୟ, ବିଦ୍ରୂପ ଓ ବ୍ୟଙ୍ଗ ମଧ୍ୟ ଦେଇ ଜୀବନର ବେଦନାବୋଧ ପ୍ରକଟିତ ଏବଂ ସଙ୍ଗେ ଆଧୁନିକ ମଣିଷର ଅନ୍ତର୍ନିହିତ ସ୍ୱରୂପ ଉଦ୍‌ଘାଟିତ ।

ଶ୍ରୀଯୁକ୍ତ କାଲେ ସାମ୍ପ୍ରତିକ କାଳର ମହାନ୍ କଥାକାର । ତାଙ୍କର ଅଜସ୍ର ଗଳ୍ପ ମଧ୍ୟରୁ ମାତ୍ର କେତୋଟିକୁ ଡାକ୍ତର ଡି. ଏସ୍. ଯୋଗଲେକର ଅନୁବାଦ କରିଛନ୍ତି ଓଡ଼ିଆରେ ଏବଂ ଏହି ଗଳ୍ପଗୁଡ଼ିକ ପୂର୍ବରୁ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଇ ଓଡ଼ିଶାର ସୁଧୀପାଠକମାନଙ୍କ ଦୃଷ୍ଟି ଆକର୍ଷଣ କରିପାରିଛି । ଶ୍ରୀଯୁକ୍ତ ଯୋଗଲେକର କାଲେଙ୍କ ପରି ଜଣେ ପ୍ରଥିତଯଶା ମରାଠୀ କଥାକାରଙ୍କ ସୃଷ୍ଟି-ପରିଧି ସହିତ ଓଡ଼ିଶାର ପାଠକମାନଙ୍କୁ ପରିଚିତ କରାଇ ଦେଇଥିବାରୁ ଧନ୍ୟବାଦାର୍ହ । ଆଶା ଓ ବିଶ୍ୱାସ ସେ କାଲେଙ୍କ ଅନ୍ୟାନ୍ୟ କ୍ରାନ୍ତିକାରୀ ଗଳ୍ପଗୁଡ଼ିକୁ ଅନୁବାଦ କରିବେ ଓ ମହାରାଷ୍ଟ୍ର ଏବଂ ଓଡ଼ିଶାର ସାରସ୍ୱତ-ବଳୟକୁ ଘନିଷ୍ଠ ଭାବରେ ସଂଯୋଗ କରିବେ । ଅନୁବାଦ ସହଜ କଳା ନୁହେଁ । ଅନ୍ୟ ଏକ ଭାଷାର ସାହିତ୍ୟକୁ ଆଉ ଗୋଟିଏ ଭାଷାରେ ଅନୁବାଦ କଲାବେଳେ ଅନେକ ବାଧା ସୃଷ୍ଟି ହୁଏ । ଜଣେ ସାର୍ଥକ ଅନୁବାଦକ ହିଁ ଅନୁବାଦକୁ କଳାତ୍ମକ କରିଦିଏ । ଶ୍ରୀଯୁକ୍ତ ଯୋଗଲେକର ଏ ଦୃଷ୍ଟିରୁ ସାର୍ଥକ । ସ୍ଥଳ ବିଶେଷରେ କେତେ ଚରିତ୍ର ଓ ସ୍ଥାନର ନାମକୁ ସେ ଓଡ଼ିଶୀ ଚରିତ୍ର ଓ ସ୍ଥାନରୂପେ ଉଲ୍ଲେଖ କରିଅଛନ୍ତି । ଏହି ଅନୁବାଦ ସୁଖପାଠ୍ୟ ଓ ମୋର ବିଶ୍ୱାସ ଏହା ପାଠକମାନଙ୍କ ଦୃଷ୍ଟି ଆକର୍ଷଣ କରିବ ।

ଶ୍ରୀଯୁକ୍ତ ଯୋଗ୍‌ଲେକରଙ୍କର ଏହି ସାଧନା ଅପ୍ରତିହତ ରହୁ ।

**ଡଃ. ବୈଷ୍ଣବଚରଣ ସାମଲ, ଏମ୍. ଏ. ଡି ଲିଟ**
ସ୍ନାତକୋତ୍ତର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର



# ମୋ ତରଫରୁ ପଦେ

ଏମିତି ଏକ ଜରୁରୀ କାମରେ ବମ୍ବେ ଯାଇଥିଲି । ବର୍ଷାଦିନ । ବମ୍ବେର ପ୍ରବଳ ବର୍ଷା ମତେ ମୋ ମାମୁଙ୍କ ଘରେ ପୂରା ଚବିଶ ଘଣ୍ଟା ବସେଇ ଦେଲା । ସେହି ସମୟରେ ମାମୁଙ୍କ ଘରେ କାଳେ ସାହେବଙ୍କ ଗଳ୍ପ ସଙ୍କଳନ "ମି ମାଣୁସ ଶୋଧତୋୟ" (ମୁଁ ମଣିଷ ଖୋଜୁଛି) ପଢ଼ିବାକୁ ପାଇଲି, ପଢ଼ିବାକୁ ଆରମ୍ଭ କଲି । ଶେଷ ହେବା ପରେ ହିଁ ଉଠିପାରିଲି । ତା' ପରେ ଯେଉଁଠି ତାଙ୍କ ଲେଖା ସବୁ ପାଇଲି, ପଢ଼ିଲି । ପ୍ରତ୍ୟେକ ଗଳ୍ପ ପଢ଼ିବା ପରେ ମୁଁ ନିଜକୁ ନୂଆ ରୂପରେ ଆବିଷ୍କାର କରୁଥିଲି । ମୋ ମନୋମସ୍ତିଷ୍କକୁ ତାଙ୍କ ଗଳ୍ପର ପ୍ରତ୍ୟେକ ଚରିତ୍ର ବ୍ୟାପ୍ତ କରି ରଖିଥିଲା । ସେଥିରୁ ବାରଜଣଙ୍କୁ ଆଜି ମୁଁ ଆପଣଙ୍କ ପାଇଁ ଉଠାଇଦେଇଛି ତେଣୁ ଟିକେ ହାଲୁକା ମଧ୍ୟ ବୋଧ କରୁଛି ।

ମଧ୍ୟବିତ୍ତ ପରିବାରରେ ଜନ୍ମଗ୍ରହଣ କରିଥିବା କାଳେ ସାହେବ ଜୀବନରେ ଅନେକ ସଂଘର୍ଷ ମଧ୍ୟ ଦେଇ ଗତିକରି ବମ୍ବେ କର୍ପୋରେସନରେ ଜଣେ ଆର୍କିଟେକ୍ଟ ଭାବରେ କାମକରି ସଂପ୍ରତି ଅବସର ଗ୍ରହଣ କରିଛନ୍ତି । ତାଙ୍କ ଚାକିରି କାଳରେ ସେ ଏଭଳି ଅନେକ ବ୍ୟକ୍ତିଙ୍କ ସଂସ୍ପର୍ଶରେ ଆସିଲେ, ଯେଉଁମାନଙ୍କୁ ଶବ୍ଦରୂପ ଦେଇ କାଗଜରେ ଉତାରିଲେ । ମଧ୍ୟବିତ୍ତ ପରିବାରର ଲୋକମାନଙ୍କ ସମସ୍ୟା, ସେମାନଙ୍କ ବ୍ୟଥା ବେଦନା, ସେମାନଙ୍କ ହସ ଓ ଖୁସି, ସେମାନଙ୍କ ସ୍ୱପ୍ନ ବିଳାସ ଓ ସ୍ୱପ୍ନ ଭଙ୍ଗର ଏକ ନିଖୁଣ ଚିତ୍ର ସେ ତାଙ୍କ ଗଳ୍ପରେ ଫୁଟାଇ ପାରିଛନ୍ତି । ସେଥିପାଇଁ ତାଙ୍କ ଗଳ୍ପ ପଢ଼ିବା ସମୟରେ ମଣିଷ ସେଥିରେ ନିଜକୁ ହଜେଇଦିଏ । ଏହାହିଁ ତାଙ୍କ ଶ୍ରେଷ୍ଠତାର ପ୍ରମାଣ ।

ମୁଖ୍ୟତଃ ସେ ଜଣେ ଗାଳ୍ପିକ । ଆଜି ପର୍ଯ୍ୟନ୍ତ ତାଙ୍କରି ଊର୍ଦ୍ଧ୍ୱ ଗଳ୍ପ ପଚିଶଟା ସଂକଳନରେ ପ୍ରକାଶିତ ହୋଇ ସାରିଛି । ଏହା ବ୍ୟତୀତ ଦୁଇ ତିନିଟା ଉପନ୍ୟାସ ଓ ଏକାଙ୍କିକା ମଧ୍ୟ ଲେଖିଛନ୍ତି । ତାଙ୍କ ଉପନ୍ୟାସ 'ପାର୍ଟନର୍' ବମ୍ବେ ଦୂରଦର୍ଶନରେ ସିରିୟଲ ରୂପରେ ପ୍ରଦର୍ଶିତ ହୋଇସାରିଛି । ଅତିଶୀଘ୍ର ଆପଣମାନେ ଏ ଉପନ୍ୟାସର ଓଡ଼ିଆ ଅନୁବାଦ ପଢ଼ିପାରିବେ । ତା'ଛଡ଼ା ଦିଲ୍ଲୀ ଦୂରଦର୍ଶନ ତାଙ୍କ ଗଳ୍ପଗୁଡ଼ିକୁ ନେଇ ତେର ଏପିସୋଡ଼ର 'ଘୁଟ୍ନେ' ନାମକ ସିରିୟଲ ପ୍ରଦର୍ଶିତ କରି ସାରିଛନ୍ତି ।

ଶେଷରେ ଅନୁବାଦର ଅର୍ଥ କେବଳ ଅକ୍ଷରିକ ଅନୁବାଦ ନୁହେଁ । ମୂଳ ଲେଖକ କହିବାକୁ ଚାହୁଁଥିବା ଭାବ ଯେଉଁଥିରେ ପରିଲକ୍ଷିତ ହେବା ଜରୁରୀ । ସେହି ଦୃଷ୍ଟିରୁ ଶୀର୍ଷକ, କାଳ, ପାତ୍ରରେ ଯେଉଁଠି ପରିବର୍ତ୍ତନ ଆବଶ୍ୟକ ହେଲା ତାହା କରାଯାଇଛି । ଅନୁବାଦ କରୁଥିବା ସମୟରେ ଡା. ବୈଷ୍ଣବ ଚରଣ ସାମଲ ଓ ଡା: ନୃସିଂହ ଷଡ଼ଙ୍ଗୀ ତାଙ୍କର ଅମୂଲ୍ୟ ସମୟ ନଷ୍ଟକରି ନିର୍ଦ୍ଦେଶନା ସହ ଭାଷାଜନିତ ତ୍ରୁଟି ପରିମାର୍ଜନା କରିବା ଦିଗରେ ଯେଉଁଭଳି ସାହାଯ୍ୟ କରିଛନ୍ତି ସେଥିରେ ମୁଁ ତାଙ୍କ ନିକଟରେ ଚିର ଋଣୀ । ଏହା ଛଡ଼ା ମୋର ଅନେକ ହିତାକାଂକ୍ଷୀ ବନ୍ଧୁ ଓ ପରିବାର ବର୍ଗ ମତେ ଯେଉଁଭଳି ଉତ୍ସାହ ଦେଇ ଏ କାର୍ଯ୍ୟକୁ ସଫଳ କରିବା ଦିଗରେ ସାହାଯ୍ୟ କରିଛନ୍ତି ସେଥିପାଇଁ ତାଙ୍କୁ ମୋର ମନଃପୂର୍ବକ ଧନ୍ୟବାଦ । ଏହା ବ୍ୟତୀତ ଅଳ୍ପ ସମୟ ମଧ୍ୟରେ ଛପିବାକୁ ପ୍ରସ୍ତୁତ କରିଥିବା ପ୍ରଚ୍ଛଦ ଓ ନୋବେଲ ପ୍ରିଣ୍ଟର୍ସର କର୍ମଚାରୀମାନଙ୍କୁ ମୋର ଆନ୍ତରିକ ଶୁଭେଚ୍ଛା । ବର୍ତ୍ତମାନ ଏ ବହି ଆପଣଙ୍କ ହାତରେ ଏଥିରେ ଥିବା ଗଳ୍ପଗୁଡ଼ିକ ଭିନ୍ନ ଭିନ୍ନ ସମୟରେ ବିଭିନ୍ନ ମାସିକ ଓ ତ୍ରୈମାସିକ ପତ୍ରିକାରେ ପ୍ରକାଶିତ ହୋଇଥିଲା । ଏହା ଯଦି ଆପଣଙ୍କ ମନକୁ ଛୁଇଁପାରିଲା ଓ ଆନନ୍ଦ ଦେଇପାରିଲା, ତା'ହେଲେ ମୋ ଅନୁବାଦ ସାର୍ଥକ ହୋଇଛି ବୋଲି ଭାବିବି । ଆପଣଙ୍କ ମତାମତ ଅପେକ୍ଷାରେ ରହିଲି ।

ଡା. ଭି. ଏସ୍. ଜୋଗଲେକର
ଚୁଢ଼ଙ୍ଗଆଗଞ୍ଜ, କଟକ-୪

# ସୂଚୀପତ୍ର





# ରମି

ମୁଁ କ୍ୟାପ୍‌ଟେନ୍‌ ଗୋଗଟେ କହୁଛୁ—

ଶରିଭରରୁ ସ୍ୱର ଭସି ଆସିଲା । ମୁଁ ହୁଡ଼ବଡ଼େଇ ଗଲି । ମୋ ଚେହେରା ମଧ୍ୟ ବଦଳି ଯାଇଥିବ । କାରଣ ପାଖରେ ବସିଥିବା ଷ୍ଟେଜର୍ସ ପଗ୍ଭରିଲା—"Any thing wrong with you ?"

ମୁଁ ମୁଣ୍ଡ ହଲେଇ ମନାକଲି । ନିଜକୁ ସମ୍ଭାଳିବା ପାଇଁ ସେତକ ସମୟ ଯଥେଷ୍ଟ ଥିଲା ।

I want to speak Apte.

ମୁଁ ଧୀରେ ଧୀରେ କହିଲି—

Speaking.

କିଏ ? ଜୋକର ସାହେବ ?

ହଁ !

ସନ୍ଧ୍ୟାରେ ଅଫିସରୁ ଜେଟ୍ ଟ୍ରିଡ଼ରେ ଘରେ ପହଞ୍ଚିବେ ।

ଆପଣ କେବେ ଫେରିଲେ ?

ମୁଁ just ଗାଡ଼ିରୁ ଓହ୍ଲେଇଲି । ଷ୍ଟେସନରୁ ହିଁ ଫୋନ୍ କରୁଛୁ । ମାନେ କାମ କେତେ ଅର୍ଜେଣ୍ଟ ଭାବନ୍ତୁ । ମାଥେରାନ୍‌ରୁ (Bombay ପାଖରେ ଥିବା ହିଲ୍ ଷ୍ଟେସନ୍) ଟ୍ରଙ୍କକଲ୍ କରିବ ବୋଲି ଭାବିଥିଲି ।

ହଠାତ୍ ଏମିତ ଜରୁରୀ କ'ଣ ପଡ଼ିଲା ?

Sorry.

ଟିକେ Idia ଦେଇଥିଲେ ଭଲ ହୋଇଥାନ୍ତା । ସନ୍ଧ୍ୟା ପର୍ଯ୍ୟନ୍ତ ମୋର କେଉଁଥିରେ ମନ ଲାଗିବ ନାହିଁ ।

ତେଣୁ ତମେ ଜଲଦି ଆସିବ ।

କ୍ୟାପ୍‌ଟେନ୍ ସାହେବ·······

ଫୋନ୍ ବନ୍ଦ ହୋଇଗଲା ।

ମୁଁ ମୋ ସିଟ୍‌ରେ ଆସି ବସିଲି । ମନ ଅସ୍ଥିର ହେଲା ।

ମୁଣ୍ଡରେ ତୋଫାନ୍ ଉଠିଲା ।

କ୍ୟାପଟେନ୍ ସାହେବ୍ ଗାଡ଼ିରୁ ଓହ୍ଲାଇବା ମାତ୍ରେ ମତେ ଫୋନ୍ କାହିଁକି କଲେ ?

କାହିଁକି ?

ରମି ସହ୍ତ ଅ.ଠ ଦିନ ତଳେ ହନିମୁନ ପାଇଁ ମାଥେରାନ ଯାଇଥିଲେ । ଆଜି ହଠାତ୍ ଆସି ପହଞ୍ଚି ଥିଲେ । ପହଞ୍ଚିବା ମାତ୍ରେ ଫୋନ୍ କଲେ । ଘରେ ପହଞ୍ଚିବା ପର୍ଯ୍ୟନ୍ତ ମଧ୍ଯ ଅପେକ୍ଷା କଲେ ନାହିଁ । କହୁଥିଲେ ମାଥେରାନ୍‌ରୁ ଟ୍ରଙ୍କକଲ୍ କରିଥାନ୍ତ । ମାମଲା କ'ଣ ? ରମି ସହିତ ଝଗଡ଼ା ହୋଇନି ତ ? ତାଙ୍କର ଗୋରା ଟକ୍ ଟକ୍ ଚେହେରା , ଗାଲରେ ମର୍ଦ୍ଦାନୀ ଶାନ୍ , ଷ୍ଟ୍ରେଟ ଷ୍ଟ୍ରେଟ ମୁଛ, ତୀକ୍ଷ୍ଣ ଆଖି । ବାଳ କୁଣ୍ଡେଇବାର ବଶିଷ୍ଟ ଭଙ୍ଗୀ ମୋଗୁଁ ତାଙ୍କ ବ୍ୟକ୍ତିତ୍ଵର ମୋହରେ ଯେ କେହି ପଡ଼ିପାରେ ; ତଥାପି ସେ ବ୍ୟକ୍ତିକୁ ଦେଖିଲେ ଡର ମଧ୍ଯ ଲାଗେ । ପ୍ରଥମେ ଯେଉଁଦିନ ମୁଁ ତାଙ୍କୁ ଦେଖିଲି ମନେ ମନେ ଭାବିଲି ରମି ସହିତ କ୍ୟାପ୍‌ଟେନ୍‌ଙ୍କ ପଟିବ ତ ? କିନ୍ତୁ ରମି କଥା ଯେତେବେଳେ ଚିନ୍ତା କରି ଭାବିଲି ରମି ଭଳି ସରଳ କୋମଳ ସୁନ୍ଦର ଝିଅ ସହିତ ଝଗଡ଼ା କରିବା ପାଇଁ ତାଙ୍କର ଧୈର୍ଯ୍ୟ ହବନି, ତଥାପି ଯଦି ଝଗଡ଼ା କରିବାକୁ ଚାହିଁବେ ରମି କରେଇ ଦେବନି, କାରଣ ଏମିତି ଅନେଇ ଅନେଇ ହସିଦେବ ଯେ କ୍ୟାପ୍‌ଟେନ୍ ସବୁ ଭୁଲିଯାଇ ତାକୁ ଆଦର ନେବେ । ତା' ଅର୍ଥ ଏ କଥା ନୁହଁ ଯେ ତାଙ୍କ ସଂସାରରେ କେବେ ଝଗଡ଼ା ହେବନି ; କିନ୍ତୁ ହନିମୁନ୍‌ର ଏହି ଆ଼ଠଦିନ ଭିତରେ ଝଗଡ଼ା ହେବା ଅସମ୍ଭବ, ତା' ହେଲେ କ୍ୟାପ୍‌ଟେନ୍ ଫୋନ୍ କଲେ କାହିଁକି ?

ପାଞ୍ଚ ମିନିଟ୍‌ରେ ମୋ ମୁଣ୍ଡ ଆଉଟ୍ ହୋଇଗଲା, କ୍ୟାପ୍‌ଟେନ୍ ସହିତ ମୋର ଏଭଳି କୌଣସି ସମ୍ପର୍କ ନ ଥିଲା , ଯାହାଦ୍ଵାରା ସେ ମୋ ସହିତ ତାଙ୍କ ଜୀବନର କୌଣସି ଆନନ୍ଦଦାୟକ ଘଟଣା ନ ହେଲେ ଦୁଃଖଦାୟକ ପ୍ରସଙ୍ଗ ବଖାଣିବେ । ମୁଁ ରମିର ବନ୍ଧୁ ଥିଲି, ତାଙ୍କର ନୁହେଁ । ମୁଁ ତାଙ୍କର ବନ୍ଧୁ ନୁହେଁ ଏ କଥା ସେ ଭଲ ଭାବରେ ଜାଣିଥିଲେ ଓ ସେହିଭଳି ବ୍ୟବହାର ମଧ୍ଯ କରୁଥିଲେ । ବିବାହ ସମୟରେ ଯେଉଁ ତିନି ଦିନ ସେ ଏଠି ଥିଲେ ସେହି ତିନି ଦିନରେ ସେ ମୋ ସହିତ ପଦେ ଦ'ପଦ କହିଥିବେ, ରମି ବାହାଘରେ କ୍ୟାପ୍‌ଟେନ୍ ସାହେବଙ୍କ ପଛେ ପଛେ ଡାକେ ଦୂରରେ ଥିବୁ । ଆଉ କିଛି ନ କଲେ ଚଳିବ ; କିନ୍ତୁ କ୍ୟାପ୍‌ଟେନ୍ ସାହେବ୍ କହିବା ଦରକାର "ଆମ ବ୍ୟବସ୍ଥାଟି ଆପଣ ବଢ଼ିଆ ରଖିଲେ", ଏପରି ସାଟିଫିକେଟ୍

ରମିର ବାପା ଗର୍ଓ ସାହେବ୍ ଗୃହରେ ଥିଲେ । ସେ ଅନୁସାରେ ଧନ୍ୟବାଦ ଶେଷ କରି ଭୁଲ ନଜରକୁ ଉପେକ୍ଷା କରି ମୁଁ ଖଟିଥିଲି । ଯିବା ପୂର୍ବରୁ କ୍ୟାପ୍‌ଟେନ୍ ସାହେବ୍ ଗର୍ଓ ସାହେବ୍‌ଙ୍କୁ ଧନ୍ୟବାଦ୍ ଅର୍ପଣ କରିଥିଲେ ; କିନ୍ତୁ ସେ ମୋ ସମ୍ବନ୍ଧରେ ପଦଟିଏ ବି କିଛି କହି ନ ଥିଲେ । ସେ ଦିନ ବନରେ ସ କିଛି ଗୁଡ଼ ପକେଇବାକୁ ଇଚ୍ଛା ହୋଇଥିଲା । କିନ୍ତୁ ମୁଁ ସନ୍ତମ୍ ରଖିଲି । ମୁଁ ମୋର 'ଜୋକର୍' ନାମଟିକୁ ସାର୍ଥକ କରିବାକୁ ଚାହିଁଥିଲି, ତେଣୁ ହନିମୁନ୍‌ରୁ ଫେରିବା ପରେ ସେ ଯେ ମୋତେ ଫୋନ୍ କରିବେ ମୋ କଳ୍ପନା ବାହାରେ ଥିଲା । ରମି କ୍ୟାପ୍‌ଟେନ୍‌ଙ୍କୁ କିଛି କହିଲା କି ? ଅର୍ଥାତ୍ ମୋ ମନରେ ସେମିତି କିଛି ନଥିଲା ଓ ରମି ମନରେ ମଧ୍ୟ । ଓ ସେମିତି କିଛି ଘଟି ବି ନ ଥିଲା ତଥାପି—ତଥାପି—ସେ ରାତରେ······ସେ ରାତର କଥାଟି ଶୁଣି କ୍ୟାପ୍‌ଟେନ୍ ଯଦି ରାଗିଥିବେ । ଅବଶ୍ୟ ସେମିତି କିଛି ବିଶେଷ ଘଟି ନ ଥିଲା । କିନ୍ତୁ ଭୁଲ୍ ଚୂଡ଼ାମଣିର ନିଅଁ ଉପରେ ସନ୍ଦେହର କୋଠାଘର ତୋଳିବା ପାଇଁ ଯିଏ ଆଗ୍ରହୀ ତା' ବିଷୟରେ ନ କହିବା ଭଲ । ଯଦି ସେମିତି କିଛି ଘଟିଥାଏ ତା' ହେଲେ ଏହା କେବଳ ମୂର୍ଖାମୀ ବ୍ୟତୀତ ଆଉ କିଛି ହୋଇ ନ ପାରେ । କାରଣ "ଗଣେଶ କୃପା" ବାସ୍ତରେ କାହାର ହାତରୁ କିଛି ବିପତ୍ତି ଘଟିବା ଅସମ୍ଭବ ଥିଲା ।

ସେ ଘରେ, ସେ ପ୍ରସାଦ ଭଳି ବାସ୍ତରେ ମୁଁ ଓ ମୋ ମା' ରହିଲୁ କେବଳ ସେ ବାସ୍ତରେ ଥିବା ଜାଗ୍ରତ ଦୈବୀ ଶକ୍ତି ଯୋଗୁଁ । ପୂର୍ବରୁ ମୁଁ ଏ କଥା ଜାଣି ନ ଥିଲି ; କିନ୍ତୁ ରମି ମୋତେ ସମସ୍ତ ଘଟଣା ବିଶଦ ଭାବରେ କହିଥିଲା, ସେଠି ରହିବାର ଚାରିଦିନ ପରେ ।

ସକାଳୁ ସକାଳୁ ଗ୍ୟାରେଜ୍ ଘରୁ ବାହାରି ଦେଖେ ତ ସାମନାରେ ଏକ ସୁନ୍ଦର ଗୋରା ଡକ୍ ଡକ୍ ଚେହେରା, କଳା ରଙ୍ଗର ଆଖି, ସରଳତା, କୋମଳତାର ମୂର୍ତ୍ତିମନ୍ତ ପ୍ରତୀକ । ସେ ସମୟରେ ମୁଁ କିଛି ଜାଣିପାରୁ ନ ଥିଲି । କିନ୍ତୁ ବର୍ତ୍ତମାନର ରମି ଓ ସେ ସମୟର ରମି ଭିତରେ ବୟସ ବଢ଼ିବା ସହ ଯାହାସବୁ ଫରକ ହେବା କଥା ସେ ସବୁ ଛାଡ଼ିଦେଲେ ଆଉ କିଛି ଫରକ ନ ଥିଲା । ତା' ବାଳତକ କଳା ନ ଥିଲା । ସାମାନ୍ୟ ଈଷତ୍ ଲାଲ୍ ରଙ୍ଗର ; କିନ୍ତୁ ଆଣ୍ଠୁ ପର୍ଯ୍ୟନ୍ତ ଲମ୍ବି ଥିଲା । ମୋ ମା' ତାକୁ ଡାକି ତା' ବାଳ କୁଣ୍ଡାଇ ବେଣୀ ପାରି ଦେଉଥିଲା । ପରେ ପରେ ପୁଣି କାହାର ନଜର ନ ଲାଗୁ ' ସେଥିପାଇଁ ତା' ମୁଣ୍ଡ ଉପରେ ହାତ ବୁଲାଇ ଆଣି ଆଙ୍ଗୁଠି ଫୁଟାଉ ଥିଲା । କେବଳ ବାଳ କାହିଁକି ଶରୀରର ପ୍ରତ୍ୟେକ ଅଂଶ ଗୋଟିଏ ଗୁହଳରେ ଗଢ଼ା ହୋଇଥିଲା । ତା'ର ପ୍ରତ୍ୟେକ ଚାଲିରେ, ଭାବରେ ଏକ ସ୍ୱାଭାବିକତା ଥିଲା । ସେ ସୌନ୍ଦର୍ଯ୍ୟକୁ ଗର୍ବର ପବନ ଛୁଇଁ ନ ଥିଲା । ତେଣୁ ଅଧିକ ସୁନ୍ଦର ଦିଶୁଥିଲା ।

ସେଦନ ବଗିଚ୍ଚରେ ମୁଁ ତାକୁ ଦେଖିଲି ସେହ ମୁହୂର୍ତ୍ତିରୁ ସେ ବସ୍ତ୍ରୁ ପ୍ରାସାଦ ପ୍ରତ ମୋର ମୋହ ବଢ଼ିଗଲ । ପ୍ରାସାଦର ବଭବ ଦେଖି ଦୁଇ ଚନଦନ ମୁଁ ବୋକା ପାଲଟି ଯାଇଥିଲି । ଏଠାରେ ଥିବା ସବୁଜ ଘାସ ଉପରେ ଗୋଡ଼ ରଖିବାର ହମ୍ମତ୍ ମୋ ପାଖରେ ନ ଥିଲ । ସାମନାରେ ପାଣିର କୃତ୍ରିମ ଝର୍ଣ୍ଣର ଉଚ୍ଛୁଳୁ ଥିଲ । ପାଣି ଉଡ଼ି ଆସି ଦେହରେ ପଡ଼ଲେ ଦେହ ଶିତେଇ ହଉଥିଲ ; କନ୍ତୁ ପାଖକୁ ଯିବାର ହମ୍ମତ୍ ନ ଥିଲ । କାରଣ ତାର ପାଖରେ ଥିବା ପୋର୍ଚ୍ଚରେ ଗୋଟିଏ ପ୍ରକାଣ୍ଡ ଅଲସେସିଆନ୍ କୁକୁର ବସିଥିଲ । ସେ ସବୁ ସବୁଜ ଘାସ, ପାଣିର ଝର୍ଣ୍ଣର, ଗୋଲପ ଫୁଲ ସବୁ କଛି ସୁନ୍ଦର ଥିଲ । ବହୁତ ସୁନ୍ଦର ଥିଲ; କନ୍ତୁ ଅନ୍ୟର ଥିଲ । କନ୍ତୁ ରମି ଯେତେବେଳେ ମୋତେ ଦେଖି ହସିଲ ସେହ କ୍ଷଣରୁ ତା' ସହ ଏ ବାସ୍ତୁ ଆପଣାର ହୋଇଗଲ । ମୁଁ ଓ ମା' ସେଠି ସବୁଦନ ପାଇଁ ରହବୁ କ ନାହିଁ ସେ ବଷୟରେ ଏ ପର୍ଯ୍ୟନ୍ତ କଛି ନଶ୍ଚତ ହୋଇ ନ ଥିଲ ।

ମୋତେ ଚ୍ୱହିଁ ସେ ହସି ହସି କହଲ୍ଣି।

'ତୁ ଏଥର ସବୁଦନ ପାଇଁ ଏଠି ରହବୁ ।'.

'କେମିତ ଜାଣିଲୁ ?'

'ଆଜ ଆଦେଶ ମିଳଲ ।'

'ଆଦେଶ ? ମାନେ ?'

'ତୁ ଆଦେଶ କ'ଣ ଜାଣିନୁ ?' ବଡ଼ ବଡ଼ ଆଖିରେ ମୋତେ ଚ୍ୱହିଁ ପଚ୍ୱରଲ ।

'ନା ।'

'କୌଣସି ଏକ ବଶିଷ୍ଟ କାର୍ଯ୍ୟ କରବ କ ନାହିଁ ସେଥିପାଇଁ ଠାକୁରଙ୍କ ଅନୁମତ ମାଗିବା ।'

'ଠାକୁର କ'ଣ ଏମିତ ଆଦେଶ ଦଅନ୍ତ ।'

'ହଁ ।'

ଏଥର ମୁଁ ବଡ଼ ବଡ଼ ଆଖିରେ ତାକୁ ଚ୍ୱହିଁଲ ।

'ମିଛ ଭବୁଛୁ ?'

ମୁଁ ମୁଣ୍ଡ ହଲେଇଲ ।

'ମୋ ସହତ ଚ୍ୱଲ୍ ।'

ମୁଁ ତା' ପଛେ ପଛେ ଗଲି । ପାହାଚ ଚଢ଼ି ଉପରକୁ ଗଲାପରେ ସେ ପିନ୍ଧିଥିବା ଚପଲ ହଳକୁ କାଢ଼ି ଗୋଟିଏ ପାଖରେ ରଖିଲା । ସେଠି ଆଉ ହଳେ ଚପଲ ରଖା ଯାଇଥିଲା । ସେଥିରେ ଗୋଡ଼ପୂରେଇ ଭିତରକୁଗଲା । ସେତିକି ବେଳେ ମୁଁ ତା' ପାଦକୁ ଲକ୍ଷ୍ୟ କଲି । ତା' ପାଦଗୁଡ଼ିକ ଅତି ସୁନ୍ଦର ଓ ନରମ ଥିଲା ଭଳି ଦିଶୁଥିଲା । ମୁଁ ମୋ ପାଦକୁ ଅନେଇଲି ମୋତେ ଶରମଲାଗିଲା । ମୁଁ ତା ପଛେ ପଛେ ଗଲି । ପାଲିସ୍ ଟାଇଲ୍ ଉପରୁ ଗଲାବେଳେ ମୁଁ ଗୋଡ଼ ଖସି ପଡ଼ିଗଲି । ଉଠ ଉଠ୍ ମୁଁ ରମି ଆଡ଼କୁ ଅନେଇଲି । ସେ କିନ୍ତୁ ପଛକୁ ନ ଅନେଇ ସେମିତି ଚାଲୁଥିଲା । ସେତିକି ବାଟ ମୁଁ ଚାଲି ଚାଲି ଆସିଥିଲି । ସେଠି ମୋ ମଇଳା ପାଦର ଚିହ୍ନମାନ ସେ ଟାଇଲ୍ ଉପରେ ଉଠିଥିଲା । ମୋତେ ଆହୁରି ବେଶୀ ଶରମ୍ ଲାଗିଲା । ମୁଁ ସେଇଠି ଠିଆ ହୋଇ ରହିଲି ।

ରମି ମୋ ପାଖକୁ ଫେରି ଆସି କହିଲା ଦାଗ ପଡ଼ୁଛି ବୋଲି କିଛି ଭାବନା, ଘରୁ ପୋଛି ଦେବ ।

ମୁଁ ତା ପଛେ ପଛେ ଠାକୁର ଘର ଭିତରକୁ ଗଲି । ଠାକୁରଙ୍କ ଘରଟି ଆହୁରି ସୁନ୍ଦରଥିଲା । ଚକ୍ ଚକ୍ କରୁଥିବା ଟାଇଲସ୍ ସ୍ୱଚ୍ଛ ଓ ପରିଷ୍କାର ଥିଲା । ଭିତରେ ଥଣ୍ଡା ଲାଗୁଥିଲା । ସାମନାରେ ଶିଶୁ କାଠ ତିଆରି ଘର ଥିଲା । ଗୋଟିଏ କଣରେ ଦୀପ ଜଳୁଥିଲା । ଆରପଟେ ଧୂପଦାନିଥିଲା । ଶିଶୁ କାଠର ଘର ଭିତରେ ଶ୍ରୀଗଣେଶଙ୍କ ମୂର୍ତ୍ତୀ ରଖା ଯାଇଥିଲା । ମୂର୍ତ୍ତୀଟି ଯେଉଁଠି ଅଛି ଠିକ୍ ତାରି ତଳେ ମାଟି ତଳୁ ଏ ମୂର୍ତ୍ତୀଟିକୁ ରାଓ ସାହେବ୍ ପାଇଥିଲେ, ରମି କହୁଥିଲା ।

ଏତରେ ?

ସ୍ୱାଣ ଖାଉଛୁ ? ସେଥିପାଇଁ ତ ଏଠି ଠାକୁର ଘର ତୋଳା ହେଲା ପରେ ତା' ଶୁଣପାଖରେ ଏ ପ୍ରାସାଦ ଠିଆ ହେଲା ।

'ଏଥର ଆଦେଶ କମିତି ମିଳେ ଦେଖା ?'

ଭୁ କଛ ପଚାରିବାକୁ ଚାହୁଁଛୁ ?

ମୁଁ ଟିକେ ଚକ୍ରାରେ ପଡ଼ିଗଲି । ହଠାତ୍ ମନେ ପଡ଼ିବାରୁ କହିଲି ମୋ ମା' ଚାକିରି ଖୋଜିବାକୁ ଯାଇଛୁ । ତାକୁ ଚାକିରି ମିଳିବ କି ନାହିଁ ? ଠାକୁରଙ୍କୁ ପଚାରିବ ।

ତୋ ମା' ଚାକିରି କରିବ ?

ହଁ ।

ତାକୁ ଟିକେ ଆଶ୍ଚର୍ଯ୍ୟ ଲାଗିଲା । କିନ୍ତୁ କିଛି କହିଲା ନାହିଁ । ସେ ଟିକେ ଆଗେଇ ଯାଇ ଦୁଇଟି ମନ୍ଦାର ଫୁଲ, ଗଣେଶଙ୍କ ଡାହାଣ କାନ୍ଧରେ ଗୋଟିଏ ଓ ବାମ କାନ୍ଧରେ ଗୋଟିଏ ରଖିଲା ।

ସେଠୁ ମତେ କହିଲା ଏଥର କହ ।

କ'ଣ ?

ତାହା ବ ତୁ' ଜାଣିନୁ ?

ନା ।

ତା'ହେଲେ ମୁଁ କହୁଛୁ, କନ୍ତୁ ତୋ ନାଁ କ'ଣ ?

ପ୍ରଥମେ ତୋ ନାଁ କହ ?

ମୋ ନାଁ ରମି ।

ମୁଁ ହସିଲି ।

କାହିଁକ ହସିଲୁ ।

'ରମି ଗୋଟିଏ ତାସ୍ ଖେଳର ନାଁ, ମୋ ବାବା ଖେଳୁଥିଲେ, ସବୁବେଳେ ଖେଳନ୍ତି ।

ମୁଁ ତମ ବାବାଙ୍କୁ ଦେଖା କରିବାକୁ ଚାହେଁ ।

ବାବା ଆମକୁ ଛାଡ଼ି ଚାଲିଗଲେ, ରମି ଖେଳୁ ଖେଳୁ କ୍ଲବରେ ମରିଗଲେ । ମା' ତାସ୍ ଓ ରମି ଖେଳ ଦେଖିଲେ ରାଗିଯାଏ ।

ତା'ହେଲେ ତୋ ମା' ମୋତେ ମଧ୍ୟ ଭଲ ପାଇବ ନାହିଁ ।

ନା—ମୋ ମା' ବହୁତ ଭଲ । ତାହାର କା:ହାଣ ସହିତ ଅମେଳ ହୁଏ ନାହିଁ, ତାକୁ ଗୁହାରି ମିଳିଗଲେ ଭଲ ହେବ ।

ଅମେ ପଷ୍ଟରିବା ।

ରମି ପୁଣି ଥରେ ମୂର୍ତ୍ତୀ ପାଖକୁ ଯାଇ ସିନ୍ଦୂର ଆଣି ତାକୁ ମୋ' କପାଳରେ ମାରି କହିଲା—

ଏଥର କହ ମା' ଯଦି ଗୁହାରି ପାଇବ ତା' ହେଲେ ଡାହାଣ କାନ୍ଧରୁ ଫୁଲ ଖସୁ ।

ମୁଁ ଏକଥା କହିବା ପରେ ଡାହାଣ କାନ୍ଧରୁ ଫୁଲ ଖସିପଡ଼ିଲା ତାଲି ପିଟି ରମି କହିଲା—ମିଳିବ, ତୋ ମା'କୁ ଗୁହାରି ନିଶ୍ଚୟ ମିଳିବ ।

ଆମେ ଠାକୁର ଘରୁ ବାହାରି ଆସିଲୁ ।

ସେ ମୋ ଆଡ଼କୁ ଚାହିଁ ଜୋର୍‌ରେ ହସିଲା ।

ତୁ କେମିତି ଦେଖା ଯାଉଛୁ କହିବୁ ?

ମୁଁ ଚୁପ୍ ରହିଲି ।

ଜୋକର୍ ଭଳି ଦିଶୁଛୁ ।

ହଠାତ୍ ମୋ ମନକୁ ଆଇଡିଆ ଆସିଲା । ମୁଁ କହିଲି ତା'ହେଲେ ଆମ ଜୋଡ଼ି ଜମିବ । ତୁ' ରମି ମୁଁ ଜୋକର୍ ।

ଦେଖ୍ ମୁଁ ଜୋକର୍ କହି ଚିଡ଼େଇବୁ ।

ତୁ ଯେତେ ଚିଡ଼େଇଲେ ମଧ୍ୟ ମୁଁ ଚିଡ଼ିବି ନାହିଁ । ରମି ଖେଳରେ ଜୋକର୍‌ର ମହତ୍ତ୍ୱ କେତେ ଜାଣିଛୁ ?

ନା ।

ରମି ଖେଳରେ ଜୋକର୍‌କୁ ତମେ ଯେମିତି ପାରିବ ସେମିତି ବ୍ୟବହାର କରି ପାରିବ ।

ଏତିକିବେଳେ ତାଙ୍କ ଚାକର ଆସି କହିଲା ।

ତମ ମା' ଫେରିଲେଣି, ଡାକୁଛନ୍ତି ।

ମୁଁ ଦୌଡ଼ି ଘରକୁ ଗଲି, ମା' ମୋ ହାତରେ ଚନା ଦେଇ କହିଲା ଖାଇଦେ ମୋତେ ଚାକିରି ମିଳିଗଲା ।

ଆମେ ସେ ପ୍ରାସାଦର ଗ୍ୟାରେଜରେ ରହିଲୁ । ଆମେ ରହିବୁ କି ନାହିଁ ଏକଥା ରାଓ ସାହେବ ଗଣେଶଙ୍କ ଆଦେଶ ପାଇବା ପରେ ଆମକୁ କହିଥିଲେ ।

ରମି କହିବା ଅନୁସାରେ ରାଓ ସାହେବ ସେ ମୂର୍ତ୍ତିକୁ ପାଇବା ପରେ ତାଙ୍କ ବ୍ୟବସାୟ ଜୋର୍‌ସୋର୍‌ରେ ଚାଲିଲା । ଏତେ ବଡ଼ ପ୍ରାସାଦ ଓ ଚାରି ଚକିଆ ଗାଡ଼ି ଓ ଜୋର୍‌ସୋରରେ ଚାଲିଥିବା ପ୍ଲାଷ୍ଟିକ୍ କାରଖାନା ।

ସେହି ଦିନଠୁ ରାଓ ସାହେବ ଗଣେଶଙ୍କ ଭକ୍ତ ପାଲଟି ଗଲେ । ଶ୍ରଦ୍ଧାବନ୍ତ ହେଲେ । କୌଣସି କାମ କରିବାକୁ ହେଲେ ଘରେ ଯେପରି ବଡ ଭାଇଙ୍କର ଆଦେଶ ପାଇଲେ କରାଯାଏ । ସେମିତି ରାଓ ସାହେବ ଗଣେଶଙ୍କ ଆଦେଶ ପାଇବା ପରେ ସେ ସବୁ କାମ କରୁଥିଲେ । ତେଣୁ ସେଠାରେ ଏକ ପବିତ୍ର ବାତାବରଣ ରହୁଥିଲା । ତେଣୁ ଏକ ନିର୍ଭୀକତା ତାଙ୍କ ସ୍ୱଭାବରେ ଦେଖା ଯାଉଥିଲା । ସେହି ସ୍ୱଭାବ ରମି ପାଖରେ ମଧ୍ୟ ଥିଲା ।

ସେ ବାସ୍ତୁରେ ରହିବା ଦିନଠାରୁ ଆମର ମଧ୍ୟ ମଙ୍ଗଳ ହିଁ ହେଲା । ରମି ମୋ' ମା' ଠାରୁ ମା'ର ସ୍ନେହ ପାଇଲା । ରାଓ ସାହେବ ମଧ୍ୟ ମୋତେ ପୁତ୍ରବତ୍ ସ୍ନେହ କରୁଥିଲେ, ମୁଁ କାମକୁ ମାତ୍ର ଗ୍ୟାରେଜରେ ରହୁଥିଲି, ନ ହେଲେ ମୋର ସବୁ ସମୟ ରାଓ ସାହେବଙ୍କ ଘରେ କଟୁଥିଲା । ସକାଳ ସଂନ୍ଧ୍ୟା ଆଳତି ହେଉଥିଲା । ତା'ପରେ ରାତି ଖାଇବା ଓ ପାଠ ପଢ଼ି ସାରି ମୁଁ ଗ୍ୟାରେଜ୍‌କୁ ଫେରୁଥିଲି ।

ରମି ଓ ମୁଁ ଗୋଟିଏ ଶ୍ରେଣୀରେ ପଢ଼ୁଥିଲୁ ; କିନ୍ତୁ ସ୍କୁଲ୍ ଅଲଗା, ଗୋଟିଏ କାରରେ ଆମେ ଦୁହେଁ ଯାଉଥିଲୁ । ପ୍ରଥମେ ରମି ତା' ସ୍କୁଲରେ ଓହ୍ଲେଇ ପଡ଼ୁଥିଲା ସେଠୁ ମୋ ସ୍କୁଲ ଫେରିବା ବେଳେ ଏହି କିମିଟି ଓଲଟା ହେଉଥିଲା । ଏତେ ବଡ଼ ସମ୍ଭ୍ରାନ୍ତ ପରିବାର ସହ ଘନିଷ୍ଠ ସମ୍ପର୍କ ରକ୍ଷିବାକ ନାହିଁ ଭାବିବା ପୂର୍ବରୁ ଆମେ ସମସ୍ତେ ବାଧାଗୁଡ଼ିକ ଡେଇଁ ପଡ଼ିଥିଲୁ ।

ମୁଁ ଯେଉଁ ଗ୍ୟାରେଜରେ ରହୁଥିଲି । ତା' ପାଖକୁ ଲାଗି ଯେଉଁସବୁ ବଙ୍ଗଳା ଥିଲା ସେଥିରେ ଗାଡ଼ିଗୁଡ଼ିକ ଓ ଶୋଫର ମଧ୍ୟ ରହୁଥିଲା । ଶୋଫର ଜାଣିବା ପାଇଁ ଗ୍ୟାରେଜ୍‌ରେ ଗୋଟିଏ କଲିଂବେଲ୍ ଖଞ୍ଜା ହୋଇଥିଲା । ରାଓ ସାହେବ ଓ ରମି ମୋତେ ଡାକିବା ପାଇଁ ମଧ୍ୟ ସେହି ବେଲ୍‌ଟି ବଜାଉଥିଲେ । ମୁଁ ଯେତେ ବଡ଼ ହେଉଥିଲି ସେମିତି କାମର ଗୁରୁତ୍ୱ ବଢ଼ୁଥିଲା ଓ ଗୁରୁତ୍ୱପୂର୍ଣ୍ଣ କାମମାନ ମୋ ଉପରେ ପଡ଼ୁଥିଲା । ପାଇଥିବା କାମକୁ ସୁରୁଖୁରୁରେ ତୁଲାଇ ପାରୁଥିବାରୁ ମୋ ମନରେ ଏକ ସୁପ୍ତ ଆନନ୍ଦ ଜାଗ୍ରତ ହେଉଥିଲା ଓ ରାଓ ସାହେବ ମଧ୍ୟ କୌତୁକରେ କହୁଥିଲେ ।

ତୁ ତୋ ନୋକର ନାମଟିକୁ ସାର୍ଥକ କରୁଛୁ, ଯେ କୌଣସି କାମ ହେଲେ ମଧ୍ୟ ଯଶ ଲଭ କରୁଛୁ ।

ଆମେ ଦୁହେଁ ମାଟ୍ରିକ୍ ପାଶ୍ କଲୁ । ଗୋଟିଏ କଲେଜ୍‌ରେ ଆମ ଦୁହିଁଙ୍କର ନାମ ଲେଖା ହେଲା । କଲେଜ ମଧ୍ୟ ଆମେ ଦୁହେଁ ଏକାଠି କାରରେ ଯାଉଥିଲୁ । ସବୁ ସେଇ କଥା ଥିଲା, କିନ୍ତୁ ପରିବେଶ ବଦଳି ଯାଇଥିଲା । ରମିର ସୌନ୍ଦର୍ଯ୍ୟ ଦେଖି କଲେଜ ପିଲାଙ୍କର ମତି ଭ୍ରଷ୍ଟ ହେଉଥିଲା । ନାନା ପ୍ରକାର Comment ଓ ଟାହି ଟାପରା ହେଉଥିଲା ତଥାପି ରମି ନିର୍ଭୟ ଥିଲା ଓ ମୁଁ ମଧ୍ୟ ।

ଅନ୍ୟର ଭଲ ଦେଖିପାରୁ ନ ଥିବାଙ୍କ ସଂଖ୍ୟା ଏ ଦୁନିଆରେ ବେଶି ଥିଲା । ରମି ଏତେ ଶୁଦ୍ଧ ଓ ନିର୍ମଳ ମନର ଥିଲା ଯେ ଏ ସବୁକୁ ସେ ଖାତିର କରୁ ନଥିଲା । ତା'ର ଗୋଟିଏ ମାତ୍ର ସାଙ୍ଗ ମୁଁ ଥିଲି । ତା'ର ସରଳ ନିର୍ମଳ ସ୍ୱଭାବ ଯୋଗୁଁ ଛନ୍ଦ କପଟ କରୁଥିବା ଝିଅଙ୍କ ସହ ମଧ୍ୟ ତା'ର ବନ୍ଧୁତା ନ ଥିଲା । ସେ ସବୁବେଳେ ମୋ ସହିତ ରହୁଥିବାରୁ ଅନେକ ମୋତେ ଈର୍ଷା କରୁଥିଲେ । ମୋ ମନର ଦୃଷ୍ଟିକୋଣ ବଦଳାଇବାକୁ ଚେଷ୍ଟା କରୁଥିଲେ । ଏତେ ସୁନ୍ଦର, ଯୌବନ ଭାରରେ ଲଦିହୋଇ ପଡ଼ିଥିବା ଯୁବତୀକୁ ମୁଁ ଭଉଣୀ ଭଳି ଭାବୁଥିବି ଏକଥା କେହି ବିଶ୍ୱାସ କରୁ ନ ଥିଲେ । ଆଉ ଜଣେ ଜଣେ ମୁଁ ପବିତ୍ର ଏ କଥା ମଧ୍ୟ ମାନିବାକୁ ରାଜି ନ ଥିଲେ ।

ମୁଁ କିନ୍ତୁ ଚୁପ ଥିଲି । ତଥାପି ବେଳେ ବେଳେ ଚିଡ଼ିଯାଇ ରାଗିଯାଇ କଜିଆ ମଧ୍ୟ କରୁଥିଲି । ଥରେ ରାଗିଯାଇ ଦୁଇଜଣଙ୍କୁ ପିଟିଲି ମଧ୍ୟ, ସେହି କଥା

ରମି ଦିନେ ମୋତେ ପଚାରିଲା । ମୁଁ ରାଗିଯାଇ କହିଲି "ସମ୍ବନ୍ଧୋ' ସହିତ ମୋର ସମ୍ବନ୍ଧ ଯୋଡ଼ୁଥିଲେ ।"

ମାନେ କ'ଣ ? ରମି ଅତି ଅସ୍ପଷ୍ଟ ଓ ଶାନ୍ତ ସ୍ୱରରେ ମୋତେ ପଚାରିଲା ।

ତା'ର ସ୍ୱର ଶୁଣି ମୋତେ ଆଶ୍ଚର୍ଯ୍ୟ ଲାଗିଲା ।

'କେମିତି କହିବ ?'

ମୋତେ କିଛି କହିନା ; କାଲି କଲେଜ୍‌ରେ ମିଡ଼ିଟିଂ କରିବୁ ନାହିଁ ।

'ସମ୍ବନ୍ଧ ଯୋଡ଼ିବା' କଥାଟା ଶୁଣି ମଧ୍ୟ ରମି ଏତେ ଶାନ୍ତ କିପରି ରହିପାରିଲା ସେ କଥା ମୁଁ ବହୁତ ପରେ ଜାଣିଲି, ଯେତେବେଳେ ଜାଣିଲି କ'ଣ କରିବ ତାହା ମଧ୍ୟ ବୁଝିପାରିଲି ନାହିଁ ।

ଥରେ ରାତିରେ ଆମେ ଅର୍ଥଶାସ୍ତ୍ର ପଢ଼ୁଥିଲୁ, B. A.ରେ ଆମ ଦୁହିଁଙ୍କର ବିଷୟ ମଧ୍ୟ ଏକ ଥିଲା । ପରୀକ୍ଷା ମଧ୍ୟ ମୁଣ୍ଡ ଉପରେ ଥିଲା । ପରୀକ୍ଷା ପରେ ପରେ ରାଓ ସାହେବଙ୍କର ଜଣେ ପରିଚିତ ମୋତେ ଚାକିରି ଦେବେ ବୋଲି କହିଥିଲେ । ମା' ଏତେ ବର୍ଷ ଚାକିରି କରି ମୋତେ ପଢ଼େଇଥିଲା ଓ ବଢ଼େଇଥିଲା । ରାଓ ସାହେବଙ୍କର ପ୍ରାସାଦରେ ଥିଲୁ ବୋଲି ଆମ ଜୀବନ ସ୍ୱଚ୍ଛନ୍ଦ ହୋଇଥିଲା, କିଛି ଅଭାବ ହୋଇ ନ ଥିଲା । ତେଣୁ ପରୀକ୍ଷା ପରେ ପରେ ମୁଁ ଚାକିରି କରିବାକୁ ରାଜିଥିଲି ।

ରମିର ମଧ୍ୟ ବାହାଘର ସାଙ୍ଗେ ସାଙ୍ଗେ କରିବା ପାଇଁ ରାଓ ସାହେବ କେବଳ ମୋତେ ହିଁ କହିଥିଲେ, ରମି କିଛି ଜାଣି ନ ଥିଲା ।

ଅର୍ଥଶାସ୍ତ୍ରର ଚର୍ଚ୍ଚା କରୁ କରୁ ଲୋକସଂଖ୍ୟା ଓ ଅର୍ଥଶାସ୍ତ୍ର ଏ ବିଷୟରେ ମୁଁ କହିବା ଆରମ୍ଭ କଲି, ହଠାତ୍ ରମି ପଚାରିଲା, ଏ ଦୁହିଁଙ୍କର ସମ୍ବନ୍ଧ କ'ଣ ?

'ଆରେ ବର୍ତ୍ତମାନ କ'ଣ ପଢ଼ିଲୁ ?'

'ପଢ଼ିଲି ! କିନ୍ତୁ ବେଶୀ ମହତ୍ତ୍ୱ ଦେଲି ନାହିଁ ।'

'ଏଥର ବହୁତ ଡେରି ହେଲାଣି ?'

'ଡେରି ହେଉ ; ତଥାପି କହ ।'

'ସବୁତ ଲୋକ ସଂଖ୍ୟା ଉପରେ ନିର୍ଭର କରୁଛି ।'

'କେମିତି ?'

ଲୋକ ସଂଖ୍ୟା ଯଦି ମାତ୍ରାଧିକ ହୁଏ ତାହା ହେଲେ ଅର୍ଥଶାସ୍ତ୍ର ଭୁସୁଡ଼ି ପଡ଼ିବ ।'

'କନ୍ତୁ ଲୋକ ସଂଖ୍ୟା କାହିଁକି ବଢ଼ୁଛୁ ?'

ବକୁଳ କରେଣ୍ଟ ମାରିଲା ଭଳି ମତେ ଲାଗିଲା, ମୋ ମୁଣ୍ଡ କାମ କଲା ନାହିଁ । ସମ୍ବେଦନା ବଧିର ହୋଇଗଲା । ଜାଣିଥିଲି ପ୍ରକୃତିର ନିୟମାନୁସାରେ ପୁରୁଷ ଅପେକ୍ଷା ସ୍ତ୍ରୀ ମାନଙ୍କର ଏ ବିଷୟରେ ଜ୍ଞାନଶିଘ୍ର ଆସିଥାଏ । କଲେଜରେ ପୁଅମାନେ ଯାହା ନାହିଁ ତାହା କରନ୍ତି । କନ୍ତୁ ଝିଅମାନେ ମଧ୍ୟ ଆଜକାଲି କୌଣସି ଗୁଣରେ କମ୍ ନୁହଁନ୍ତି । ତାହା ହେଲେ ରମି ଏତେ ଅଜ୍ଞ କପରି ? ମୋ କ୍ଲାସମେଟ୍-ମାନେ ତାକୁ ନେଇ ମୋତେ ନାନାଦି କଥା କହୁଛନ୍ତି । ସେମିତି ତା' ସାଙ୍ଗମାନେ ମଧ୍ୟ ତାକୁ କହୁଥିବେ ? ଗୋଟିକ ପରେ ଗୋଟିଏ ଧିରେ ଧିରେ ଯାଉଥିବା ମାଲଗାଡିର ଅସରନ୍ତି ଡବା ଭଳି ପ୍ରଶ୍ନମାଳିକା ସରୁ ନ ଥିଲା ।

ମୁଁ ରମିକୁ ଅନେଇଲି ।

ଅସମ୍ଭବ ଏତେ ସ୍ୱଚ୍ଛ ଦୃଷ୍ଟି ? ହୃଦୟରେ କୌଣସି କପଟ ନ ଥିବାର ଦର୍ଶାଉଥିବା ସ୍ୱଚ୍ଛ ନିର୍ମଳ ଦୃଷ୍ଟି । ପ୍ରତାରଣା କରୁଥିବା ବ୍ୟକ୍ତି ଏତେ ଶୁଦ୍ଧ ଓ ନିର୍ମଳ ଦୃଷ୍ଟିରେ ଚାହିଁପାରେନା, ଆଳତି ପରେ କଛି ସମୟ ସେ ଗଣେଶଙ୍କ ମୂର୍ତ୍ତିକୁ ଏମିତି ଚାହିଁ ରହେ ।

ମୁଁ କଛି ଗୋଟିଏ ଭୟଙ୍କର ପାପ କଲା ଭଳି ସେ ମତେ ପଚାରିଲା ।

ଏମିତି କ'ଣ ଚାହିଁଛୁ ?

ସ୍ୱର ମଧ୍ୟ ସ୍ୱଚ୍ଛ, କପଟ ନାହିଁ, କମ୍ପନ ନାହିଁ ।

ତଥାପି ମୁଁ ପଚାରିଲି ।

ରମି ଲୋକସଂଖ୍ୟା କପରି ବଢ଼େ ତୁ କ'ଣ ସତରେ ଜାଣିନୁ ?

ସେ ମୁଣ୍ଡ ହଲେଇ ମନା କଲା । ମୁଁ ଥଟ୍ଟାରେ କହିଲି ବାହା ହୋଇଯା ଜାଣିବୁ ।

ଥଟ୍ଟା କରନା, ନ କହିଲେ ନାହିଁ ।

'ମୁଁ ବିଶ୍ୱାସ କରିପାରୁନ ?'

ସତ ?

ହଁ ।

ଚାଲ ମୋ ସାଙ୍ଗରେ—

ମୁଁ ତା' ସହିତ ଗଲି । ମୁଁ ଯାହା ଭାବିଥିଲି ସେଇଆ ହେଲା । ସେ ଠାକୁର ଘରକୁ ଗଲା, ଦୁଇଟି ଫଲ ହାତରେ ଧରି କହିଲା—

'ହେ ବିଘ୍ନେଷ, ସବୁବେଳେ ତୋତେ ଏମିତି ହଇରାଣ କରିବାକୁ ମୋତେ ଭଲ ଲାଗେନା, ମୁଁ କିଛି ନ କହି ମଧ୍ୟ ତୁ ସବୁବେଳେ ମୋ ପଛେ ପଛେ ଅଛୁ । ଏହା ହିଁ ମୋର ଶ୍ରଦ୍ଧା ; କିନ୍ତୁ ଆଜି ଏ ଜୋକର ପାଇଁ ଆଦେଶ ଦେ । ମୋ ଭକ୍ତି ଯଦି ପ୍ରକୃତ ହୋଇଥିବ । ତାହାହେଲେ ଡାହାଣ କାନ୍ଧରୁ ଫୁଲ ଖସାଇବୁ । ଫୁଲ ଦୁଇଟିକୁ ଦୁଇକାନ୍ଧରେ ସଜେଇ ରଖିଲା । ସେ ଆଖି ବୁଜି ଠିଆ ହେଲା, ମୁଁ ମୂର୍ତ୍ତୀକୁ ଅନେଇ ରହିଲି, ଡାହାଣ କାନ୍ଧରୁ ଫୁଲ ଖସିଲା, ରମି ଓ ମୁଁ ଶ୍ରଦ୍ଧାରେ ମୁଣ୍ଡିଆ ମାରି ପଢ଼ା ଘରକୁ ଫେରିଲୁ ।

ଜୋକର୍ ଅଜି ମୁଁ ସବୁଠାରୁ ଦୁଃଖିତ, କାରଣ, ପ୍ରଥମ ଥର ପାଇଁ ରୁ ମୋତେ ଅବିଶ୍ୱାସ କଲୁ ।

'ରମି I am Sorry କିନ୍ତୁ କଥାଟା ସେତିକି ଗୁରୁତର ଥିଲା । ଦୁଇ ମିନଟ୍ ମୋ ମନ ବିଚଳିତ ହେଲା, ତା'ପରେ ନୋଟ୍ ବୁକ୍ଟି ଟାଣି ଆଣିଲି । ତା' ପରେ ପନ୍ଦର ମିନଟ୍ ପର୍ଯ୍ୟନ୍ତ ମୁଁ ଚନ୍ଦ ସହ ରମିକୁ ସ୍ତ୍ରୀ ପୁରୁଷ ସମ୍ବନ୍ଧ ବିଷୟରେ ଓ ପ୍ରଜୋତ୍ପାଦନ ଉପରେ ବୁଝେଇଲି ।

ମୁଁ ରମିକୁ ଅନେଇଲି । ରମି ନିଶ୍ଚଳ ହୋଇ ବସିଥିଲା । କିଛି କହୁନଥିଲା, ଏମିତି ଅଧଘଣ୍ଟା ବିତିଗଲା ।

'ଆମ ଜନ୍ମ ମଧ୍ୟ ଏମିତି ହେଲା ?'

ମୁଁ ମୁଣ୍ଡ ହଲେଇଲି ।

ସେହି ଦିନଠୁ ରମି ବଦଳିଗଲା । ପରୀକ୍ଷା ସରିବା ପର୍ଯ୍ୟନ୍ତ ସେ ସବୁବେଳେ ଗମ୍ଭୀର ହୋଇ ବସି ରହୁଥିଲା । କାହାରି ସହ ବେଶୀ କଥା ହେଉ ନ ଥିଲା । ପରେ ରାଓ ସାହେବଙ୍କ ସହ ଦିଲ୍ଲୀ ଗଲା । ସେଠି ଗୋଟିଏ meeting attend କରିବାକୁ ରାଓ ସାହେବ ଯାଉଥିଲେ ।

ଯଥା ସମୟରେ ମୁଁ ଚିଠିଟିଏ ପାଇଲି ।

ଦିଲ୍ଲୀରୁ ରାଓ ସାହେବ୍ ରମିର ବାହାଘର ଠିକ୍ କରି ଜଣାଇଲେ । ତା'ର ସ୍ୱାମୀ ଜଣେ ବୈମାନିକ ଥିଲେ ।

ଆଜି ପାଞ୍ଚଟା ବାଜୁ ନ ଥିଲା, କୌଣସି କାମରେ ମନ ଲାଗୁ ନ ଥିଲା । କ୍ୟାପ୍ଟେନ୍ ତାଙ୍କ କାମ ବିଷୟରେ କିଛି କହି ନ ଥିଲେ ।

ମାମଲା କ'ଣ ଜାଣି ହେଉ ନ ଥାଏ । ଭୁଲ ବୁଝାମଣା ଯଦି ହୋଇଥିବ । ତେବେ ତାହା ଦୂର ହେବ କେମିତି । ଦୁନିଆରେ ଶୁଦ୍ଧ ଓ ପବିତ୍ର ମଣିଷଙ୍କର ଅଭାବ ନାହିଁ । ଅଭାବ ଅଛି ତାକୁ ଚହ୍ନି ପାରୁଥିବା ମଣିଷଙ୍କର ।

ବୈମାନିକମାନଙ୍କର ହୃଦୟ୍ଭ ଅତି ବିଶାଳ ବୋଲି ଶୁଣିଥିଲି; କିନ୍ତୁ କ୍ୟାପ୍‌ଟେନ୍ ସାହେବଙ୍କ ସ୍ୱଭାବ ? କାରଣ ରମି ଯଦି ତାଙ୍କୁ ସବୁ କଥା କହିଥିବ ଓ ସେ ଯଦି ରମିକୁ ପାହାଡ଼ ···?

କିନ୍ତୁ କେମିତି ସମ୍ଭବ, ମୂଳରୁ ରମି ତ ନାହିଁ ପାହାଡ଼ ଆସିବ କେଉଁଠୁ ।

ଅଫିସ୍‌ରୁ ସିଧା ଟ୍ୟାକ୍‌ସି ଧରି ତାଙ୍କ ଘରେ ପହଞ୍ଚିଲି, କ୍ୟାପଟେନ୍ ସାହେବ୍ ଗ୍ୟାଲେରୀରେ ଠିଆ ହୋଇଥିଲେ ମୋତେ ଦେଖି ଭିତରକୁ ଗଲେ କବାଟ ଖୋଲି । ମୁଁ କିଛି ଜାଣିବା ପୂର୍ବରୁ ମୋତେ କୋର୍‌ରେ କୁଣ୍ଢେଇ କହିଲେ ।

ରମି ଓ ଜୋକରର ସମ୍ବନ୍ଧ କ'ଣ ମୁଁ ବୁଝିପାରୁଛି ।

ତାଙ୍କ ପଛେ ପଛେ ଯିବା ସମୟରେ ମୁଁ ସେ ବାକ୍ୟର ଅର୍ଥ ବୁଝିବାକୁ ଚେଷ୍ଟା କରୁଥିଲି, ଚହଟକରେ ବସୁ ବସୁ ମୁଁ କହିଲି ।

'ଆପଣଙ୍କ ଫୋନ୍ ଆସିବା ପରଠୁ ମୁଁ ବହୁତ ଟେନ୍‌ସନ୍‌ରେ ଥିଲି ।

କେତେ ଘଣ୍ଟା ।

'ଆପଣ ଜାଣିଛନ୍ତି ।'

'ଦୋସ୍ତ ଯେଉଁଦିନ ବାହାଘର ଫାଇନାଲ୍ ହେଲା । ସେହି ଦିନଠୁ ମୁଁ ଟେନ୍‌ସନ୍‌ରେ ଥିଲି ।

କାହିଁକି ?

'ରମି ବିଷୟରେ ଭାବି ଭାବି ।'

କ୍ୟାପ୍‌ଟେନ୍ ସାହେବ ଯାହା କହିବା କଥା ଶୀଘ୍ର କୁହନ୍ତୁ ମୁଁ ସବୁ ସହିନେବି ।

'My boy you have saved me· ଆକାଶରେ ଗୋଡ଼କୁ ଆଶ୍ରା ନଥାଇ ମଧ୍ୟ ମୁଁ ସ୍ଥିର ରହିପାରେ ; କିନ୍ତୁ ବିଭାଘର ବେଳେ ଭୂଇଁର ଆଶ୍ରା ଥାଇ ମଧ୍ୟ ମୁଁ ଅସ୍ଥିର ଥିଲି ।'

'କିନ୍ତୁ କାହିଁକି ?'

କହୁଛି—ମନ ଲାଖି ସଙ୍ଗିନୀ ପାଇଲି ଏହି ଟେନସନ୍ ଥିଲା ।'

'ମୁଁ ବୁଝିପାରିଲି ନାହିଁ ।'

'ବାହାଘର ସମୟରେ ମୋର ଜଣେ କ୍ୟାପଟେନ୍ ବନ୍ଧୁ ଥିଲେ ମନେ ପଡ଼ୁଛି ?

'ହଁ ।'

ତା' ବାହାଘର ପରେ ତା'ର ବହୁତ ବଡ଼ ଟ୍ରାଜେଡ଼ି ହୋଇଗଲା ।

ମୁଁ ଭାବୁଥିଲି ମୋର ଯଦି ସେମିତି ହୁଏ । ଆମେ ଦୁହେଁ ଇନୋସେଣ୍ଟ ଝିଅ ଖୋଜୁଥିଲୁ । ଆମର ଯେଉଁ ବ୍ୟବସାୟ ଥିଲା ସେଥିରେ ନିଜକୁ ହରେଇଥିବା ଅନେକ ନାରୀଙ୍କୁ ଆମେ ଦେଖିଥିଲୁ ମଦ୍ୟପାନ କରୁଥିବା, ବୟସ୍କାସକ୍ତ, ଆବଶ୍ୟକତା ନଥାଇ ଫାଲରୁ ଧନ୍ଦା କରୁଥିବା, So called high societyରୁ ଆସିଥିବା ନାରୀମାନଙ୍କୁ ଦେଖି ମନ ଉଦ୍‌ବିଗ୍ନ ହୋଇ ପଡ଼ୁଥିଲା ।

ତେଣୁ ସରଳ ସୁନ୍ଦର ଝିଅଟିଏ ନ ପାଇବା ପର୍ଯ୍ୟନ୍ତ ବିବାହ କରିବୁ ନାହିଁ ବୋଲି ଆମେ ଦୁଇ ଜଣ ସ୍ଥିର କରିଥିଲୁ, ସେ ଅନୁସାରେ ମୋ ସାଙ୍ଗ ଝିଅଟିଏ ପାଇଥିଲା, ଅତି ସରଳ ସୁନ୍ଦର ଗାଁ'ରେ ରହୁଥିବା । ମାତ୍ର ସେ ଏତେ ଇନୋସେଣ୍ଟ ଥିଲା ଯେ ସ୍ତ୍ରୀ ପୁରୁଷ ମଧ୍ୟରେ ଥିବା ସମ୍ବନ୍ଧ ବିଷୟରେ ତାକୁ କିଛି ଜଣା ନ ଥିଲା, ମୋ ସାଙ୍ଗ ଯଦି ଟିକେ ବୁଝେଇ ସୁଝେଇ ସ୍ଥିର ମନରେ ଆଗେଇ ଥାଆନ୍ତା ତାହା ହେଲେ ଏଭଳି କିଛି ଘଟି ନ ଥାନ୍ତା; କିନ୍ତୁ ଆମେ ହେଲୁ ବୈମାନିକ, ପ୍ରତ୍ୟେକ ମୁହୂର୍ତ୍ତ ପାଇଁ ବଞ୍ଚୁ । ତେଣୁ ବର୍ତ୍ତମାନର ମୁହୂର୍ତ୍ତ ପାଇଁ ଆମେ ମାଲିକ୍ ସେ ମୁହୂର୍ତ୍ତରେ ଯିଏ ସାମନାରେ ଥିବ ତା'ର ଆମେ ଆସ୍ୱାଦ ନେଉ । ପର ମୁହୂର୍ତ୍ତରେ ଆମେ ଅନ୍ୟ କିଛି ଥାଉ ।

ସେ ରାତି ପରେ ତା' ସ୍ତ୍ରୀ ପାଗଳ ହୋଇଗଲା, ମୋ ସାଙ୍ଗର ଜୀବନ ବରବାଦ୍ ହୋଇଗଲା, ମୁଁ ଭାବୁଥିଲି ମୋର ମଧ୍ୟ ଏମିତି କିଛି ହୋଇପାରେ, ରମିର ଆଖି ହିଁ କହୁ ଦିଏ ସେ କେତେ ସରଳ, କିଷ୍ଟପଟ ସେଥି ପାଇଁ ଡର ଯାଇ-ଥିଲି । But she gave me good response· Excellent Co-operation. ତଥାପି ଆଖିଗୁଡ଼ିକ ସେତିକି ସରଳ । ପରଦିନ ସକାଳୁ ମୁଁ ତାକୁ ପଚାରିଲି 'ଜୋକର ସାହେବ୍-You will not perhaps belive କିନ୍ତୁ ସେ ମୋତେ ସବୁ କଥା କହିଲା, ତମେ ତାକୁ ଯାହା ଯାହା ସବୁ ବୁଝାଇଥିଲ ସବୁ କଥା, ସେତିକି ଶାନ୍ତ ସ୍ୱରରେ, I can't describe, ମାନେ ତା' ସ୍କୁଲ କଲେଜର ବହିରେ ତମେ ମଲାଟ ମଡ଼େଇବା କଥା ସେ ମତେ ଯେତେ ସହଜରେ କହିଲା ସେତିକି ସହଜରେ 'ସେ' କଥା ମଧ୍ୟ କହିଲା You have obliged me·'

ମୋ ଆଖିରେ ଲୁହ ଜକେଇ ଆସିଲା, ମତେ କୁଣ୍ଢେଇ ଧରି ପିଠି ଥାପୁଡ଼େଇ କ୍ୟାପଟେନ୍ କହିଲେ, I understand Your tension and fear ମୋ ପେଶା ହେଲା ବୈମାନିକର ; କିନ୍ତୁ ଯେଉଁ ମଣିଷ ଉଡ଼ାଜାହାଜଟି ପୁରୁଷବେ ଉଡ଼େଇ ନେବାକୁ ନାହିଁ ପରୀକ୍ଷା କରେ ସେ ଅଧିକ ଶ୍ରେଷ୍ଠ । ଅନ୍ତାରେ ତୁମକୁ ଜୋକର କହୁଥିଲେ ମଧ୍ୟ ତମ ନାମକୁ ତୁମେ ସାର୍ଥକକଲ । ମୁଁ ରମି ପାଇଲି ।

ମୁଁ ମଧ୍ୟ ହସି ହସି କହିଲି ।

ଜୋକରର ମହତ୍ତ୍ୱ ନିଶ୍ଚୟ ଅଛି, କିନ୍ତୁ ତାଠୁ ବେଶୀ ମହତ୍ତ୍ୱ ଥାଏ ସିକ୍ୱେନ୍ସର ସିକ୍ୱେନସ୍ ହୋଇ ଯିବା ମାତ୍ରେ ରମି ତମର ହୋଇଗଲା କ୍ୟାପଟେନ୍ ଉତ୍ତର ଦେବାକୁ ଯାଇ ମୋତେ ପୁଣି ଥରେ କୁଣ୍ଢେଇ ଧରିଲେ ।



# କିସ୍ତି

ପ୍ରେମରେ ପଡ଼ି ପ୍ରମୀତା ପାଇଁ ମୁଁ ଯେତେ ଅପେକ୍ଷା କରିନ, ଆଜି କିନ୍ତୁ ଦୋଳେ ପାଇଁ ତା'ଠୁ ବେଶି ଅପେକ୍ଷା କରୁଥିଲି । ମୋର ଅଫିସରେ ମୋ ପାଖରୁ ପାଞ୍ଚ ଟେବୁଲ ପଛରେ ଦୋଳେ ବସେ ।

'ମୁଁ ଚଉକି ବୁଲେଇ ବସିଲି । କାରଣ ବେକ ବୁଲେଇ କେତେ ଅନେଇବ ?

ପରିସ୍ଥିତି ଯାହା ହେଉନା କାହିଁକି, ଏଗାରଟା ପୂର୍ବରୁ ସେ ନିଶ୍ଚୟ ଆସି ପହଞ୍ଚିବ—ସାମନ୍ତରାୟ ବାବୁ କହିଲେ ।

କେମିତି ଜାଣିଲେ ?

ଆଜି ମୋର କିସ୍ତି ଦେବା ପାଳି । ଟ୍ରେନ୍ ଯଦି ବାଟରେ ବନ୍ଦ ହୋଇଯାଏ, ତାହାହେଲେ ଟ୍ରେନ୍ ଲାଇନ୍‌ରେ ଧାଇଁ ଧାଇଁ ସେ ପଳେଇ ଆସିବ ; କିନ୍ତୁ ଏଗାରଟା ପୂର୍ବରୁ ନିଶ୍ଚୟ ଆସି ପହଞ୍ଚିବ । ମୁଁ ଖାଲି ଚଉକିଟାକୁ ଅନେଇ ବସିଥିଲି । ଅନେଇ ଅନେଇ ବିରକ୍ତ ଲାଗିଲା ।

ଡ୍ରୟର ଖୋଲି ସୁଲଭ କିସ୍ତିର ହ୍ୟାଣ୍ଡବିଲ୍‌ଟି ବାହାର କଲି । ସୁଲଭ କିସ୍ତିରେ କ'ଣ କ'ଣ ମିଳେ । ଏହାର ଏକ ସଚିତ୍ର ବିବରଣୀ ସେହି ହ୍ୟାଣ୍ଡବିଲ୍‌ରେ ଛପା ହୋଇଥିଲା । ବସ୍ତୁ ବିଷୟରେ କୌଣସି ଚିନ୍ତା ନଥିଲା । ଚିନ୍ତାଥିଲା କେବଳ କିସ୍ତିର ।

ବଡ଼ ବଡ଼ ଅକ୍ଷରର ଲେଖା ହୋଇଥିବା 'ସୁଲଭ କିସ୍ତି' ଶବ୍ଦଗୁଡ଼ିକୁ ମୁଁ ଚାହିଁ ରହିଥିଲି ।

କିନ୍ତୁ ସୁଲଭ କାହାକୁ ? କିସ୍ତି ଦେଉଥିବାଲୋକକୁ ନା ନେଉଥିବାଲୋକକୁ ? ତାହା ଛପା ହୋଇ ନ ଥିଲା । ପ୍ରସୂତି ବାମ ପଟେ ସୁଲଭ ଲେଖିଲେ ପ୍ରସୂତିଟା କ'ଣ ସୁଲଭ ହୋଇପାରେ ?

ପର କିସ୍ତିଗୁଡ଼ିକ କୌଣସି ମତେ ଦେଇହେବ ।

କିନ୍ତୁ ପ୍ରଥମ ଯନ୍ତ୍ରଣାଟି ହଜାର ଟଙ୍କାର ଥିଲା ।

ଏ ପ୍ରଥମ ଯନ୍ତ୍ରଣାର ଉପଶମ ପାଇଁ ଦୋଳେ ଆସିବା ଅତି ଜରୁରୀ ଥିଲା ।

ସେ ଥିଲା ପେଟେଣ୍ଟ ମେଡ଼ିସିନ୍ ।

ପ୍ରଥମ ପାଳି ହେଉଛି ନଉବା ଅଷ୍ଟମ, କେଲସି ପାଇଁ ଦୋନ୍ଦେ ଆସିନ୍ତି, ଏମିତି କେବେ ହୋଇନି ।

ଆଜି ମୋ ପାଳି ପଡ଼ିଥିଲା ।

ମୁଁ ଦୋନ୍ଦେ ପାଖରୁ ପ୍ରଥମ ଥର ପାଇଁ ଧାର୍ ନବାକୁ ଯାଉଥିଲି, ତାକୁ କେମିତି କହିବି—ଏହି ଚିନ୍ତାରେ ମୁଁ ଥିଲି । ଅନ୍ୟ ଉପାୟ ବି ନ ଥିଲା ।

ଏ ବାବଦରେ ଅଭିଜ୍ଞ ସାମନ୍ତରାୟ ବାବୁଙ୍କ ପାଖକୁ ଗଲି ।

ବସନ୍ତୁ ।

ଏ ପର୍ଯ୍ୟନ୍ତ ସ୍ଥିର କରି ପାରୁନାହିଁ ।

ମାଗନ୍ତୁ । ଡରିବାର କାରଣ ନାହିଁ ।

କିନ୍ତୁ ସେ ଟିକେ ଆଡ଼ ପାଗଳ । ତେଣୁ· · · ·

ନିଜ ପ୍ରକୃତ କଥା ଲୁଚେଇ ପାରିଛ ?

ସେ କ'ଣ କହିବ ?

ମୁଁ କହିବି ନାହିଁ । ତୁମେ ନିଜେ ଯାଇ ମାଗ । ସେଥିରେ ଟିକେ ମଜା ଅଛି ।

ସେତିକବେଳେ ଦୋନ୍ଦେ ଆସି ପହଞ୍ଚିଲେ । ସାମନ୍ତରାୟ ବାବୁ ମୋତେ ଘଡ଼ି ଦେଖେଇଲେ । ଏଗାରଟା ବାଜିବାକୁ ଦଶ ମିନିଟ୍ ଥିଲା ।

ଠିକ୍ ଏଗାରଟାରେ ସାମନ୍ତରାୟ ବାବୁ ପକେଟ୍‌ରୁ ଗୋଟିଏ ଖାମ କାଢ଼ି ଦୋନ୍ଦେଙ୍କୁ ଦେଲେ । ଦୋନ୍ଦେ ସମାଧାନର ହସ ହସିଲେ ।

ମୁଁ ମୋ ଚଉକିରେ ବସି ଦୂରରୁ ସବୁ ଦେଖୁଥିଲି ।

ଯାହାଙ୍କୁ ସୋଲ୍‌ଜର କଟ୍ ବା କ୍ଲୋଜକ୍ରାପ କୁହନ୍ତି । ସେମିତି ମୁଣ୍ଡବାଳ ସବୁ କଟା ହୋଇଥିଲା । ତେଣୁ ସେଗୁଡ଼ିକ ସତର୍କ ସୈନିକ ଭଳି ଠିଆ ହୋଇ ମସ୍ତିଷ୍କର ରକ୍ଷଣ କଲାଭଳି ଦେଖା ଯାଉଥିଲେ । ଦେହରେ ଫିକା ନୀଳ ରଙ୍ଗର ଓପନ କଲର ଥିବା ଢିଲା ଇସ୍ତିରି ଶାର୍ଟ, ଢିଲା ଇସ୍ତିରି ପାଇଜାମା, ଗୋଡ଼ରେ କୋହ୍ଲାପୁରୀ ଚପଲ । ଚପଲ ମଧ୍ୟ ଅଫିସରେ ଏକ ଚର୍ଚ୍ଚାର ବିଷୟ ଥିଲା । ପ୍ରତିବର୍ଷ ଏକ ମାର୍ଚ୍ଚ ଓ ଏକ ଅକ୍ଟୋବର ଦିନ କୋହ୍ଲାପୁରରୁ ତା'ର କେହି ଜଣେ ସମ୍ପର୍କୀୟ ତାକୁ ଆଣି ଏ ଚପଲ ପ୍ୟାକେଟ ଦିଏ । ଦୋନ୍ଦେ ପ୍ୟାକେଟ୍ ହାତରେ ଧରିଲେ କୌଣସି କଥା ନ କହି ଗୁଲିଯାଏ । ଦିନେ କେବେ ଦୋନ୍ଦେ ତାକୁ ବସେଇ ଦି'ପଦ କଥା ହେବା କମ୍ବା କପେ ଚା' ଦେବାର ଆମେ ଦେଖିନାହୁଁ ।

ସେ ଗଳପରେ ଦୋନ୍ଦେ ଏହି ଦେଖଣୀକୁ ଡାକ ତାକୁ ସେ ଚପଲ ଓ ଗୋଟିଏ ପୁଡ଼ିଆ ଦଏ । ସେ ପୁଡ଼ିଆରେ ଶପିଟ୍ ଥାଏ । ଚପଲରେ ଶପିଟ ମାଡବା କାମ ଅଫିସ୍ ବାହାର ବାରଣ୍ଡାରେ ବସିଥିବା 'ଚମାର' କରେ । ପରେ ସେ 'ଶପିଟ୍' ଲଗା ଚପଲ ଦୋନ୍ଦେ ପିନ୍ଧେ ।

ଗତ ବାରବର୍ଷ ହେଲା ଏ ରୁଟିନ୍ ଏମିତ ଚାଲିଛି । ଆମେ କଲୁ ପେଣ୍ଟ କନା ବାବଦରେ ପାଜାମା, ଉଲନ, ଗାବାର୍ଡ଼ିନ । ଟେରକଟ ଟେରଲିନ୍ ଠୁଁ ଷ୍ଟ୍ରେଚଲନ ପର୍ଯ୍ୟନ୍ତ ଆସି ପହଞ୍ଚିଥିଲୁ । କିନ୍ତୁ ଦୋନ୍ଦେ ଯେଉଁଠିଥିଲ ସେଇଠି ଅଛି । ବର୍ଷକୁ ଥରେ ହୋଲସଲେ ମାର୍କେଟକୁ ଯାଇ ଧଳା ଓ ଫିକା ନୀଳ ରଙ୍ଗର ଦୁଇଟି ଥାନ କଣି ଆଣେ । ଛ'ଟା ପାଇଜାମା ଓ ଛ'ଟା ସାର୍ଟ କଲ ପରେ ବାକି କନାର ସେ କ'ଣ କରେ ଆମେ ଜାଣିନୁ ।

କିନ୍ତୁ ଏହି ଦୋନ୍ଦେ ଆମ ତମାମ ଅଫିସ୍ ଷ୍ଟାଫ୍‌ର ସାଉକାର ଥିଲ । ତେଣୁ ତା'ର ଅଫିସିଆଲ୍ ନାଁ 'ଦୋନ୍ଦେ' ନଥାଇ 'ଲେନ୍ ଦେ' ରଖା ଯାଇଥିଲ ।

ମୁଁ ଉଠି ଦୋନ୍ଦେ ପାଖକୁ ଗଲି ।

ମୁଁ ତା' ପାଖକୁ କାହିଁକ ଯାଇଛି, ଜାଣିପାର ସେ କହିଲ—

"ଚଉକିଟା ଟାଣି ଆଣ !"

ମୁଁ ଚଉକି ଟାଣିଆଣି ବସିଲି ।

ମତେ .....।

ବୁଝିଲି, କେତେ ଦରକାର ?

ହଜାରେ ।

ମିଳବ କେବେ ଦରକାର ?

କାଲି, ପଅରଦନ ।

କାଲି ମାନେ କାଲି । ପଅରଦନ ମାନେ ଅପରଦନ । ତୁମକୁ କେବେ ଦରକାର ?

କାଲି ଦଅ ।

ସକାଳେ, ଖରାବେଳେ, ନା ସନ୍ଧ୍ୟାବେଳେ ?

ଦୋନ୍ଦେ, ସେଥିରେ କ'ଣ ଫରକ ପଡ଼ିବ !

ମୁଁ ହସିଲି ; କିନ୍ତୁ ଦୋନ୍ଦେର ଚେହେରା ଦେଖି ଚୁପ୍ ହୋଇଗଲି ।

ସକାଳ, ଖରାବେଳ ଓ ସନ୍ଧ୍ୟାରେ କିଛି ଫରକ ନାହିଁ ?

ନାହିଁ, ମାନେ ··ମୁଁ···।

କେବେ ଦରକାର ?

ସକାଳେ ।

ସମସ୍ତ ?

ବାରଟା ବାଜିବାକୁ ପାଞ୍ଚ ମିନିଟ୍ ଥିବ ।

ମିଳିବ ।

ମୁଁ ମୋ ସ୍ଥାନକୁ ଫେରି ଆସିଲି । ସାମନ୍ତରାୟ ବାବୁ ମତେ ଚାହିଁ ହସୁଥିଲେ । ମୁଁ ମଧ୍ୟ ଟିକେ ହସିଲି ।

ପରଦିନ ଅଫିସରେ ସଂଗ୍ରାମ ବାବୁ ପଚାରିଲେ—

'ଚାହା ପିଇବେ ?'

'ଚାଲ ।'

ଆମେ କ୍ୟାଣ୍ଟିନ୍‌କୁ ଗଲୁ । ଚାହା ପିଇ ନିଜ ନିଜ ଜାଗାକୁ ଫେରିଲା ବେଳକୁ ବାରଟା ପନ୍ଦର । ମୋ ଟେବୁଲ ଉପରେ ଗୋଟିଏ ଚଠା ରଖା ଯାଇଥିଲା । ଭ୍ରମର ହାତାରେ ଲେଖା ଠିକ୍ ବାରଟା ବାଜିବାକୁ ପାଞ୍ଚ ମିନିଟ୍ କମ୍ ଥିବା ବେଳେ ରେଡ଼ି ଥିଲା ।

ଲଞ୍ଚ କାମୁଡ଼ ମୁଁ ଦୋକାନ ପାଖକୁ ଗଲି ।

କାଲି ଆସ ।

ଅଇ ଆମ ସର !

କାଲି ଆସ ।

ହଉ ।

ମୁଁ ଫେରୁଚ ଦେଖି ପଚାରିଲା···।

କେତେବେଳେ ?

ଏଗାରଟା ।

ଠିକ୍ ଅଛି ।

ଏଗାରଟା ବେଳେ ମଧ୍ୟ ମୁଁ ପହଞ୍ଚି ପାରିଲି ନାହିଁ । ମୋର ଅବଶ୍ୟ କିଛି ଭୁଲ୍ ନ ଥିଲା । ଟ୍ରେନ୍ ଲେଟ୍ ହୋଇଗଲା । ମୁଁ ଅଫିସରେ ପହଞ୍ଚି ବୋଷେଙ୍କୁ ଦେଖା କରିବାକୁ ଗଲି ।

ତୁମକୁ ମୁଁ କରଜ ଦେଇ ପାରିବ ନାହିଁ ।

ମୋ କଥା ଟିକେ ଶୁଣନ୍ତୁ ?

ମୋର ସମୟ ନାହିଁ ।

କରଜ ନ ଦିଅ ; କିନ୍ତୁ କ'ଣ ହେଲା ଶୁଣ ।

ଟ୍ରେନ୍ ଲେଟ୍ ହେଲା, ଏହି କଥା ତ ?

ତାହାହେଲେ ତମେ ମଧ୍ୟ ମୋ ଟିକକ ଅଗରୁ ଆସି ପହଞ୍ଚିଛ, କହି ମୁଁ ଚଉକି ଟାଣି ବସିଲି । ବୋଷେ କିନ୍ତୁ ଅତି ରୂକ୍ଷ କଣ୍ଠରେ ମତେ ଅନେଇ କହିଲା—

ମୁଁ ଏଠି ଠିକ୍ ଏଗାରଟାରେ ଆସି ପହଞ୍ଚିଛି । ତୁମକୁ ଦେଇଥିବା ସମୟରେ ଆସି ପହଞ୍ଚିବା ପାଇଁ ମୁଁ ଟ୍ରେନ ଗୁଡ଼ି ଟାକ୍ସିରେ ଆସି ପହଞ୍ଚିଲି । ବୁଝିଲ ?

ମୁଁ ଶରମରେ ମୁହଁ ତଳକୁ କଲି । ତଥାପି କହିଲି—।'

କିନ୍ତୁ ଏ ତ ସାଧାରଣ କଥା । ଟ୍ରେନ ଲେଟ···।

ସେଥିପାଇଁ ତ ମୁଁ ତୁମକୁ କରଜ ଦେଇ ପାରିବ ନାହିଁ । ଜରୁରୀ ତୁମର ଥିଲା । ତେଣୁ ଜରୁରୀ ଥାଇ ଯେଉଁ ଲୋକ ସମୟ ରଖି ପାରୁ ନାହିଁ, ସେ ଟଙ୍କା ଫେରାଇଲା ବେଳେ ମଧ୍ୟ ସମୟ ରଖି ପାରିବ ନାହିଁ । ଯେଉଁ ଲୋକ ସକାଳ, ଖରା ବେଳ ଓ ସନ୍ଧ୍ୟାର ଫରକ ଜାଣି ନାହିଁ ତାଙ୍କୁ କ ଭରସାରେ ମୁଁ କରଜ ଦେବ ?

ମୋର କିଛି କହିବାର ନ ଥିଲା । ମୁଁ ମୋ ସ୍ଥାନକୁ ଫେରି ଆସିଲି । ସନ୍ଧ୍ୟାବେଳେ ବୋଷେ ମୋତେ ଡାକିଲା । ମୁଁ ଘଡ଼ି ଦେଖିଲି । ଠିକ୍ ପାଞ୍ଚଟା ବାଜି ଥିଲା ।

ମୋ ହାତରେ ଶହେ ଟଙ୍କିଆ ଦଶଟା ନୋଟ ରଖିଲା ।

ମୁଁ ଥ୍ୟାଙ୍କସ୍ କହିଲି ।

କେମିତି ଫେରେଇବେ ?

ମାସକୁ ଶହେ ହିସାବରେ ।

ପ୍ରତି ମାସର କେଉଁ ତାରିଖରେ ?

ସ୍ବର ତାରିଖରେ ।

ଠିକ୍ । କହି ଦୋହେ ପକେଟରୁ କ୍ୟାଲେଣ୍ଡର ବାହାର କଲା । ଆଜିଠୁଁ ନଅ ମାସ ପରେ ସେପ୍ଟେମ୍ବର ମାସର ସ୍ବଶ ତାରିଖ ରବିବାର ପଡ଼ୁଛି ।

ସେ ମାସରେ ପାଞ୍ଚ ତାରିଖରେ ଦେବ ।

ଦେଖିବା ।

ମୁଁ ଯିବାକୁ ବାହାରିଲି । ମତେ ଅଟକେଇ ପଚାରିଲା ।

ତାରିଖ ତ ହେଲା । ସମୟ ?

ପ୍ରତି ମାସ ସ୍ବର ତାରିଖ ଅପରାହ୍ଣ ତିନିଟା ।

ଠିକ୍ ଅଛି ।

ଦୋହେ ଦେଇଥିବା ହଜାର ଟଙ୍କାର ପ୍ରଥମ କିସ୍ତି ଦେଇ ମୁଁ ଓ୍ବାସିଙ୍ଗ ମେସିନ ଧରି ଗର୍ବରେ ଘରେ ପ୍ରବେଶ କଲି । ଦେଖୁ ଦେଖୁ ପଡ଼ୋଶୀ ଘରର ଓ ଆଖ ପାଖର ଆବାଳ ବୃଦ୍ଧ ବନିତା ଜମି ଗଲେ । ଓ୍ବାସିଙ୍ଗ ମେସିନକୁ ଡନ ଡନ କରି ପରୀକ୍ଷା କରାଗଲା । ଯେଠ, ଚର୍ଚ୍ଚା ଗ୍ଭଲିଲା । ମୁଁ ଆଗପଟ ରୁମ୍‌ରୁ ଶୁଣୁଥାଏ । ଭୁମ ମିଷ୍ଟରମାନେ ଶଅଲ୍ ଗ୍ରେଟ୍ । ମୋ ଗ୍ଭତି ଗର୍ବରେ ଫୁଲି ଉଠିଲା । ଶ୍ରୁତି ଆଜି ଧନ୍ୟ ହୋଇଗଲା । ଓ୍ବାସିଙ୍ଗ ମେସିନରୁ ଏଥର ବ୍ଯୟସ୍କବସ୍ତୁ ବଦଳି କାହାର ସ୍ବାମୀ କପର, ସେ ବିଷୟରେ ଚର୍ଚ୍ଚା ଗ୍ଭଲିଲା । ଅନ୍ୟମାନଙ୍କ ତୁଳନାରେ ମୁଁ ଟିକେ ସରସ ଶୁଣି ଧନ୍ୟ ହୋଇଗଲି ।

ପରଦିନ ଅଫିସରେ ସରଗରମ ଚର୍ଚ୍ଚା ହେଲା । ସାମନ୍ତରାୟ ବାବୁ କହିଲେ—

ସ୍ବା ଲଙ୍ଗୁଡ଼ ଛାଡ଼ିଲା ।

କେତେ ଟଙ୍କାକୁ ? ସଂଗ୍ରାମ ବାବୁ ପଗ୍ଭରିଲେ ।

ହଜାର ଟଙ୍କା । ମୁଁ କହିଲି ।

କ'ଣ କିଣିଲେ ? ମହାରଣା ବାବୁ ପଗ୍ଭରିଲେ ।

ଓ୍ବାସିଙ୍ଗ ମେସିନ ।

କିସ୍ତିର ତାରିଖ ଠିକ୍ ହେଲା ? ପାଢ ବାବୁ ପଗ୍ଭରିଲେ ।

ଖାଲି ତାରିଖ କ'ଣ ପଗ୍ଭରୁଛ ? ବେଳା, ତିଥି, ମୁହୂର୍ତ୍ତ ସବୁ ପଗ୍ଭର ।

ତାର ଟଙ୍କାରେ ସହକ କରି ତାକୁ କହନ୍ତୁଛ ?

ସେମିତ ନୁହେଁ ?

ଦୋଦେ କଥା କିନ୍ତୁ ମୋ ମନକୁ ପାଇଲା ।

କ'ଣ ମନକୁ ପାଇଲ ?

ବ୍ୟାଙ୍କରୁ କରଜ ଆଣିଲ୍ ବେଳେ ସାକ୍ଷୀ ଦରକାର । କେତେ ଫର୍ମ ଦସ୍ତଖତ କରିବାକୁ ପଡ଼େ । ଦରକାର ପଡ଼ିଲେ କିଛି ବନ୍ଧା ରଖିବାକୁ ପଡ଼େ । ହୁନିଆ ଧନ୍ଦା । ଟାଇମ ବରବାଦ । ଦୋଦେର କିନ୍ତୁ କେବଳ ଗୋଟିଏ କଥା । ସମସ୍ତ ଜଗିବ ।

କ'ଣ ଅସୁବିଧା ?

ଏ କଥା ଠିକ୍ ।

ବାର ବର୍ଷରେ ଏ ଲୋକଟା ବଦଳିଲା ନାହିଁ ?

ସବୁ କିଛି ଏକଦମ୍ ଟାଇମ୍‌ରେ । ଆସିବା, ଯିବା ଖାଇବା, ପିଇବା,— ସବୁ ଘଡ଼ି ଦେଖି ।

କେଉଁଠି ରହୁଛି ?

କଲ୍ୟାଣରେ । ରୋଜ ଏଠିକୁ ଟ୍ରେନରେ ଆସେ ।

ଥରେ ଯିବା ତା' ଘରକୁ ।

କାହିଁକି ?

ତା' ଘର ଦେଖିବାର ଇଚ୍ଛା ଅଛି ?

ଦୋଦେ ଆସି ଆହୁଣ୍ଡି ଯିବାରୁ ଚର୍ଚ୍ଚା ବନ୍ଦ ହେଲା ।

ଗୋଟିଏ ରବିବାରରେ ଆମେ ସମସ୍ତେ ଏକାଠି ମିଶି ଦୋଦେ ଘରକୁ ଗଲୁ । ଦୋଦେକୁ ଆଚମ୍ବିତ କରିବା ପାଇଁ ଆମେ କୌଣସି ଖବର ନ ଦେଇ ତା' ଘରେ ହାଜର୍ ହେଲୁ । ହଠାତ୍ ଏତେଗୁଡ଼ିଏ କୁଣିଆ ଦେଖି ଆମ ଘରେ ଚହଳ ପଡ଼ି ଯାଇଥାନ୍ତା ।

'ଦେଖଛ ! କିଏ ଆସିଛନ୍ତି' ର ଡାକ ପଡ଼ିଥାନ୍ତା ।

କିନ୍ତୁ ଦୋଦେ ଏକଦମ୍ ଚୁପ୍ । ସେ ବସିବା ପାଇଁ ସପଟିଏ ପାରିଦେଲା ।

ଆମେ ବସିଲୁ ।

ଦୁଇଟା ବଖରା । ବାହାର ବଖରାଟି ଚଉଦ ବାଇ ଦଶର ହୋଇଥିବ । କିନ୍ତୁ ଖାଲି ଜାଗା କେବଳ ଛଅ ବାଇ ଚଉଦର । ସାମନା ସାମନି ଦୁଇଟା ଦୁଆରକୁ ଯୋଡ଼ୁଥିବା ଜାଗା । ବାକି ଘରଯାକ ଲୁଗା ଗଣ୍ଠିଲିରେ ପୂରି ରହିଥିଲା । ଆଲମୀରା

ନାମକ କୌଣସି ଚଳ ସେଠି ନ ଥିଲା । ଗୋଟାଏ କଣରେ ଖଟଟିଏ ଥିଲା । ତା' ଉପରେ ମଧ୍ୟ ଲୁଗା ଗଣ୍ଠିଲି ସବୁ ରଖା ଯାଇଥିଲା । ତା'ଛଡ଼ା ଖୁଣ୍ଟିରେ, କଣ୍ଟାରେ, ଚାରିକ ବାଡ଼ାରେ ସ୍ତରଆଡ଼େ ଲୁଗାପଟା ପଡ଼ିରହିଥିଲା । ଯେଉଁଠି ଟିକେ ଜାଗାଥିଲା, ସେଠି ବହି, ଟ୍ରଙ୍କ୍ , ବେଷ୍ଟ୍ ଟିଣ, ଝାଡ଼ୁ, ଔଷଧ ବୋତଲ ··ଆଉ କେତେ କ'ଣ । ଖଟ ଉପରେ ପଡ଼ିଥିବା ଚଳଆ, ଗଦି, ଚ୍ଚଦର ପରେ ଯେଉଁ ଟିକେ ଜାଗା ବଳିଥିଲା ତା' ଉପରେ ଦୋଳେର ପାଞ୍ଚ ବର୍ଷର ପୁଅ ଶୋଇଥିଲା । ତା' ଦେହରେ, ମଧ୍ୟ ଧଳା ପାଇଜାମା, ଫିକା ନୀଳରଙ୍ଗର ସାର୍ଟ ଓ ମୁଣ୍ଡବାଳଗୁଡ଼ିକ ବାପ ବାଳ ଭଳି କଟା ହୋଇଥିଲା ।

ତନି ଚ୍ଚର ମିନଟ୍‌ରେ ସେ ଘରେ ବସି ବସି ଆମକୁ ଖାଲି ବାନ୍ତ ଦେଖେଇଲା । ସାଂସାରିକ ହେବା ଦିନଠାରୁ ସଂସାର ଉପଯୋଗୀ ଯାହା ଯାହା ବସ୍ତୁ ସେ ଘରକୁ ଆସିଥିଲା ସେ ସବୁ ସେଇଠି ପଡ଼ି ରହିଥିଲା । ତଥାପି ଦୋଳେର ଜୀବନ ସୁରୁ-ଖୁରୁରେ ଚାଲିଥିଲା ।

ଆଜି ଏଣେ କୁଆଡ଼େ ? ସମସ୍ତଙ୍କୁ ଚାହିଁ ଦୋଳେ ପଚାରିଲା ।

ଅରେ କମାଲ କରୁଛ । କୁଆଡ଼େ କ'ଣ ? ତୁମର ଘରକୁ ଆସିଛୁ ।

ମୋ ଘରକୁ ? ଅସମ୍ଭବ ।

କାହିଁକି ଅସମ୍ଭବ ?

ତମେ ମତେ କାଲି ଅଫିସରେ କହିଥାନ୍ତ ।

ତମକୁ ଆଚମ୍ବିତ କରିବା ପାଇଁ କହି ନ ଥିଲୁ ।

ଦୋଳେ ଚୁପ୍ ହୋଇରହିଲା ।

ସେତିକବେଳେ ତା' ସ୍ତ୍ରୀ ଆସି ଦୁଆର ମୁହଁରେ ଠିଆହେଲା ।

ଆମେ ପରସ୍ପର ଆଡ଼କୁ ଅନେଇଲୁ ।

ରନ୍ଧୁଟିଏ ଗୋବର ଗଦାରେ ପଡ଼ିଲା ଭଳି ଲାଗିଲା । ତୋ ସହିତ ପରିଚୟ କରେଇ ଦଉଛ କହି—ଏ ପାଇ ବାବୁ, ଏ ସଂଗ୍ରାମ ବାବୁ, ଏ ସାମନ୍ତରାୟ ବାବୁ କହି ପରିଚୟ କରାଇ ଦେଲା ।

ସେ ନମସ୍କାର କରି ଭିତରକୁ ଚାଲିଗଲା ।

ବସିଥିବା ଘରଟି ଆହୁରି ଭୟଙ୍କର ଲାଗିଲା । ସ୍ତର ଅନୁସାରେ ଆମେ ଦଶ ମିନଟ୍ ଅପେକ୍ଷା କଲୁ । କପେ ଚାହା ପାଇଁ ବସି ରହିଲୁ । କିନ୍ତୁ ସେ ଦଗରୁ କୌଣସି ଆଶା ନ ଦେଖି ଆମେ ବାହାରିଲୁ । ଦୋଳେ ସଙ୍ଗେ ସଙ୍ଗେ ଅମକୁ ବିଦାୟ ଦେଲା ।

ଫେରିବା ସମୟରେ ପୁଣି କଥା ପଡ଼ିଲା ।

ଆମେ ପାହାଚ ଚଢ଼ିଲାବେଳେ ତଳ କଣରେ ଯେଉଁ ସ୍ତ୍ରୀ ଲୋକଟି ଚୁଲି ଜଳୋଉଥିଲା ଏ ସେହି ସ୍ତ୍ରୀ । କାଗଜ ପରେ କାଗଜ ଜାଳୁଥିଲା, ସେହି ସ୍ତ୍ରୀଟି ।

ହଁ ଏ ଜଣସ୍ତ୍ରୀ ସେହି ସ୍ତ୍ରୀ ।

ଅର୍ଥାତ୍ 'ଦୋନ୍ଦେ' ଘରେ ଗ୍ୟାସ ମଧ୍ୟ ନାହିଁ ।

ଜଣସ୍ତ୍ରୀ ନ ଥିବ ।

ଏଭଳି ଲୋକକୁ ଏଭଳି ରତ୍ନ ମିଳିବା ମାନେ···

ଈଫ୍‌କୋ କହିଲେ ହେଁ ତକଦୀର ।

ଶଳା । ମତେ ଯଦି ଏମିତି ସ୍ତ୍ରୀଟିଏ ମିଳିଥାନ୍ତା ! ତାକୁ ପଲଙ୍କରୁ ତଳକୁ ଓହ୍ଲେଇ ଦେଇ ନ ଥାନ୍ତି । ସେ ଖାଲି ହୁକୁମ କରିଥାନ୍ତା—ମୁଁ ଚବଶ ଘଣ୍ଟା ଖାଲି ସେବା କରୁଥାନ୍ତି ।

ଦୋନ୍ଦେ ମଧ୍ୟ ସେବା କରୁଥିବ ।

ଫର୍ ଗଡ଼ସେକ୍, ତା' କଂ। ମଧ୍ୟ ଧରନା । ବସିବା ପାଇଁ ଖଟରେ ଜାଗା ଟିକେ ନ ଥିଲା । କପେ ଗ୍ଲହା ମଧ୍ୟ ନାହିଁ । ଆଜି ଖାଇବାକୁ ମିଳିବ କି ନାହିଁ, ସନ୍ଦେହ ?

ଏତେ ସ୍ୱଗୁରୁ କାହିଁକି ? ଆମେ କଣ ଏତେଦୂର ଗ୍ଲହା ପିଇବାକୁ ଆସିଥିଲେ ?

ତା' ଘର ଦେଖିବାକୁ ଆସିଥିଲୁ ।

ଦେଖିଲୁ ।

ଭଦ୍ରାମୀ ଦୃଷ୍ଟିରୁ କପେ ଗ୍ଲହା କ'ଣ ଦେଇ ପାରନଥାନ୍ତା ? ପାଙ୍ଗ ବାବୁଙ୍କୁ ଗ୍ଲହା କଥାଟା ଭାରି ବାଧି ଥିଲା । ଘରେ ପହଞ୍ଚିବା ପର୍ଯ୍ୟନ୍ତ ସେ ଖାଲି କହୁଥିଲେ ଶଳା, କପେ ଗ୍ଲହା ମଧ୍ୟ ମିଳିଲା ନାହିଁ !

ପରଦିନ ଦୋନ୍ଦେର ଚେହେରା ସେତିକି ନିର୍ବିକାରଥିଲା । କପେ ଗ୍ଲହା ମଧ୍ୟ ଦେଇ ନ ଥିବାର୍ ଦୁଃଖ ତା' ଚେହେରାରେ ଦେଖାଯାଉ ନ ଥିଲା ।

ତା'ପରେ ଆମେ ମଧ୍ୟ ସେ କଥା ଭୁଲିଗଲୁ । ଦୋନ୍ଦେର ବ୍ୟବସାୟ ଠିକ୍ ଗ୍ଲଲିଥିଲା । ପାଞ୍ଚ ପରସେଣ୍ଟ ସୁଧଟା ବୋଧେ ଭଲ ଲାଗୁ ନ ଥିଲା । ଦୋନ୍ଦେ କାହାକୁ କହିଲା ଭଲି ମନେ ପଡ଼ୁଥିଲା— ଏତିକି ସୁଧ ମଧ୍ୟ ମୁଁ ନେଇ ନ ଥାନ୍ତି କିନ୍ତୁ ମାଗଣା ଜିନିଷର ମୂଲ୍ୟ ନଥାଏ । ତେଣୁ ଏ ନାମ ।ାଙ୍ଗ ସୁଧ ମୁଁ ଉଠାଉଛି ।

ସମସ୍ତଙ୍କୁ ଜଗିବାଟା ଆମକୁ ବାଧୁଥିଲା । କସ୍ତିର ତାରଖ ଥିଲେ ଓ ସେ ସବୁ ଛୁଟିରେ ଥାଏ, ତାହାହେଲେ କେବଳ କସ୍ତି ପାଇଁ ସେ ଏତେ ଦୂରରୁ ଅଫିସକୁ ଆସେ । ତେଣୁ ମୁଁ ମଧ୍ୟ ମନସ୍ଥ କରିଥିଲି ତା' ପାଇଁ ସମସ୍ତ ସମ୍ଭାଳିବି । ଯେଉଁ ମାସରେ ବୃଣ ତାରଖ ରବିବାର ପଡୁଥିଲା । ସେ ସେପ୍ଟେମ୍ବର ମାସ ଆସିଲା । ପୂର୍ବଦିନ ଅର୍ଥାତ୍ ଶନିବାର ଦିନ ଦୋହେ ମତେ କିଛି କହି ନ ଥିଲା ।

ମୁଁ ସାମନ୍ତରାୟ ବାବୁଙ୍କୁ ପଚାରିଲି ।

ସେ କହିଲେ – ତୁମେ ବ୍ୟସ୍ତ ହୁଅନାହିଁ । ସେ ଠିକ୍ ଦିନଟାରେ ତମ ଘରେ ହାଜର ହେବ ।

କେମିତି ?

ପରୀକ୍ଷାକରି ଦେଖ । ସେତେବେଳେ ତମ ପାଖକୁ କେହି ଆସିଥାଇ-ପାରେ । ସେମାନେ ଗଳ୍ପପରେ ଦୋହେକୁ ଟଙ୍କା ଦବ ବୋଲି ତମେ ଭାବୁଥିବ । କିନ୍ତୁ ଦୋହେ ଠିକ୍ ଦିନଟାରେ ତମକୁ ଟଙ୍କା କଥା ପଚାରିବ ।

ମୁଁ ନିଜେ ଯଦି ତାକୁ ଟଙ୍କା ଦେବି, ତା' ହେଲେ—

ତଥାପି ଚୁପ୍ ହେବ ନାହିଁ, ସମସ୍ତଙ୍କ ଆଗରେ ଆଉ କେତେଟା କସ୍ତି ରହିଲା ପଚାରିବ ।

ମୁଁ ଟିକେ ଭାବିଲି । ସାମନ୍ତରାୟ ବାବୁ ମତେ ଠାରରେ ପଚାରିଲେ କ'ଣ ଭାବୁଛ'!

ଭାବୁଛି, ତାକୁ କାହିଁକି କଷ୍ଟ ଦେବି । ମୁଁ ନିଜେ ତା' ଘରକୁ ଯାଇ ଦେଇ ଆସିବି ।

ଭଲକଥା । ତା'ହେଲେ ଏମିତି କର ।

କୁହ !

ତୁମେ ଫାମିଲି ସହ ଆମ ଘରକୁ ଆସ, ଖାଇବାକୁ ।

ତମ ଘରକୁ ? ବାପ୍‌ରେ !

ପିକ୍‌ନିକ ମନେକରି ଭଲ ଆସ । ଖିଆ ପିଆ ସାରି ସନ୍ଧ୍ୟାବେଳେ ଫେରି ଆସିବ । ମିସେସ୍‌ଙ୍କୁ ଆମ ଘରେ ଛାଡ଼ି ଦେଇ ଦୋହେର ଟଙ୍କା ଦେଇ ଆସିବ ।

ଯୋଜନାଟି ମନ୍ଦ ନ ଥିଲା । ମୁଁ ହଁ କହିଲି ।

ଆମେ ସାମନ୍ତରାୟଙ୍କ ଘରେ ପହଞ୍ଚିଲୁ । ସକାଳ ଦଶରେ ତାଙ୍କ ଘରେ ହାଜର । ଆନନ୍ଦରେ ସାମନ୍ତରାୟ ବାବୁ ଆମକୁ ସ୍ୱାଗତ ଜଣେଇଲେ । ହସ, ଗପ,

ଶୁଣୁଥା ଶୁଣିଲ । ତାଙ୍କ ସ୍ତ୍ରୀ ଆମକୁ ତାଙ୍କ ଘର ଦେଖେଇଲେ । ଫ୍ରିଜ୍, ସ୍କୁଟର, ଓ୍ୱାସିଙ୍ଗ୍ ମେସିନ୍ ପ୍ରଭୃତ ଦେଖେଇଲେ ।

ଏସବୁ ଦୋଳେର କୃପା···ସାମନ୍ତରାୟ ବାବୁ ।

ତାଙ୍କ ସ୍ତ୍ରୀ କହିଲେ ··କୃପା ··କ'ଣ ? ପାଞ୍ଚ ପରସେଣ୍ଟ ସୁଧ ନେଉଛୁ ।

କଣ୍ଡି ଦିନ ସୈତାନଙ୍କ ଭଳି ଦୁଆର ମୁହଁରେ ଆସି ଠିଆ ହେଉଛୁ ।

ଜଣେ ଜଣେ ଆଥାନ୍ତ ଏମିତ ପାଗଳ ।

ସେଥିପାଇଁ ମୁଁ ନିଜେ ଯାଇ ତାକୁ ଟଙ୍କା ଦେଇ ଆସିବି ।

ସାମନ୍ତରାୟ ବାବୁ କହିଲେ···। ଖାଇବା ପରେ ଯିବା ପାଇଁ ଅଳସୁଆ ଲଗିବ । ତେଣୁ ବର୍ତ୍ତମାନ ଯାଇ ତମେ ଟଙ୍କା ଦେଇ ଆସ ।

ବହୁତ ଭଲ । ମୁଁ ଯାଇ ଆସେ ।

ମୁଁ ହଠାତ୍ ଯାଇ ପହଞ୍ଚିଲି ।

ଦୋଳେ ଘରେ ନ ଥିଲି ।

ଦୋଳେର ସ୍ତ୍ରୀ ଅପେକ୍ଷା କରିବାକୁ କହିଲା । ବଖରାଟିର ସ୍ଥିତି ସେମିତି ଥିଲା ।

ଏ ପରିସ୍ଥିତିରେ ପାଗଳ ନ ହୋଇ ଏମାନେ କେମିତି ରହିଛନ୍ତି, ମୁଁ ଏହି କଥା ଭାବୁଥିଲି । ସ୍ତ୍ରୀ ଘରଟି କପରି ସୁନ୍ଦର ଦିଶିବ, ସେଥିପାଇଁ ସଜାଗ ଥାଏ ।

ଏଠି କନ୍ତୁ ମଣି କାଞ୍ଚନର ସଂଯୋଗ ଥିଲି ଭଳି ଲାଗୁଥିଲା ।

ହିସାବ ଓ ସମୟ ପାଳନରେ ଯେଉଁ ଲୋକ ଏତେ ନିଷ୍ଠାପର, ସଂସାରରେ ଅନ୍ୟ ବାବଦରେ ଏତେ ବେପରୁଆ ହୋଇଥିବ · ମୁଁ କଳ୍ପନା କରି ନ ଥିଲି ।

କିଛି ସମୟ ପରେ ମୁଁ ଡାକିଲି ।

ସୌନ୍ଦର୍ଯ୍ୟ ଆସି ଦୁଆରେ ଠିଆ ହେଲା ।

ମୁଁ କେବଳ କଣ୍ଡିଟା ଦବାକୁ ଆସିଥିଲି ।

ସେ ଆସିଲେ ତାଙ୍କୁ ଦିଅ । ତାଙ୍କ କଥା ସେ ବୁଝନ୍ତି ।

ଠିକ୍ ଅଛି, ମୁଁ ଅପେକ୍ଷା କରୁଛି ।

ଆଉ ଗୋଟିଏ କଥା କହିବି ?

ନିଶ୍ଚୟ ।

ଘରେ ଗ୍ୟାସ ଥିଲେ ସେ ଆସିବା ପୂର୍ବରୁ ଚାହା କପେ ଦେଇଥାନ୍ତି । କିନ୍ତୁ ଚୁଲ୍ଲୀ ଜାଳି ଚାହା ହେବା ଭିତରେ ସେ ଅଫି ଯାଇ ପହଞ୍ଚିବେ, ପରେ ଖଣ୍ଟା ଗର ଗର ହେବେ ।

ମୁଁ ମୁଣ୍ଡ ହଲେଇ ଟିକେ ହସିଲି ।

ଖରାପ ଭାବବେ ନାହିଁ ।

ମୁଁ ଆଗରୁ ଜାଣିଛି ।

ଦୋବେ ଆସିଲା ।

କେତେବେଳେ ଆସିଲେ ?

ଏଇ ତ ଆସିଲି ।

ମୁଁ ଟଙ୍କା ତାକୁ ଦେଲି । ସେ ନେଲା ।

ଟିକେ ପଚାରିବାର ଥିଲା ?

ପୁଣି ଟଙ୍କା ଦରକାର ?

ନା, ନା, ଅନ୍ୟ ଗୋଟିଏ ବିଷୟରେ ପଚାରିବାର ଥିଲା ।

ପଚାର ।

ମୁଁ ଟଙ୍କା କାହିଁକି ମାଗୁଛି, ତମେ କେବେ ପଚାରିଲ ନାହିଁ ?

ମୋର କ'ଣ ସମ୍ବନ୍ଧ ?

ମାନେ……

ତମେ ବ୍ୟାଙ୍କରୁ ଟଙ୍କା ଆଣ । ସେତେବେଳେ କ୍ୟାସିଅର ତୁମକୁ ପଚାରେ କି ଟଙ୍କା କାହିଁକି ନେଉଛ ?

ସେ କଥା ଅଲଗା ।

ତମକୁ କହିବି । ନିଶାଖୋର ବ୍ୟକ୍ତି ତା' ନିଶା କଥା ପଚାରିଲେ, ତାକୁ ଭଲ ଲାଗେ ନାହିଁ ।

ନିଶାଖୋର କିଏ ?

ମାନେ ତମେ ଓ ତମ ଭଳି ସମସ୍ତେ ।

'ଦୋବେ' କଥା ଶୁଣି ମତେ ଆଶ୍ଚର୍ଯ୍ୟ ଲାଗିଲା ଓ ରାଗିଗଲି ମଧ୍ୟ । ରାଗକୁ ମନରେ ମାରି ପଚାରିଲି—

ମୁଁ ବୁଝି ପାରିଲି ନାହିଁ ।

ଗ୍ଲୁଡ ! ଅଯଥା ଚର୍ଚ୍ଚା କର ସମସ୍ତ କାହିଁକି ନଷ୍ଟ କରିବା ।

ନା, କଥାଟା ଯଦି ଉଠିଲାଣି ତାହା ହେଲେ ସରିବା ଦରକାର ।

ନିଶାଖୋର କିଏ ଓ କି ନିଶା ଆମେ କରୁଛୁ ?

ନିଶାମାନେ ତମେ କ'ଣ ଭାବିଲ, ବେଦମ ପିଇବା ନା ଗଞ୍ଜିବାଜି କରିବା । ତୁମର ସେ ହିମ୍ମତ ନାହିଁ । କିନ୍ତୁ ଏ ଦୁଇଟା ବି ଚଳିବ । ତୁମ ସମସ୍ତଙ୍କର ଯେଉଁ ନିଶା ତାହା ଏହାଠୁଁ ଆହୁରି ଭୟଙ୍କର ।

ଆମ ସମସ୍ତଙ୍କର ?

ସମସ୍ତେ । ଅଫିସ୍‌ରେ ଯେତେକ ଓ ଏଠି ମୋ ଆଖପାଖର ସମସ୍ତେ । ଏ ବୟସରେ ତମେ ସବୁ ଅତ୍ୟଧିକ ନିଶାଗ୍ରସ୍ତ ହୋଇ ପଡ଼ିଛ ଓ ଏ ନିଶାକୁ ଗୋଟିଏ ସୁନ୍ଦର ନାମ ଦେଇଛ ।

ମୁଁ ଖାଲି ବଲ୍ ବଲ୍ ହୋଇ ଦୋଦେଙ୍କୁ ଚାହିଁ ରହିଥିଲି ।

ତମ ସମସ୍ତଙ୍କୁ କାଲ ସହିତ ଦୌଡ଼ିବାର ନିଶା ଧାରିଛି ଓ ତା'ର ନାଁ ରଖିଛ "ସଉକ" । ଯେଉଁ ନିଶାକୁ ପାଦରେ ଦଳିବା ଦରକାର, ତା'ର ତମେ ଗୁଣ ଗାଉଛ । କଣ ଚାହୁଁଛ ଏସବୁ ? ଆଜି କଣ ଗ୍ୟାସ ଆସିଲା, ଗ୍ୟାସ ଆଣ । ପ୍ରେସର-କୁକର ଆସିଲା; ତାକୁ ବି ଆଣ । ଏପରି ଫ୍ରିଜ, ମିକ୍ସର, ଟେଲିଭିଜନ, ଓ୍ୱାସିଙ୍ଗ ମେସିନ୍ ଇମିତ କେତେ କ'ଣ ।

ଏଥର ମୁଁ ହୋ ହୋ ହୋଇ ହସିଲି ।

ଏଇ ନିଶା ତ, ଚଳିବ । ତମେ ରାଗିଲେ ମଧ୍ୟ ଚଳିବ ।

କିନ୍ତୁ ଆମେ ଏସବୁ କାହିଁକି କରୁଛୁ, ସେ କଥା ଟିକେ ଚିନ୍ତା କର ।

"ମାଇପ ନାମକ ପ୍ରାଣୀଟାକୁ ଖୁସି କରିବା ପାଇଁ ତ ।"

ମୁଁ ବି ଏଥର ଅଣ୍ଟା ଭିଡ଼ି ରେଡ଼ି ହୋଇଗଲି, ଏ ପ୍ରାଣୀ ଆଜି ପାଟି ଖୋଲିଛି । ତେଣୁ ମୁଁ ବି ଆଜି ପଦେ ଶୁଣେଇବି । ତା' ଘର, ରହିବା ପଦ୍ଧତି, ସୁନ୍ଦର ସ୍ତ୍ରୀ ପ୍ରତି କରୁଥିବା ଅନ୍ୟାୟ, ଏ ସବୁର ରାଗ ମୋ ମନରେ ଥିଲା ।

ମୁଁ କହିଲି ଏଥିରେ କେବଳ ଖୁସ୍ କରିବାର ପ୍ରଶ୍ନ ନାହିଁ । ଆହୁରି ଅନେକ ହେତୁ ଅଛି ।

କୁହ ?

ଆମ ସମସ୍ତଙ୍କର ସ୍ତ୍ରୀମାନେ ଊଣା ଅଧିକେ ଶିକ୍ଷିତା । ମୋ ସ୍ତ୍ରୀ ଇଣ୍ଟର ପାଶ୍ । ସାମନ୍ତରାୟ ବାବୁଙ୍କ ସ୍ତ୍ରୀ ବି. ଏ. ପାସ୍ । ପାଢ଼ ବାବୁଙ୍କ ସ୍ତ୍ରୀ ହିନ୍ଦୀର ଗୁରୁଡା ପରୀକ୍ଷା ଦେଇଛନ୍ତି । ଏମାନେ ସମସ୍ତେ କ'ଣ ତାଙ୍କ ନବେ ଭାଗ ସମୟ କେବଳ ରୋଷେଇ ଘରେ କଟେଇବେ ?

ବାସ୍ ସରିଲା । କେବଳ ଏତିକି ।

ମୁଁ ଚୁପ୍ ହୋଇଗଲି ।

ଏ ସମସ୍ତ ସୁବିଧା ସହିତ ତାଙ୍କୁ ଗୋଟାଏ ଅପ୍ ଟୁଡେଟ୍ ଘର ତମେ ସଜେଇ ଦେଲ । ଏଥର ମତେ କୁହ । ତାଙ୍କ ବଳିଥିବା ସମୟର ସେମାନେ କ'ଣ ସଦୁପଯୋଗ କଲେ । କେତେଜଣ ତାଙ୍କ ଜ୍ଞାନ ବଢ଼େଇଲେ ? କେନେରାଲ ନଲେଜ ଶିଖିଲେ ? କେତେଥର ତମ ସହିତ ଓ ଘରକୁ ଆସୁଥିବା ଲୋକଙ୍କ ସହିତ ବୌଦ୍ଧିକ ଚର୍ଚ୍ଚା କଲେ ? କ'ଣ ସବୁ ବହି ପଢ଼ିଲେ ? ରାଜନୀତି କଥା କେତେ ବୁଝିଲେ ? କହିପାରିବ ? ନାଟକ, ଅଶ୍ଳୀଳ ସିନେମା, ଶାଢ଼ୀ ସେଲ, ପର ସ୍ତ୍ରୀର ନିନ୍ଦା, ଅନ୍ୟର ଦୋଷ ଦେଖିବା, ହିରୋ ହିରୋଇନ୍‌ମାନଙ୍କର ଲଫଡ଼ା, ଏହାଛଡ଼ା ଆଉ କିଛି କହିବାର କେବେ ଶୁଣିଛ ?

ମୋ ପାଖରେ ଉତ୍ତର ନ ଥିଲା ।

ମୋ ସ୍ତ୍ରୀ ମଧ୍ୟ ବି: ଏ: ପାସ୍ କରିଛି । କିନ୍ତୁ ଦଉଡ଼ ସେତିକି । ବି. ଏ.ର ଅହଙ୍କାର ନଷ୍ଟ କରିବା ପାଇଁ ପ୍ରଥମ ଦିନ ଚୂଲି ଲଗେଇଲା ବେଳେ ପ୍ରଥମ କାଗଜ ରୂପେ ତା' ବି. ଏ. ସାର୍ଟିଫିକେଟ ତାରି ହାତରେ ଜଳେଇଲି । ସାଧାରଣ କାଗଜ ଭଳି ସେ ସାର୍ଟିଫିକେଟଟା ଜଳିଗଲା । ବି. ଏ.ର ଷ୍ଟାମ୍ପ ଥିଲା ବୋଲି ବେଶି ନିଆଁ ହେଲାନାହିଁ । ଇମିତି ହୁଏ । କାଗଜ ସବୁ ସମାନ । କାଗଜରେ ଅହଂକାର ଲଗିଲେ ତାହା ସାର୍ଟିଫିକେଟ ହୁଏ । ଚାରି ଜଣଙ୍କ ମେଳରେ ରହିଲେ କେତେଗୁଡ଼ିଏ କଥା କରିବାକୁ ହିଁ ପଡ଼େ , ଏହି ଆବରଣ ତଳେ ଆମେ ନିଜକୁ ଜନ୍ମଯାକ ବିକିଦେଉ । ସମାଜର ଅଶ୍ରା ମିଳିବା ଆଶାରେ ଏ ସାମାଜିକ ରୀତି ନୀତିଗୁଡ଼ିକ ବୋଝ ଭଳି ଲଗନ୍ତି । ବେଳ ଅବେଳରେ ଗୃହା କରିବାଠାରୁ ଆରମ୍ଭ କରି ଅନେକ ମନ ନ ଚାହୁଁଥିବା କଥା ଏ ସମାଜ ଆମକୁ କରିବାକୁ ବାଧ୍ୟ କରେ । ମିଛ କହୁଛି ଯଦି କୁହନ୍ତୁ । ଘରେ ମଡର୍ନ ବସ୍ତୁଗୁଡ଼ିକ ଦରକାର । ତାହା ମଧ୍ୟ ସମାଜ ପାଇଁ । ତେଣୁ ସେଥିରେ କିଛି ଅର୍ଥ ନାହିଁ । ମୋ ବାପା ତାଙ୍କ ବନ୍ଧୁମାନଙ୍କୁ କହୁଥିଲେ······

"ଶଳେ, ତୁମମାନଙ୍କର ରହଣୀ ଏମିତି ଯେ, ତମ ପିନ୍ଧା ଲୁଗାକୁ ଦେଖି, ତମ ଘରକୁ ଦେଖି ଲଗିବ—ଲକ୍ଷେ ଟଙ୍କାର ମାଲିକ ହୋଇଥିବ । ତୁମର ଏ

ଗୁବାବ୍ ଦେଖି କେହି ଯଦି ଶହେ ଟଙ୍କା ମାଗିଲା, ତାହାହେଲେ ତମର ପେଲି ବାହାର ପଡ଼ିବ । ସମାଜ ଆଖିରେ ଏମିତି ଧୂଳି କାହିଁକି ଦଉଛରେ ? ମତେ ବୁଦ୍ଧୁ, ସେ କ'ଣ୍ ମିଛ କହୁଥିଲେ ? କହି କିଛି ଲାଭ ନାହିଁ । ତମେ ମଧ୍ୟ ଧୀରସ୍ଥିର ହୋଇ କାହିଁକି ଶୁଣୁଛ । କାରଣ ତମେ ଆଜି ମୋର ········

ଦୋହେର କଥାଟା ଅଧା ରହିଯିବାରୁ ମତେ ଭଲ ଲାଗିଲା । କାରଣ ସେତେବେଳେ ତା' ପାଖକୁ ଆଉ ଜଣେ ଆସି ପହଞ୍ଚିଲା । ଦାନ୍ତ ଦେଖେଇ କହିଲା —

ନାଇଁ ମାନେ ତୁମ ସମସ୍ୟାଟା ଠିକ୍ ଜଗିବା ଦରକାର···ହେଁ···ହେଁ···
ବସ ।

ଦୋହେ ଶୁଷ୍କ କଣ୍ଠରେ କହିଲା ।

ମୁଁ ବିଦାୟ ନେଇ ଆସିଲି ।

ପରଦିନ ଅଫିସ୍‌ରେ ବସି ମୁଁ ସେହି କଥା ମନେ ପକାଉଥିଲି । ଆଜି ପର୍ଯ୍ୟନ୍ତ ଯେପରି ଅସଂଖ୍ୟ ସୋମବାର ଆସିଗଲା, ସେମିତି ଏ ସୋମବାର ମଧ୍ୟ ଯିବା ବାଟରେ ଥିଲା । ଗତକାଲି ସାମନ୍ତରାୟ ବାବୁଙ୍କ ଘରେ ମଉଜ ମଜ୍‌ଲିସ୍‌ର ଖାଇବା ପିଇବା ସାରି ସ୍ୱଚ୍ଛରେ ଫେରି ଆସିଲି । ଦୋହେ ସହି ହୋଇଥିବା କଥାଗୁଡ଼ିକ ଆଜି ଚର୍ଚ୍ଚାର ମୁଖ୍ୟ ବସ୍ତୁ ଥିଲା । 'କାଗଜରେ ଅହଂକାର ଲାଗିଲେ ତାହା ସାର୍ଟିଫିକେଟ ହୁଏ'—ଅଫିସରେ ସମସ୍ତଙ୍କ ମୁହଁରେ ଏହି ବାକ୍ୟଟି ଥିଲା ।

ସଂଧ୍ୟା ପାଞ୍ଚଟା ବାଜିବାକୁ ଯାଉଥିଲା । ତେଣୁ ସମସ୍ତେ ଘରକୁ ଫେରିବା ମୁଡ୍‌ରେ ଥିଲେ ।

ଦୋହେର ଟେବୁଲ ପାଖରେ କେହି ଜଣେ କିସ୍ତିର ଟଙ୍କା ତାକୁ ଦେଉଥିଲା । ସେ ଠିକ୍ ସମୟରେ କିସ୍ତି ଦେଇଥିବାରୁ ଦୋହେ ଖୁସ୍ ଥିଲା । ଅଉ ଗୋଟିଏ କିସ୍ତିର ବୋଝ ଗଲା ବୋଲି ଦେଲାବାଲା ବି ଖସ୍ ଥିଲା ।

କରଜ ବାବଦରେ ଆଉ ଜଣେ କହିଛି — କରଜ କରିବା ମାନେ ପର୍ବତ ଶିଖରରୁ ବଡ଼ ପଥରଟାଏ ତଳକୁ ଗଡ଼େଇ ଦବା । କରଜ ସୁଝିବା ମାନେ ସେହି ପଥରକୁ ଠେଲି ଠେଲି ପୁଣି ପର୍ବତ ଶିଖରରେ ନେଇ ଥୋଇବା ।

ସେହି ଅନୁଭୂତିରୁ ମୁଁ ବର୍ତ୍ତମାନ ଯାଉଥିଲି । ମୋର କିସ୍ତି ସରି ଆସୁଥିଲା; କିନ୍ତୁ ସଢ଼କ ସରି ନ ଥିଲା । ଆସନ୍ତା ମାସକୁ ଶେଷ କିସ୍ତି ଦେଲା ପରେ ମୁଁ ପୁଣି ଥରେ ଦୋହେ ପାଖରୁ କରଜ ନେବା ପାଇଁ ସ୍ଥିର କରିଥିଲି । ବର୍ତ୍ତମାନ ସମୟରେ ମିଳୁଥିବା ଦରମାରୁ ଘର ଚଳି ଯାଉଥିଲା ; କିନ୍ତୁ ସଢ଼କ ଓ ତାହା ସହିତ ଘର ଚଳିବା ପାଇଁ ଦୋହେଙ୍କୁ ଜିନ୍ଦାବାଦ କରିବାକୁ ପଡ଼ୁଥିଲା ।

ତେଣୁ ଅ଼ମଭଳି ଲୋକମାନେ ଦୋହେ ଜନ୍ଦାବାଦ କହି ଚାଲି ଯାଉଥିଲେ । ମୁଁ ଦୋହେଙ୍କୁ ଅନେଇଲି । ସେ ଟେବୁଲ ଉପରେ ମୁଣ୍ଡ ରଖି ଶୋଇଥିଲା । ଯେଉଁ ଲୋକ ତାକୁ କଣ୍ଠି ଟଙ୍କାଟା ଦେଇଥିଲା, ତାହା ସେମିତ ହାତରେ ଥିଲା । ଦୋହେ ଭଳି ଲୋକ ଅଫିସରେ ଶୋଇବା ଅସମ୍ଭବ, ପୁଣି ହାତରେ ଟଙ୍କା ଧରି ; ନିତାନ୍ତ ଅସମ୍ଭବ । ଏ ଲୋକଟାର ଯଦି କେବେ ହାର୍ଟଫେଲ ହୁଏ, ତାହାହେଲେ କୋରାମିନ ଇଂଜେକସନ ନ ଦେଇ ଖାଲି ତା' କାନରେ 'କଣ୍ଠି' କହିଲେ ସେ ଧଡ଼ ପଡ଼ ହୋଇ ଉଠି ବସିବ ।

ମୁଁ ତାକୁ ଡାକିଲି । କୌଣସି ଉତ୍ତର ମିଳିଲା ନାହିଁ । ସାମନ୍ତରାୟ ବାବୁ ମୋ ଡାକ ଶୁଣି ତା' ଆଡ଼କୁ ଅନେଇଲେ । ଆଉ ଡେରି ନକରି ଆମେ ସମସ୍ତେ ତା' ଟେବୁଲ ପାଖକୁ ଦଉଡ଼ି ଗଲୁ । କାନ୍ଧକୁ ଧରି ହଲେଇଲୁ । ଟେବୁଲରେ ଆଉ ଗୋଟିଏ ଟେବୁଲକୁ ଯୋଡ଼ି ତାଙ୍କୁ ଶୁଆଇଲୁ ।

କୌଣସି ଫଳ ମିଳିଲା ନାହିଁ ।

ହାତରେ କଣ୍ଠିକୁ ଧରି ଦୋହେ ଇହଲୋକରୁ ପରଲୋକକୁ ଯାଇ ସାରିଥିଲା ।

ସମସ୍ତ କାହାରି ପାଇଁ ଅପେକ୍ଷା କରେ ନାହିଁ । ଦୋହେ ଗଲାପରେ ମଧ୍ୟ ସମସ୍ତ ସେମିତି ଗଡ଼ି ଚାଲିଲା । ମଣିଷକୁ ଜର୍ଲିଜ କହିବା ନା ସହିଷ୍ଣୁ ? ଦୋହେ ଥିବାର ଯେତେ ଅଭ୍ୟସ୍ତ ଥିଲୁ , ନ ଥିବାର ମଧ୍ୟ ଅଭ୍ୟସ୍ତ ହୋଇଗଲୁ ।

ଘରି ତାରିଖରେ ମୋର ଶେଷ କଣ୍ଠି କଥା ମନେପଡ଼ିଲା । ତା' ଘରକୁ ଯାଇ ତା' ସ୍ତ୍ରୀ ହାତରେ ଶେଷ କଣ୍ଠି ସହି ଗୁଞ୍ଜିଟା ଦେବା ପାଇଁ ସ୍ଥିର କଲି । ସାଙ୍ଗରେ ମୋ ସ୍ତ୍ରୀ ମଧ୍ୟ ଯିବା ପାଇଁ ଜିଦ୍ କଲା । କାରଣ ସେ ତା' ଘର ଦେଖିବା ପାଇଁ ଓ ତା' ସୁନ୍ଦରୀ ସ୍ତ୍ରୀକୁ ଦେଖିବା ପାଇଁ ଆଗ୍ରହୀ ଥିଲା ।

ଦୋହେ ଘରକୁ ଗଲୁ । କବାଟ ଦୁଆର ମୁହଁରେ ଅଟକି ଗଲୁ । କହୁଣୀ ମାରି ମୋ ସ୍ତ୍ରୀ ମତେ ପଚାରିଲା ।

ଏ କିଏଣ ?

ମୁଁ କେମିତି ଜାଣିଲି ?

କାରଣ ମୁଁ ଗୋଟିଏ ଅତି ସୁନ୍ଦର ପାଲିସ ହୋଇଥିବା ଟିକ୍ କାଠର ଦୁଆର ସାମନାରେ ଠିଆ ହୋଇଥିଲି । କବାଟଟି ପୁରାପୁରି ଗୋଲ୍ ଉଡ୍ ଢିଜାଇନରେ ତିଆରି ହୋଇଥିଲା । ମଝିରେ ଇଟାଲିଆନ ଭଉ ଫାଇଣ୍ଡର । ଡିଙ୍ଗ ଡଙ୍ଗ ବେଲର ଶୁଭ୍ର

ସୁଖ୍ ବଟମ୍ । କବାଟରେ ଇଗ୍ଟବଗ୍ଡ, ଦ୍ରୁଦେର ଆନୋଡ଼ାଇଜଡ଼୍ ସାଇନ ବୋର୍ଡ଼ ଥିଲ ।

ମୁଁ ବେଲ୍ ଦାବିଲି । ଭିତରୁ କୁକୁର ଭୁକ ଉଠିଲା । କବାଟ ପାଖ ଝିଡ଼୍କିର ପରଦା ହଲିଲା । ପରଦା ଫାଙ୍କରୁ ଗୋଟିଏ ଧଳା ରଙ୍ଗର ପାମେରସ୍ଥନ କୁକୁରର ମୁହଁ ଦେଖାଗଲା, କବାଟ ଖୋଲିଲା ।

ଆସନ୍ତୁ । ଆମେ ଦୁହେଁ ଘରକୁ ଦେଖୁ ଥିଲୁ । ବର୍ଣ୍ଣନା କରିବି ! କିନ୍ତୁ କଅଣ, କଅଣ ବର୍ଣ୍ଣନା କରିବି ?

କାନ୍ଥ ଗୁଡ଼ିକରେ ସୁନ୍ଦର ଡିଜାଇନର ଓ୍ୱାଲ ପେପର୍ସ ଲଗା ଯାଇଥିଲା । ଭେଲ୍ ଭେଟର ପରଦା ମାନ ଝୁଲୁଥିଲା । ଫଲସ୍ ସିଲିଙ୍ଗ ହୋଇ ଥିବାରୁ ଉପର କଡ଼ି ବର୍ଗା ଦେଖା ଯାଉନଥିଲା ।

ଗୋଟିଏ କଣରେ ଟି. ଭି, ଟେପ ରେକର୍ଡ଼ର, ଦୁଇଟା ସ୍ପିକର, ବସିବାକୁ ଆଧୁନିକ ଧରଣର ନୂଆ ସୋଫା ସେଟ ।

ଏ ସବୁ ମାସକ ଭିତରେ ହୋଇଥିଲା ।

ଦୋନେ ଗଲା ପରେ ମୁଁ ଆଜି ପ୍ରଥମ ଥର ପାଇଁ ତା' ସ୍ତ୍ରୀକୁ ଭେଟୁଥିଲି । ଦୋନେ କଥା ପକେଇବାରେ କିଛି ମତଲବ ନ ଥିଲା । ଯେଉଁ କାମ ପାଇଁ ଆସିଥିଲି ସେହି କଥା କହିବାକୁ ଯାଇ ପକେଟରୁ ଟଙ୍କା କାଢ଼ିଲି, କହିଲି··· 'ମୁଁ ଆସିଥିଲି ଶେଷ କିସ୍ତି ଟା'···

ସେ ଆମ ଦୁହିଁଙ୍କୁ ହାତ ଯୋଡ଼ି ନମସ୍କାର କଲା ।

କ'ଣ ହେଲା ? ମୋ ସ୍ତ୍ରୀ ପଚାରିଲା ।

ଆଉ ଏ କିସ୍ତି ଶବ୍ଦଟା ଶୁଣିବା ପାଇଁ ମଧ୍ୟ ମୋର ଇଚ୍ଛା ନାହିଁ ।

ଏଥର କରଜ, ଧାର···ଏମିତି କିଛି ଶୁଣିଲେ ପେଟ ଘାଣ୍ଟି ହେଲା ଭଳି ଲାଗୁଛି । ଆମେ ବୋକାଙ୍କ ଭଳି ଅନେଇଲୁ ।

ଚଉଦ ବର୍ଷ ହେଲା ମୁଁ କାହାରିକୁ କିଛି କହି ନାହିଁ । ସେମିତି ସୁଯୋଗ ମଧ୍ୟ ନ ଥିଲା । ଆଜି ବି ସୁଯୋଗ ମିଳିଛି, ଏମିତି ନୁହେଁ । ତଥାପି କହୁଛି । ଯେ ଗଲା ତା' ବିଷୟରେ ମନ ଛୁଉଁ ନ ଥିବା କଥା କହିବାକୁ ଭଲ ଲାଗେ ନାହିଁ । ଅବଶ୍ୟ ସେ ଥିଲା ବେଳେ ମଧ୍ୟ ଭଲ କହିବାକୁ ମନାଥିଲା । ତେଣୁ କହୁଛି ।

ଆହାର, ନିଦ୍ରା, ଭୟ ଓ ମୈଥୁନ—ଏହି ଚାରିଟି ତତ୍ତ୍ୱର ଚାଲୁଥିବ । ଏ ଜୀବ ସୃଷ୍ଟି ଓ ଦୋନେ ଭିତରେ କୌଣସି ଫରକ ନ ଥିଲା । ଭୋକ ହେଲେ ଖାଇବ, ଶୋଇବ, ଇଚ୍ଛା ହେଲେ ମତେ ହଇରାଣ କରିବ ଓ ରଖିଥିବା ଧନ କାଲେ

ହାତରୁ ଖସିଯିବ ଏହି ଭୟରେ ସମସ୍ତଙ୍କ ଠାରୁ ଦୂରେଇ ରହିବ । ଧନ ଗଢ ଖାଲି ପଇସା ପଇସା । ଏ ଘରେ କାହାର ହାତ କେବେ ଲକ୍ଷ୍ମୀଙ୍କୁ ଛୁଇଁ ପାରିଲ ନାହିଁ । କାହାରକୁ କପେ ଚ୍ହା ଏ ଘରେ ମିଳିଲ ନାହିଁ । ଆଜ ଏ କ୍ଷଣରେ ଦୁଇଟି ପିଲ ଛଡ଼ା ମୋର କେହି ନାହାନ୍ତି । ପିଲଗୁଡ଼ିକ ବଡ଼ିଲେ, କିନ୍ତୁ ପ୍ରକୃତିର ନିୟମାନୁସାରେ । ତାଙ୍କ ମନ କିନ୍ତୁ ଅପରିପକ୍ୱ ରହିଗଲ । ମସ୍ତିଷ୍କ କେବଳ ସେହି ଧାର, କରଜ, କିସ୍ତି ଏହି ଶବ୍ଦଗୁଡ଼ିକ ଗ୍ରହଣ କଲ । ଦେହକୁ ଧଳା ପାଇଜାମା ଓ ନେଳ ସାର୍ଟ ।

ଗୁଡ଼ିଏ ସେ କଥା । ମୁଁ ଏ ସବୁ ଖୁବ୍ ଶୀଘ୍ର ଭୁଲି ଯିବା ପାଇଁ ଚାହୁଁଛି । ଆସନ୍ତୁ, ମୁଁ ଆପଣଙ୍କୁ ଘର ଦେଖାଏ । ଆମେ ଅନ୍ୟ କୌଣସି ବିଷୟରେ କଥା ହେବା ।

ଆମେ ଘେ଼ାପେଇ ଘରକୁ ଗଲୁ । ସେଠି ସମସ୍ତ ଆଧୁନିକ ଜିନିଷ ମାନ ଥିଲ । ଗ୍ୟାସ ଠାରୁ ଆରମ୍ଭ କରି ଓଭନ ପର୍ଯ୍ୟନ୍ତ । କିନ୍ତୁ ଅନ୍ୟ ବିଷୟରେ କଥା କହିବାକୁ ଯାଇ ପୁଣି ବିଷୟ ବସ୍ତୁ ସେହି କଥାରେ ଆସି ପହଞ୍ଚୁଥିଲ । ଆମ ଭଡ଼ାଟିଆ ମାନେ କହୁଥିଲେ—

ଭଡ଼ାଟିଆ ।

ଆପଣ ଜାଣିନାହାନ୍ତି । ଏ ପୁରା ବିଲଡ଼ିଂଟା ଆମର । ମାନେ ମୋ ଶ୍ୱଶୁରଙ୍କର । ବାଇସ ଜଣ ଭଡ଼ାଟିଆ ଏଠି ଅଛନ୍ତି । ଅବଶ୍ୟ ସମସ୍ତେ ଭଲ ; କିନ୍ତୁ ବେଳେ ବେଳେ କହୁଛନ୍ତି ।

କ'ଣ କହୁଛନ୍ତି ?

ମୁଁ ଏତେ ଶୀଘ୍ର ଏ ସବୁ କରିବା ତାଙ୍କୁ ପସନ୍ଦ ହେଉ ନାହିଁ । ମୁଁ ଖାଲି ଶୁଣିଲ । କିଛି କହିଲି ନାହିଁ । ମୋର ଯାହା କରିବା କଥା କଲି । ମୋର ସ୍ୱାମୀ କେବେହେଲେ ଏ ଦୁନିଆର ପରୱା କରି ନ ଥିଲେ । ମୁଁ ମଧ୍ୟ ପରୱା କରୁ ନାହିଁ । ସେଇମାନେ ମତେ କହୁଛନ୍ତି ତାଙ୍କ ଘରର ଅଧା ଜିନିଷ ଆମେ ଦେଇଥିବା କରଜରୁ ହୋଇଛି—ଘରେ ଘରେ ଗ୍ୟାସ ଜଳୁଛି—ମୁଁ କିନ୍ତୁ ଚଉଦ ବର୍ଷ କାଗଜ ଓ କାଠ ଜାଳି ରୋଷେଇ କଲି । ସେତେବେଳେ ତ କେହି କିଛି କହିଲେ ନାହିଁ । ବର୍ତ୍ତମାନ କାହିଁକି କହୁଛନ୍ତି ?

ମଣିଷର ପ୍ରବୃତ୍ତିକୁ ଔଷଧ ନାହିଁ । ଆପଣ କିଛି ଭାବନ୍ତୁ ନାହିଁ ।

ମୁଁ କିଛି ଭାବୁ ନାହିଁ, ସମସ୍ତେ କହୁଛନ୍ତି ମୁଁ ତରବରରେ ସବୁ କଲି । ମୁଁ ଜାଣିଛି ମୁଁ କଅଣ କଲି । କିନ୍ତୁ ଚଉଦ ବର୍ଷ ମନ ମାରି, ଜଳି ପୋଡ଼ି ଯେଉଁ ବନବାସ ଭୋଗିଲି ତାହା ଆଜ ସରି ଯାଇଛି ।

ଛାଡ଼ନ୍ତୁ ଆଉ ସେ ବିଷୟରେ ଚର୍ଚ୍ଚା କରି କିଛି ଲାଭ ନାହିଁ । ଘର ଦେଖୁ ଦେଖୁ ଗୋଟିଏ ଫଟୋ ପାଖରେ ମୁଁ ରହିଗଲି ।

ଦୋନ୍ଦେ ଓ ସୁଟ ବୁଟ ପିନ୍ଧି ?

କେତେ ସୁନ୍ଦର ଦେଖାଯାଉଛନ୍ତି ! ବାହାଘର ବେଳେ ବୋଧେ ପିନ୍ଧିଥିବେ ।

ନାଁ ଏହା ମଧ୍ୟ ମୁଁ ମୋ ପାଇଁ କରିଛି । ତାଙ୍କ ଫଟୋଟି ସେହି ଚିର ପରିଚିତ ଡ୍ରେସରେ ଥିଲା । ନୀଳ ସାର୍ଟ ଓ ଧଳା ପାଇଜାମା । ମୁଁ ଗୋଟାଏ ଚିତ୍ର— କରକୁ ତାଙ୍କ ସେଇଟାକୁ ସୁଟ ବୁଟରେ ପରିବର୍ତ୍ତିନ କଲି । ସେ ଜୀବିତ ଅବସ୍ଥାରେ ତାଙ୍କୁ କିଛି କହିବାର ସାହସ ମୋର ନଥିଲା । ତା'ପରେ ଦୋନ୍ଦେ ବିଷୟରେ ଆଉ କୌଣସି ଚର୍ଚ୍ଚା ହୋଇନାହିଁ । ଇରାବତୀ ଆମକୁ ଅନେକ କିଛି ଜିନିଷ ଖାଇବାକୁ ଦେଲା । ଚାହା ଦେଲା । ପିଲାମାନେ ଆମ ସହ ମିଶି ହସ ଖୁସିର ଗପ ସପ ହେଲେ । ଟେପରେକର୍ଡ଼ର ବଜେଇ ଶୁଣେଇଲେ । ଟି. ଭି. ପ୍ରୋଗ୍ରାମ ନ ଥାଇ ମଧ୍ୟ ଖୋଲି ଅନ କରି ଦେଖେଇଲେ ।

ଚଉଦ ବର୍ଷର ଦୁର୍ଭିକ୍ଷ ସରି ଯାଇଥିଲା । ମଣିଷ ତା'ର ଅସ୍ତିତ୍ୱ ଯୋଗୁଁ କେତେ ଅପ୍ରିୟ ହୋଇପାରେ ତା'ର ବିଦାରକ ଉଦାହରଣ ଆମେ ଦେଖିଥିଲୁ । ଏଥର ଜନ୍ମ ସୁଖର ବର୍ଷା ବର୍ଷିଥିଲା । ଥୁଣ୍ଟା ଗଛରେ କଅଁଳପତ୍ର ଅଙ୍କୁରିତ ହୋଇଥିଲା । ଏଥର ଆମେ ବିଦାୟ ନେଇ ବାହାରିଲୁ ।

ଇରାବତୀ ଆମକୁ ତଳ ପର୍ଯ୍ୟନ୍ତ ଛାଡ଼ିବା ପାଇଁ ଆସିଲା ବେଳେ କହିଲା— ଅତୀତକୁ ଯେତେ ଭୁଲିବା ପାଇଁ ଚେଷ୍ଟା କଲେ ମଧ୍ୟ ଭୁଲି ହୁଏନା । ଅତୀତର ପାଦ ଚିହ୍ନଗୁଡ଼ିକ ଅନୁସରଣ କରନ୍ତି ।

ଏତେ ସମୟ ପର୍ଯ୍ୟନ୍ତ ଆମେ ଲକ୍ଷ୍ୟ କରି ନ ଥିବା କଥାଟିକୁ ବୁଝି ମୁଁ ମୋ ସ୍ତ୍ରୀକୁ ଅର୍ଥପୂର୍ଣ୍ଣ ଦୃଷ୍ଟିରେ ଅନେଇଲି । ସମସ୍ତ ବିଭବରେ ସଜା ହୋଇଥିବା ସେ ଘରର ଘରଣୀଟି ମାତ୍ର ସେହି ଫିକା ନୀଳ ରଙ୍ଗର ଶାଢ଼ୀ ଓ ଧଳା ବ୍ଲାଉଜ ପିନ୍ଧି ଥିଲା ।



# ଓଟେରିକାନ

ପାଶ୍ଚାତ୍ୟ ଅନୁକରଣରେ ଚାଲୁଥିବା ତିନିତାରକା ବା ପଞ୍ଚତାରକା ବିଶିଷ୍ଟ ହୋଟେଲଗୁଡ଼ିକରେ ଗୋଟିଏ ଚାହା କପର ଦାମ୍ ଦଶ ଟଙ୍କା ହେଲେ ମଧ୍ୟ ମୁଁ ଥରେ ଥରେ ଏଭଳି ହୋଟେଲକୁ, 'ଚାହା' ପିଇବାକୁ ଯାଏ । କାରଣ ଏଠି ଚାହାର ମୂଲ୍ୟ କେବଳ ଚାହାରେ ନ ଥାଏ । ଯେପୁଣି କାଚର ପୁସିଙ୍ଗ ଡୋର୍ ପାଖରେ ଠିଆ ହୋଇଥିବା ଦରୱାନ ମତେ ଦେଖେ, ଟିକେ ମୁଣ୍ଡ ନୁଆଁଇ ଆଦରରେ ଦରୱାଜା ଖୋଲି ଦିଏ । 'ଚାହା' କପ୍‌ର ଦାମ୍ ଏଇଠୁ ଆରମ୍ଭ ହୁଏ । ଭିତରକୁ ପଶିବା ମାତ୍ରେ ଥଣ୍ଡା ପବନର ଲହରୀ ମନ୍ଥର ଧାରର ସ୍ପର୍ଶ ଭଳି ଦେହକୁ ରୋମାଞ୍ଚିତ କରେ । ସେ ଅନୁଭୂତିର ମୂଲ୍ୟ ସେଇ ଦଶଟଙ୍କାରେ । ମୋଟା ଗାଲିଚ୍ଚା ଜୋତା ଥାଇ ମଧ୍ୟ ପାଦକୁ ସଲ ସଲ କରେ । ଏ ଦାମ ତାର । ୱେଟର ଆଦରରେ ଚଉକିଟାଣି ବସିବାକୁ କହେ । ପରେ ଆର୍ଦ୍ର ସ୍ୱରରେ ପଚାରେ 'ସାହେବ୍ କ୍ୟା ହୋନା ?' ଏ ଦାମ୍ ସେ ସ୍ୱରର । ନିଜକୁ ରାଜକୁମାର ଭାବି କଳ୍ପନା ରାଇଜରେ କପେ ଚାହା ପାଇଁ ଯେଉଁ ସବୁ ସୁଖ ତୁମେ ଉପଭୋଗ କର ସେସବୁ ସୁଖ ଏଇଠି ମିଳେ । ତେଣୁ କପେ ଚାହାର ଦାମ୍ ଦବାକୁ ତୁମର ଯଦି ତାକତ୍ ଅଛି, ତାହା ହେଲେ ଚାହା ସରିବା ପର୍ଯ୍ୟନ୍ତ ସେ ସବୁ ସୁଖର ତୁମେ ମାଲିକ । ସେ ମାଲିକତ୍ୱର ବା ରାଜ ସୁଖର ମୂଲ୍ୟ ସେଇ ଦଶଟଙ୍କାରେ । ମାନେ ଦେଖିବାକୁ ଗଲେ ଏଠି ଚାହାଟା ମାଗଣାରେ ମିଳେ ।

ଏଥିପାଇଁ ମୁଁ ସେଠାକୁ ଯାଏ । ସେଠିକାର ଥଣ୍ଡାହାୱା ପିଇବାକୁ । ସେଠିଥିବା ନୀରବତାର ମଧ୍ୟ ଗୋଟିଏ ସ୍ୱର ଅଛି । ସେ ସ୍ୱର ଶୁଣିବାକୁ ଯାଏ । ସେଠାକାର ସୁଗନ୍ଧମୟ ଛନ୍ଦମୟ ପରିବେଶକୁ କ୍ଷଣକ ପାଇଁ ହେଉନା କାହିଁକି, ମୁଁ ଉପଭୋଗ କରି, ଏହି ଭାବନା ମନକୁ ପୁଲକିତ କରେ ।

ଆଜି ମଧ୍ୟ ଯାଇଥିଲି । କିନ୍ତୁ ଏମିତି ଏକ ଘଟଣା ଘଟିଲା ଯେଉଁଥିରେ ମୋ ମନ ବିରସ ହୋଇଗଲା । ମୋ ପେଟେଣ୍ଟ ଟେବୁଲରେ ମୁଁ ବସିଲି । ମୋ ପଛେ ପଛେ ଜଣେ ବ୍ୟକ୍ତି ଆସି ପହଞ୍ଚିଲେ । ତାଙ୍କ ବର୍ଣ୍ଣନା କ'ଣ କରିବି ? ଅତ୍ୟନ୍ତ କୁରୂପ ! ଅତ୍ୟନ୍ତ ମାନେ କେତେ ? ନିଗ୍ରୋଲୋକର କୁରୂପତାରେ ମଧ୍ୟ ଏକ ସୁନ୍ଦରତା ଅଛି । କିନ୍ତୁ ଏ ପ୍ରାଣୀଟା ଅତ୍ୟଧିକ ମୋଟା କଦାକାର ପେଟୁଆ ଇତ୍ୟାଦି ଇତ୍ୟାଦି । ଏଭଳି ମୋହମୟୀ ପରିବେଶ । ଯେଉଁଠି କେବଳ ସୌନ୍ଦର୍ଯ୍ୟ ପୂରି ରହିଛି ସେଠାରେ ଏଭଳି ବ୍ୟକ୍ତି ପ୍ରବେଶ କରିବାର କ'ଣ ଅଧିକାର ରଖେ ? ଏହି ପ୍ରଶ୍ନ ମୋ ମନକୁ

ଆସିଲା । ଅନ୍ତତଃ ସେ ଦିନେ ସ୍ୱିବା ଉଚିତ୍ ଏଭଳି ହୋଟେଲରେ ପ୍ରବେଶ କରିବ କି କରିବ ନାହିଁ ! କିଏ ତାକୁ ଏ ଅଧିକାର ଦେଲା ? ଆର୍ଥିକ ପରିସ୍ଥିତି ତାକୁ ଏ ଅଧିକାର ଦେଇ ଥାଇ ପାରେ !

ହୁଏ । ଏମିତି ହୁଏ । ଧନର ବଳରେ ତାଙ୍କୁ ଶୋଭା ନ ଦିଶୁଥିବା ଅନେକ କଥା ଏ ଧନୀମାନେ ଅତି ସହଜରେ କରନ୍ତି । ଧନର ବଳରେ ବଳୀୟାନ ହୋଇ ସାତ୍ତ୍ୱିକତା ଓ ସୌନ୍ଦର୍ଯ୍ୟର ଏମିତି ଅପମାନ କରନ୍ତି । ସେଇ ଦମ୍ଭବୋଧ ଏ ଲୋକକୁ ଏଠାକୁ ନେଇ ଆସିଛି । କେବଳ ଧନ ହିଁ ସବୁକିଛି କରିପାରେନା । କାରଣ ଅନେକ ଧନୀ ଚିରିଲୁଗା ପିନ୍ଧି, ନଖ କାମୁଡ଼ି ବୁଲୁଥିବାର ମୁଁ ଦେଖିଛି । ଏମାନେ ସେ ଧନର ମଧ୍ୟ ଅପମାନ କରନ୍ତି । ତେଣୁ ଧନ ଦରକାର ଓ ତା' ସହିତ ତାକୁ ଖର୍ଚ୍ଚ କରିବା ପାଇଁ ଅଭିରୁଚି ଦରକାର ।

ଅଭିରୁଚି ... ? ମାନେ ଏ କୁରୂପ ଲୋକଟା ଭଲ ଅଭିରୁଚି ରଖିଛି । ମୋର-ଭଳି ? ତା' ପ୍ରତିଥିବା ମୋର ଏ ବଗିର ଧାରଣା ପାଇଁ ମତେ ଶରମ ଲାଗିଲା । କେବଳ କୁରୂପ ବୋଲି କଅଣ ତା'ର କିଛି ସ୍ୱିବନା ନାହିଁ ? ତା'ପରେ ସେ ଠିକ୍ ମୋର ସାମନାରେ ଆସି ବସିଲା । ଏଥର ତା' ଆଡ଼କୁ ଚାହିଁବାକୁ ମୁଁ ବାଧ୍ୟ ହେଲି । ଯେଭଳି ସୁନ୍ଦର ବସ୍ତୁକୁ ମଣିଷ ବାରମ୍ବାର ଦେଖେ, ସେଭଳି ମନ ନ ଚାହୁଁଥିଲେ ମଧ୍ୟ ଅସୁନ୍ଦର ବସ୍ତୁକୁ ବାରମ୍ବାର ଦେଖିବା ପାଇଁ ପ୍ରୟାସ କରେ.। ସେଇ ସୂତ୍ରରେ ମୁଁ ପୁଣି ଥରେ ତାକୁ ଅନେଇଲି । ଏଥର ସେ ପିନ୍ଧିଥିବା ଟେରିଲିନ୍ ସାର୍ଟ ମୋ ମନକୁ ମୋହି ନେଲା । ଲୁଗା ଦୋକାନକୁ ଗଲେ ମୁଁ ଯେଉଁଭଳି କନା ପସନ୍ଦ କରିଥାନ୍ତି, ଏ କନାଟି ସେମିତି ଦାମିକା ଥିଲା ; କିନ୍ତୁ ପୁଣି ମନକୁ ଆସିଲା - ଏ ଲୋକଟା ଏ କନାର ମଧ୍ୟ ଅପମାନ କରୁଛି ?

ୱେଟର ମୋ ପାଇଁ ଚାହାନେଇ ଆସିଲା । ମୁଁ ତାକୁ ପଚାରିଲି—'ଆଜି ଏସ୍ପାର କଣ୍ଡି ଯନ୍ଗ୍ କମ୍ ଅଛି କି ?'

"— ଗୋଟାଏ ୟୁନିଟ୍ ଖରାପ୍ ଅଛି ସାର୍ !"

ୱେଟର ଗଲାପରେ ସେ ମତେ କହିଲା ।

ଭିତରକୁ ପଶିବା ମାତ୍ରେ ମତେ ବ ଫିଲ୍ ହେଲା । ଏଠି ଗରମ ହେଲା ଭଳି ଲାଗିଲା । ତାଙ୍କର ଦୃଷ୍ଟିକୁ ଏଥର ମୁଁ ମଧ୍ୟ କିଛି କହିବାକୁ ବାଧ୍ୟ ହେଲି । ମାମୁଲି କଥାବାର୍ତ୍ତା ପରେ ମୁଁ ଯେ ... ଥିଲି ଆସିଲି । କାରଣ ସେ ଲୋକଟା ପାଇଁ ଆଜିମତେ ସବୁକିଛି ଅଣ୍ଟୁତଳର ଲାଗୁଥିଲା ।

ପୁଣି କେବେ ତା' ସହ ଦେଖାହେବ ନାହିଁ ବୋଲି ଭାବିଥିଲି । କିନ୍ତୁ ଇମିତି ଦେଖା ହୋଇଗଲା । ତା' କୁତ୍ସିତ ଯୋଗୁଁ ସେ ମୋ ମନ ଭିତରେ

ରହ୍‌ଯାଇଥିଲି । କିନ୍ତୁ ସେ ମୋତେ ଚହ୍ନିପାରିଲା; ଏହା ହିଁ ଆଶ୍ଚର୍ଯ୍ୟର କଥା । ତେଣୁ ଆଡ଼େଇ ଯିବାର ପ୍ରଶ୍ନ ଉଠୁ ନ ଥିଲା ।

ମତେ ଦେଖି ସେ ହସିଲା ।

ମୁଁ ମଧ୍ୟ ହସିଲି ।

ଏଣେ କୁଆଡ଼େ ଆସିଥିଲେ—ମୁଁ ପଚାରିଲି ।

ପରଫ୍ୟୁମ ବୋତଲ କିଣିବା ପାଇଁ ବାହାରିଥିଲି । ବୁଲି ବୁଲି ଏ ଯାଏ ଆସିଲି । କେଉଁଠିହେଲେ ମିଳିଲା ନାହିଁ । ଆଉ ମିଳିବ ନାହିଁ ବୋଧେ ।

"କାହିଁକି···?"

ଗତଥର ଫରେନରୁ ମଗେଇଥିଲି । ବହୁତ କଷ୍ଟଲି । କିନ୍ତୁ ଦୁଃଖ କଷ୍ଟରେ ନାହିଁ । ଏଠି ମିଳୁ ନାହିଁ ବୋଲି ଦୁଃଖ ।

ତା' ବଦଳରେ ଅନ୍ୟ କୌଣସି ଫରଫ୍ୟୁମ ?

ନା ନା ··ବ୍ୟବହାର କରିବ ତ ସେଇ ଗୋଟାଏ କିସମର । ତାର ମଜା ଅନ୍ୟ କୌଣସିଥିରେ ନାହିଁ । ଏମିତ କଥାବାର୍ତ୍ତା ହେଉ ହେଉ ଆମେ ସେହି ହୋଟେଲ ପାଖରେ ଆସି ପହଞ୍ଚିଲୁ । କେତେବେଳେ ଭିତରକୁ ଯାଇ ଟେବୁଲ୍‌ରେ ବସିଲୁ, ଜାଣିହେଲା ନାହିଁ । ଚାହା ପିଉ ପିଉ ସେ ମୋତେ ମୋ ବ୍ୟବସାୟ କଥା ପଚାରିଲା । ମୁଁ କହିଲି । ମୁଁ ତା ବ୍ୟବସାୟ କଥା ପରଖିନ ।

ସେ କହିଲା "ମୁଁ କାର କଣେ ଓ ବିକେ । ତମେ ମୋତେ ଯେ କୌଣସି କାର ବିଷୟରେ ପଚାରିଲେ ମୁଁ କହିପାରିବ ।"

"ଖାଲି କାର କିଣ, ବିକ ! ଏଥିରେ ବିଜନେସ୍ ହୁଏ ?

କେଇ ଆଣି ଥୋଇ କାଣିଲେ ସବୁ ବ୍ୟବସାୟ କରିହୁଏ ।

ତୁମେ ନିଜେ କେଉଁ କାର ବ୍ୟବହାର କର ?

"କେବଳ ଟାକ୍ସି"

"ଆଶ୍ଚର୍ଯ୍ୟ ?"

ନଥିଙ୍ଗ ଷ୍ଟ୍ରେଞ୍ଜ ! କାର ରଖିବାରେ ମଜା ନାହିଁ । ବିକିବାରେ ଅଛି । କୌଣସି ମଡ଼େଲ ତୁମକୁ ପୂର୍ଣ୍ଣ ଅର୍ଥରେ ସୌଖ୍ୟ ଦିଏ ନାହିଁ । କିଛିନା କିଛି କେଉଁଠି କମ ଥିବ । ତେଣୁ ନିଜ ମଡ଼େଲ ଅପେକ୍ଷା ଅନ୍ୟର ମଡ଼େଲ ଭଲ ଲାଗେ । ସେଗୁଡ଼ିକ କେବଳ ନିଜର ନୁହନ୍ତି ତେଣୁ ଭଲ ଲାଗନ୍ତି । ଅମେ କାର ମାଲିକ ନୋହୁଁ । ଏହା ହିଁ ତା'ର କାଲିଟ୍ ।

"ମୋର କୌଣସି ଅଭିଜ୍ଞତା ନାହିଁ ।"

ଅଭିଜ୍ଞତାର ଆବଶ୍ୟକତା କ'ଣ ? ଯେପରି ଅନ୍ୟର ସ୍ତ୍ରୀ ଅମକୁ ଅଧିକ ଭଲଲାଗେ, ସେମିତି କାର କଥା । କିନ୍ତୁ କୌଣସି ମଡ଼େଲ ପରଫେକ୍ଟ ନ ଥାଏ ।

ମୁଁ ହସି ହସି ପଚାରିଲି ।

"ଆଉ ସୁ ମାଉଡ୍?"

"ନୋ, ନୋ ।"

ମୁଁ ତାହା ହିଁ ଭାବୁଥିଲି ।

କିନ୍ତୁ ପୁରୋହିତ ସାଜି ଅନ୍ୟର ବାହାଘର କରାଏ ନାହିଁ ।

"କିନ୍ତୁ ପୁରୋହିତ ନିଜେ ଥରେ ନିଶ୍ଚୟ ବିବାହ କରେ" ମୁଁ କହିଲି ।

ଏକ୍ ଜାକ୍ଟଲି । ସେଇ ରାଗ ସେ ଅନ୍ୟମାନଙ୍କୁ ବିବାହ କରାଇ ଶୁଝାଏ । ମୋର କିନ୍ତୁ ଅଲଗା କଥା । କାର ମୁଁ ବି କିଣିଛି । କିନ୍ତୁ ଏମିତି କାର କିଣିବି, ଲୋକେ ବାରମ୍ବାର ବୁଲି ବୁଲି ଅନେଇବେ । ମୋର ଜଣେ ବନ୍ଧୁ କହେ— ବେକ ବୁଲେଇ ହଜାର ଥର ଯେଉଁ ସ୍ତ୍ରୀକୁ ଦେଖିବାକୁ ଇଚ୍ଛା ହୁଏ ସେ ପ୍ରକୃତରେ ସୁନ୍ଦରୀ ସ୍ତ୍ରୀ । ମୁଁ ଯେଉଁ ମଡ଼େଲ କିଣିବି ସେ ଏମିତି ହୋଇଥିବ । ତା' କାରଟି କେତେ ସୁନ୍ଦର ହୋଇଥିବ—ମୁଁ କେବଳ କଳ୍ପନା କଲି । ସବୁ ଗାଡ଼ି-ଗୁଡ଼ିକୁ ପଛରେ ପକେଇ ସାମ୍ରାଜ୍ଞୀ ଭଳି ରାସ୍ତାରେ ଆଗେଇ ଯାଉଥିବ । ଚାଲିବା ଭୁଲି ବେକ ବୁଲେଇ ଲୋକେ ତାକୁ ଦେଖୁଥିବେ ।

ମନରେ ପୁଣି ସେହି ବିଚାରଧାରା ପ୍ରବେଶ କଲା । ସେଭଳି କାରରେ ଏ କୁରୂପ ଶୋଭା ପାଇବ ତ ? ଲୋକମାନେ ମଧ୍ୟ କହିବେ ମଡ଼େଲ ଟେଶଫିକ । କିନ୍ତୁ ତା' ମାଲିକ ?

ଥରେ କେବେ ମୋ ଗ୍ୟାରେଜକୁ ଆସନ୍ତୁ···ଯଷ୍ଟ ଥାଜ୍ ଏ ଫନ୍ । ଗୋଟିଏ ଭିନ୍ନ ଦୁନିଆରେ ପ୍ରବେଶ କଲାଭଳି ଲାଗିବ ।

ଆଡ଼େ୍ରସ ଦିଅନ୍ତୁ । ମୁଁ କହିଲି ।

ପକେଟରୁ ଗୋଟିଏ ଭିଜିଟିଙ୍ଗ୍ କାର୍ଡ଼ ବାହାର କରି ସେ ମୋତେ ଦେଲା । ମୁଁ ତାକୁ ଦେଖି ପଚାରିଲି—

ମନମୋହନ କିଏ ?

"ମୁଁ"

ବିଜନେସ ପାଇଁ ଓ ମତେ ଭଲଲାଗେ ବୋଲି ମୁଁ ମୋ ନାଁ ମନମୋହନ ରଖିଛି ।

ଦିନେ ସନ୍ଧ୍ୟା ସମୟ ଗୋଟିଏ ଆଲିଶାନ୍ କାର୍‌ରେ ଯାଉଥିବାବେଳେ ମନମୋହନ ସହ ମୋର ଦେଖା ହେଲା । ରାସ୍ତାରେ ଯାଉଥିବା ପ୍ରତ୍ୟେକ ଲୋକ କାର୍‌ଟିକୁ ଚାହିଁ ଚାହିଁ ଅନାଉଥିଲେ । ମନମୋହନ ମୋ ସହିତ କଥା ହେଉଥିଲା । ତେଣୁ ମୋତେ ମଧ୍ୟ ଚାହୁଁଥିଲେ ।

"କିଣିଲେ"—?...ମୁଁ ପଚାରିଲି !

ନା ଏମିତି ଟ୍ରାଏଲ ପାଇଁ ଆଣିଛୁ । ଭଲ ଲାଗିଲେ ରଖିବି । ନହେଲେ ଫେରାଇ- ଦେବି । ଯିବେ ?

କୁଆଡ଼େ ?

" ଫ୍ଲାଟ ଗୋଟିଏ କିଣିଛୁ । ଗୁଡ଼ାଏ ଫ୍ଲାଟ ଦେଖିଲି । କିନ୍ତୁ ଯେଉଁଟା ଦେଖି ଲାଗିଲା, ରହିବି ତ ଏମିତି ଫ୍ଲାଟରେ, କିଣିନେଲି । ଦେଖିବାକୁ ଯିବେ ?

ମନମୋହନର କଥା ସତ୍ତ୍ୱା, ପର୍ଯ୍ୟନ୍ତ ଅସଂଖ୍ୟ ବିଚାରଧାରା ମୋ ମନକୁ ଆସିଲା । ଅଧିକାଂଶ ମନକୁ ନ ପାଇଲା ଭଳି । ତଥାପି ମୁଁ ମୋ ମନକୁ ରୋକି ପାରୁ ନ ଥିଲି । ଏ କୁରୂପ ଲୋକଟାର ଭାଗ୍ୟ ବଡ଼ ତେଜସ୍ୱାନ ଥିଲା । ତା' ଘର ମଧ୍ୟ ସେମିତି ହୋଇଥିବ । ଆଲିଶାନ । ଦେଖିଲେ ମନଟା ଖାଲି ବିକଳ ହେବ । କାହିଁକି ସେ ଫାନ୍ଦରେ ପଡ଼ିବା ?

ଯାଇଥିଲେ ବହୁତ ଖୁସି ହୋଇଥାନ୍ତି । କିନ୍ତୁ ଆଜି ମୁଁ ବହୁତ ବ୍ୟସ୍ତ ଅଛି ।

ଡକନଟ ମାଟର—ନେକ୍‌ସଟ ଟାଇମ । ସେ ଗାଡ଼ି ଚାଲୁକଲା ।

ମନମୋହନ କଥା ଭାବି ଭାବି ସେ ମୁଣ୍ଡ ବନ୍ଧୁ ଥିଲା । ଏମିତି କାହିଁକି ହେଉଛି ମୁଁ ଜାଣିପାରୁ ନଥିଲି । ତା' କୁରୂପତାକୁ ମୁଁ ଏତେ ଇମ୍ପୋଟାନ୍‌ସ କାହିଁକି ଦେଉଛି , ମୁଁ ଅନେକ ଥର ମନକୁ ପଚାରିଛି, କିନ୍ତୁ ଉତ୍ତର ପାଇନାହିଁ । ତେଣୁ ଏକମାତ୍ର ଉପାୟ ତାକୁ ଭୁଲିଯିବାକୁ ହେବ । ତା' ସହ ବନ୍ଧୁତା ନ ରଖିବା ହିଁ । ଶ୍ରେୟସ୍କର । କିନ୍ତୁ ତାହା ମଧ୍ୟ ହେଲା ନାହିଁ ।

ମନମୋହନ ତା' ସ୍ତ୍ରୀ ସହ ପରିଚୟ କରାଇ ଦେଲା । ତାକୁ ଦେଖି ମୁଁ ମୋ ବିଚାରଧାରା ବଦଳାଇବାକୁ ବାଧ୍ୟ ହେଲି । ବେକ ବୁଲାଇ ହଜାରଥର ଯେଉଁ ସ୍ତ୍ରୀକୁ ଦେଖିବାକୁ ଇଚ୍ଛା ହୁଏ ସେ ପ୍ରକୃତରେ ସୁନ୍ଦର ସ୍ତ୍ରୀ । ମନମୋହନର ବନ୍ଧୁ କହିଥିବା କଥାଟି ମୋର ମନେ ପଡ଼ିଗଲା । ଏଠି କିନ୍ତୁ ହଜାରଥର ବେକ ବୁଲାଇ ଅନେଇବା ପ୍ରଶ୍ନ ଉଠୁ ନ ଥିଲା । ଥରେ ଅନେଇଲେ ଆଉ କୁଆଡ଼େ ଅନେଇବାକୁ ଇଚ୍ଛା ହବନି ।

ଏଥର ମୁଁ ମନମୋହନର ସ୍ତ୍ରୀ ପାଇଁ ତା' ଘରକୁ ଯିବା ପାଇଁ ସ୍ଥିର କଲି ।

ମନମୋହନର ବୟସ ବିଷୟରେ ନ କହିଲେ ଚଳିବ । କିନ୍ତୁ ତା' ସ୍ତ୍ରୀ ମାଧୁରୀ —ସେ କିପରି ମନମୋହନକୁ ପସନ୍ଦ କଲା । ଏ ଅପ୍ରସ୍ତୁତ ସେ ଲୋକ ସହିତ ଘର ସଂସାର କରିବ ? ତା' ସ୍ପର୍ଶରେ ପୁଲକିତ ହେବ ? ତା' କଥାରେ ନିଜକୁ ହଜେଇ ଦେବ ? ତା' ସହ ବାସର ମାଧୁର୍ଯ୍ୟ ଉପଭୋଗ କରିବ ?

କେମିତି ? କେମିତି ?

ଇକ୍ ଇଶ୍ ଏଭଳି ପସିବିଲି ?

ମାଧୁରୀ କ'ଣ ? ମତେ ବୁଝିବାକୁ ହବ । ମନମୋହନର ବିଭବ ଦେଖି ମୁଁ ସହି ପାରିବି ନାହିଁ । ତାକୁ ମିଳୁଥିବା ସୁନ୍ଦର ଚିଜର ଉପଭୋଗ ଦେଖି ମୋ ମନ ବିହ୍ୱଳିତ ହେବ । ତଥାପି ମୁଁ ଯିବି ।

ପ୍ରଥମ ଦିନକୁଥର ଭେଟି ପରେ ସବୁ କିଛି ଭିନ୍ନ ମୋଡ଼ ନେଲା ଭଳି ଲାଗିଲା । ମୁଁ ଜାଣିପାରିଲି, ମାଧୁରୀ ମୋ ଆଡ଼କୁ ଚାହୁଁଛି । ମୋ ଗତିପଥକୁ, ମୋତେ ସଙ୍କେତ କରିବାକୁ ପଡ଼ିବ । ଟେବୁଲର ତାଳରେ ମୁଁ ଜଡ଼ଭରତ ଲାଗୁଥିଲି । ସେଠୁ ଆଖିର ଭାଷା ଆରମ୍ଭ ହେଲା । ଶବ୍ଦଗୁଡ଼ିକ ଅଧା ରହିଗଲେ । ଯେଉଁଥିରୁ ପୁରା ଅର୍ଥ ବାହାରୁଥିଲା । ସାଙ୍କେତିକ ଭାଷାର ଜାଲବୁଣା ଆରମ୍ଭ ହେଲା । ସମ୍ବନ୍ଧ ଘନିଷ୍ଠ ହେଉଥିଲା । ସେଥିରୁ ଅନେକ କଥା ମୁଁ ଜାଣିପାରିଲି ।

•ଥରେ ଦେଖିଲି ମନମୋହନ ଲୁଗାପଟା ସଫା କରୁଛି । ମାଧୁରୀ, ଗାଲେରୀରେ ଆରାମ ଚଉକିରେ ବସି ଗୀତ ଶୁଣୁଥିଲା । ଆଉ ଥରେ ପଚାରିଲି ମୋହନ କାହିଁ ।

ବାଥରୁମ୍‌ରେ ବାସନ ମାଜୁଛି । ଅତି ସହଜରେ ସେ କହିଲା । ମୋ ଚେହେରାରେ ଆଶ୍ଚର୍ଯ୍ୟ ଭାବ ଦେଖି ସେ କହିଲା - ଆଜି ଗୃହପରିଚାରିକା କାମକୁ ଆସି ନାହିଁ ।

ମାଧୁରୀକୁ ମୁଁ ଯଦି ବିବାହ କରିଥାନ୍ତି ତାହାହେଲେ ତାକୁ ଏମିତି ସାମ୍ରାଜ୍ଞୀ ଭଳି ରଖିଥାନ୍ତି । କିନ୍ତୁ ଆଜି କେଉଁଠି କିଛି ଭୁଲ୍ ହେଲା ଭଳି ଲାଗୁଥିଲା ।

ତା'ପରେ ବି ଏମିତି ମୁଁ ଯେବେ ମନମୋହନ ଘରେ ନ ଥିବି, ଭାବ ଯାଉଛି ଦେଖେଁ ସେ କିଛିନା କିଛି ନିଜଘରର କାମ କରୁଥିବ । ମାଧୁରୀ ଆରାମରେ ଗଦିରେ ଗଡ଼ୁଥିବ ନଚେତ ନଭେଲ ପଢ଼ୁଥିବ । 'ମୋ ଅଜାଣତରେ ମୋ ଚେହେରା ନାରାଜ ହୋଇଯାଏ । ତଥାପି ମୁଁ ଯାଉଥିଲି । ସେଉକିକଥା ଜାଣିବା ପାଇଁ ମୁଁ ସେଠାକୁ ଯାଇଥିଲି ଯେ ବିଷୟରେ ମାଧୁରୀର ମୋର କଥା ହୋଇ ପାରୁ ନ

ଥିଲ । ଯେଉଁ ଅର୍ଥରେ ଆମ ଭିତରେ ଥିବା ଦୂରତ୍ୱ କମ୍ ହବା କଥା ସେ ଅର୍ଥରେ ହେଉ ନ ଥିଲ । ସେ ଭଲ ସନ୍ଧ ବି ମିଳୁ ନ ଥିଲ ।

ଆଜି କିନ୍ତୁ ସେ ଏକୁଟିଆ ଥିଲ । ସଦ୍ୟସ୍ନାତ ହୋଇ ପିଠିରେ ମୁକୁଳା କେଶ ସମ୍ଭାର ନେଇ ମୋ ଆଗରେ ଠିଆ ହେଲ । କବାଟ ଖୋଲି ପିଠି ବୁଲେଇ ପଙ୍ଖା ବୁଲି କଲି । ତା'ର କେଶ ସମ୍ଭାରରୁ ଉଠୁଥିବା ମାଦକ ଓ ସୁଗନ୍ଧ ମହକ ମତେ ବିଭୋର କରିଦେଲ । ଏ ସୁଗନ୍ଧକୁ ମୁଁ ଆଜି ମନ ଦେଇ ଆଘ୍ରାଣ କରିପାରିବି କି ?

ଗରମ ପାଣିରେ ସଦ୍ୟସ୍ନାତ ଗୋରି ଦେହଟି ଈଷତ୍ ଲାଲ ଦେଖାଯାଉଥିବ । ଯେତେ ଯେପରି କ୍ଷୀରରେ ସିନ୍ଦୂର ମିଶାଯାଇଛି । ମନମୋହନ ପ୍ରତି ମୋର ଈର୍ଷା ହେଲ । ଏ ମନମୋହନ ମାନେ କେତକୀକୁ ବେଢ଼ିରହିଥିବା ଏକ ଭୁଜଙ୍ଗ ।

ବସୁନା ! ଏମିତ ଅନେକ ରହିଥିବ ନା କ'ଣ ?

ହିପୋଟାଇଜ କରୁଥିବା ଯାଦୁକର କେବେ ବେହୋସ ମଣିଷକୁ ଏ ପ୍ରଶ୍ନ ପଚାରେ ନାହିଁ ।

ସେ ହସିଲ ।

ମନମୋହନ ଚାହିଁ ?

ଗହମ ନେଇ ଚକିକୁ ଯାଇଛନ୍ତି ।

ମୁଁ ବହୁତ କଂଟ୍ରୋଲ କରିବାକୁ ଚେଷ୍ଟା କଲେ ମଧ୍ୟ ମୋ ଚେହେରାର ଭାବ ବଦଳିଗଲ । ସେ କହିଲ—"ତମକୁ ଅନେକ କଥା ଭଲ ଲାଗୁନାହିଁ, ମୁଁ ଜାଣିଛି ।"

କେଉଁ କଥା ?

ମୁଁ ରଙ୍ଗାକୁ ଏପରି ବ୍ୟବହାର ଦେଖେଇବା ।

କିଏ ରଙ୍ଗା ?

ରଙ୍ଗା, ମାନେ ମନମୋହନ । ତା'ର ପ୍ରକୃତ ନାମ ରଙ୍ଗା । ତା' ରୂପକୁ ମାନୁଥିବା ନାଁ । ତେଣୁ ବଦଳେଇ ନୂଆ ନା ରଖିଛି ମନମୋହନ···ହୁଁ !

ତା'ର ସେ ମନମୋହନ କହିବାର ଭଙ୍ଗୀ ହିଁ ସବୁ କହୁ କହୁଥିଲ । ତା' ସଂସାରରେ ମନମୋହନର ସ୍ଥାନ କେଉଁଠି ତା' ସ୍ୱରରୁ ହିଁ ଜଣାପଡ଼ୁଥିଲ । ମୁଁ ଜାଣେନା । କାହିଁକ, କିନ୍ତୁ ମୋ ଭିତରେ ଥିବା ପୁରୁଷତ୍ୱ ଜାଗି ଉଠିଲ । ପ୍ରକୃତିଦତ୍ତ ସ୍ୱାମୀତ୍ୱର ଭାବନା ଫୁଟି ଉଠିଲ । ମନମୋହାନ ପ୍ରତି ମୋର ଦୟା ଆସିଲ । ସେତିକବେଳେ ସେ ମତେ ପଚାରିଲ—

ଉଙ୍ଗା ଭଳି କୁରୂପ ବ୍ୟକ୍ତି ସହ ତମକୁ ଦୋସ୍ତି କରିବାକୁ ଇଚ୍ଛା ହେଲା କିପରି ?

ସେ ପ୍ରଶ୍ନର ଦାହକତା ମତେ ଜାଳିଦେଲା । ମାଧୁରୀର ସୌନ୍ଦର୍ଯ୍ୟ ସେ ପ୍ରଶ୍ନରେ ମଳିନ ପଡ଼ିଗଲା । ମୁଁ ଅଧା କଡ଼ା ଶବ୍ଦରେ କିଛି କହିବା ପାଇଁ ଭାବୁଥିଲି । ମାଧୁରୀ ଉଙ୍ଗାକୁ କାହିଁକି ବିବାହ କଲା, ଜାଣିବାର ଆଗ୍ରହ ମୋ ଶବ୍ଦ ଫେରାଇ ନେଲା । ମୁଁ ବିଦ୍ରୂପମୁଖରିତ ହସି ମାଧୁରୀକୁ ଓଲଟା ପଚାରିଲି—ମୁଁ ତ ଦୋସ୍ତି କଲି । ତୁମେ ତ ବାହା ହୋଇଛ, କାହିଁକି ?

କହିବି ? ?'

କୁହ !

ଉଙ୍ଗା ଭଳି ମଣିଷକୁ ଏ ଦୁନିଆରେ ବଞ୍ଚିବାର କି ଅଧିକାର ଅଛି ? ଏ ସୁନ୍ଦର ଧରାରେ ବଞ୍ଚିବାର ଥିଲେ ତୁମେ ବି ସେତିକି ସୁନ୍ଦର ହେବା ଦରକାର, ନହେଲେ ଗୋଲାମହୋଇ ବଞ୍ଚିବାକୁ ହେବ । ଏଇଥିପାଇଁ ମୁଁ ଉଙ୍ଗାକୁ ବାହାହେଲି । ଏଥର ଉଙ୍ଗାଭଳି ଗୋଟିଏ କୁରୂପ, କଦାକାର ଲୋକକୁ ମୁଁ ଗୋଲାମ ଭଳି ରଖିପାରିବି । ଉଙ୍ଗାଭଳି ମଣିଷ ସୌନ୍ଦର୍ଯ୍ୟର ପୂଜା କରିବା ହିଁ ଦରକାର । ଧନରେ ବିଳାସ୍ଥାନ ହୋଇ ଏମାନେ ତାଙ୍କୁ ଶୋଭା ଦେଉ ନ ଥିବା ଅନେକ କଥା କରନ୍ତି । ବସ୍ତୁତ ଏ ସମସ୍ତ ବିଚାରଧାରା ମୋର ଥିଲା ଓ କେବଳ ମୋରି ବୋଲି ମୁଁ ଭାବୁଥିଲି । ତେଣୁ ଏହାର ଦାହକତା ମୁଁ ଅନୁଭବ କରି ପାରିନଥିଲି । କିନ୍ତୁ ମୋ ମନ ମସ୍ତିଷ୍କକୁ ଘୋଡ଼ାଇ ରଖିଥିବା ବ୍ୟକ୍ତିର ସେହି ବିଚାରଧାରା ମତେ ଶୀତଳ କରିଦେଲା । ମୁଁ ସ୍ଥାଣୁ ପାଲଟି ଗଲି । ସରିଗଲି ।

କୌଣସି ସମ୍ବେଦନା ମତେ ସ୍ପର୍ଶ କରିପାରୁନଥିଲା । ସେହି କ୍ଷଣରେ ମାଧୁରୀ ମୋ ପାଖକୁ ଆସିଲା । ମୋ ପାଖରେ ବସିଲା । ସେତେବେଳକୁ ମୋର ପ୍ରତିକାର ଶକ୍ତି ନଷ୍ଟ ହୋଇଯାଇଥିଲା । ମନର ସମସ୍ତ ବିଚାରକୁ ବିକାର ଜାବୁଡ଼ି ଧରିଥିଲା । ସମଗ୍ର ଭାବନାରେ ଅଭିଳାଷ ମୁଖ୍ୟ ହୋଇଥିଲା । ମୋ କାନ୍ଧରେ ମୁଣ୍ଡରଖି ମାଧୁରୀ କହିଲା—ଏ ଦୁନିଆରେ ଯଦି ବଞ୍ଚିରହିବାର ଅଧିକାର ଅଛି ତାହା କେବଳ ତୁମର । ନହେଲେ ମୋର ! ଏ ରାଜପ୍ରାସାଦରେ ତମଭଳି ରାଜାର ରାଣୀ ହୋଇ ଘର ସଂସାର କରିବି, ତମ ସାନ୍ନିଧରେ ନିଜକୁ ହଜେଇଦେବି, ସବୁ କିଛି ତମକୁ ଅର୍ପଣ କରିବି, କେବଳ ତମକୁ । କାରଣ ସୌନ୍ଦର୍ଯ୍ୟର ପୂଜା କେବଳ ସୌନ୍ଦର୍ଯ୍ୟ ହିଁ କରିପାରେ ।

ତା' କେଶରାଶିରୁ ଉଠୁଥିବା ସୁଗନ୍ଧ ମୋ ହୃଦୟକୁ ଭେଦିକରିଗଲା । ମୁଁ ସେ ସୁଗନ୍ଧକୁ ମନଖୋଲି ଆଘ୍ରାଣ କଲି । ଦୁଗ୍‌ଧ ସ୍ନାତ ଶରୀର ମୋ ଶରୀରକୁ ସ୍ପର୍ଶ

କରୁଥିଲା । ସେ ରେଶମୀ କେଶ ଓ ଶରୀର ସ୍ପର୍ଶର ପ୍ରକୃତ ଅର୍ଥ ମୁଁ ଆଜି ଜାଣି ପାରୁଥିଲି ।

ମୁଁ ଡର ଡର ତାକୁ ଆଲିଙ୍ଗନ କରିବାକୁ ଚେଷ୍ଟାକଲି । ଭାବୁଥିଲି ଏ ଗୋଲାପ ପାଖୁଡ଼ାଟି ମୋ ବାହୁ ପାଶକୁ ସମ୍ଭାଳି ପାରିବ ତ ? ନିଃଶ୍ୱାସରେ ମଉଳି-ଯିବା ଭଳି ଏ ରୂପ, ଏ କୋମଳ ଶରୀର, ଏ କଢ଼ିକୁ ମୁଁ ସେତିକି କୋମଳ ହୋଇ ଉପଭୋଗ କରି ପାରିବି ତ ? କଳ୍ପନା ବିଳାସରେ ଏ ଶରୀର ଉପରେ ଅନେକ ଥର ମୁଁ କ୍ଷୁଧିତ ବ୍ୟାଘ୍ରଭଳି ଲମ୍ଫପ୍ରଦାନ କରିଛି । କିନ୍ତୁ ବର୍ତ୍ତମାନ ଭାବୁଥିଲି କପର ଶୀତଳ ଜ୍ୟୋତ୍ସ୍ନା ହୋଇ ଏ ଶରୀରକୁ ଆଲିଙ୍ଗନ କରନ୍ତି । ନ' ହେଲେ ହେନାର ସୁଗନ୍ଧ ବୋହି ନେଉଥିବା ପବନ ହୋଇ ଏ ଶରୀରକୁ ବେଢ଼ି ଯାନ୍ତି । ସେତିକି ଶୀତଳ, ସେତିକି କୋମଳ । ସେତିକି ତରଳ । ·

ହଠାତ୍ ମାଧୁରୀ ମତେ ଜୋର୍‌ରେ ଠେଲିଦେଲି । ଉଠି ଠିଆ ହେଲି । ମୋ ଅଡ଼କୁ ରାଗରେ ଚାହିଁ ପାଟିକଲି । ତମେ ଯାଅ, ପୁଣି କେବେ ନ ଆସିନା ପାଇଁ···ଯାଅ । ମୁଁ ସ୍ତମ୍ଭୀଭୂତ ହୋଇ ଅନେଇ ରହିଲି । ମୋ ଉପରେ ବଜ୍ରପାତ ହୋଇଥିଲା । ମାଧୁରୀ · ।

ମୁଁ ମନମୋହନର ସ୍ତ୍ରୀ । ତୁମକୁ କହିବ ମୁଁ କାହିଁକି···ତାକୁ ବାହାହେଲି ।

ନାଁ, କହିବା ଦରକାର ନାହିଁ ।

ଶୁଣି ସାରି ଯାଅ···। ସେଦିନ ମୁଁ ଚଳନ୍ତା ଲୋକାଲ୍ ଟ୍ରେନରୁ ଗଳି ପଡ଼ି-ଥାନ୍ତି । ମୋର ଏ ଶରୀର ଖଣ୍ଡ ଖଣ୍ଡ ହୋଇ ଥାନ୍ତା । ମୋ ଆଖ ପାଖରେ ଅନେକ ପୁରୁଷ ଠିଆ ହୋଇଥିଲେ ; କିନ୍ତୁ ସମସ୍ତେ ତମଭଳି କାପୁରୁ । ସେହି ସମୟରେ ମନମୋହନ ମତେ ସାଉଁଟି ଆଣିଲା । ତା' ବାହୁର ବଳିଷ୍ଠ ବନ୍ଧନ ମୋ କଟି ଦେଶକୁ ଆବଦ୍ଧ କଲା । ପର ମୁହୂର୍ତ୍ତରେ ମୁଁ ଟ୍ରେନ ଭିତରେ ଥିଲି । ଗୋଟିଏ ଠେକୁଆ ଛୁଆଟାକୁ ଆମେ ଯେତେ ସହଜରେ ଟେକିପାରୁ ସେତିକି ସହଜରେ ମନମୋହନ ମତେ ସାଉଁଟି ଆଣିଲା । ଡରରେ ମୋର ଅବସ୍ଥା ମୃତ ପ୍ରାୟ । କିନ୍ତୁ ସେ ଅର୍ଦ୍ଧ ମୂର୍ଚ୍ଛିତ ଅବସ୍ଥାରେ ଗୋଟିଏ ମାତ୍ର ସମ୍ବେଦନା ମୋ ଅଣୁ ରେଣୁରେ ବ୍ୟାପ୍ତ ହୋଇ ରହିଥିଲା । ତାହା ହେଉଛି ମନମୋହନର ବଳିଷ୍ଠ ସ୍ପର୍ଶ ।

ତମେ ଏଥର ବୁଝି ପାରୁଥିବ ମୁଁ କ'ଣ କହିବାକୁ ଚାହୁଁଛି । ତମେ ଏଥର ଯାଇପାର । ଯାଅ···।

ଅପମାନ, ଅବହେଳାରେ ମୋ ମନ-ପୋଡ଼ିଯାଉଥିଲା । ମୁଁ ବାହାରକୁ ବାହାରି ଆସିଲି । ଆଜି ମୋ ପୌରୁଷତ୍ୱର ମାନଭଙ୍ଗ ହୋଇଥିଲା । ଏ ଅପମାନ ଦେଖିବାକୁ ସେଠି କେହି ନଥିଲେ । ତଥାପି ମୁଁ ଜଳୁଥିଲି । ମାଧୁରୀ କଅଣ କହିବାକୁ ଚାହୁଁ ଥିଲା—ମୁଁ ବେଶ୍ ବୁଝି ପାରିଥିଲି । ମୁଁ ଲିଫ୍ଟ ପାଇଁ ଅପେକ୍ଷା ନକରି ପାହାଚ ଓହ୍ଲେଇବା ଆରମ୍ଭ କଲି । ସାମନାରେ ଦୁଇ ହାତରେ ଦୁଇଟା ଅଟାଭର୍ତ୍ତି ମୁଣିଧରି ମନମୋହନ ଠିଆ ହୋଇଥିଲା । ମୋ ମୁଣ୍ଡକୁ ପିତ୍ତ ଚଢ଼ି ଯାଇଥିଲା । ସାମନାରେ କୁରୂପ ରଙ୍ଗା ଠିଆ ହୋଇଥିଲା ; ପ୍ରଥମ ଥର ପାଇଁ ମୁଁ ତାର ବଳିଷ୍ଠ ଶରୀରକୁ ଅନେଇଲି । ମୋଭଳି ଦଶଜଣଙ୍କୁ ସେ ଏକାଥରକେ ଅଟାମୁଣିଭଳି ଟେକି ପାରିବ । ସେହି ମୁହୂର୍ତ୍ତରେ ସେ ମତେ ଖୁବ ସୁନ୍ଦର ଦେଖାଗଲା । ତାହା ହିଁ ମୋ ରାଗକୁ ପଞ୍ଚମକୁ ଉଠେଇଦେଲା । ଏ ରାଗ କାହିଁକି ? ମାଧୁରୀ କରିଥିବା ମାନଭଙ୍ଗର ନା ଏକ ଦୁର୍ବଳ ଲୋକର ସବଳ ଲୋକ ପ୍ରତି ଥିବା ରାଗ ?

ମୁଁ ଉତ୍ତର ପାଉନଥିଲି । ତେଣୁ ଗର୍ଜି ଉଠିଲି—

'ଆବେ ରଙ୍ଗା ! '

ସେ ମୁଣିଗୁଡ଼ିକ ତଳେ ରଖିଲା ।

'କଅଣ ? '

'ଶଳା, ଗୋଟିଏ ସ୍ତ୍ରୀର ଗୋଲାମ ହୋଇ ବସିଛୁ ? ତତେ ସରମ ମାଡ଼ୁନାହିଁ ।

ତା' କଳା ଦେହରେ ପିନ୍ଧିଥିବା ଟେରଲିନ ସାର୍ଟରେ ଅଟାସବୁ ଲାଗି ଯାଇଥିଲା । ସେ ଥରେ ମୋ ଆଡ଼କୁ ଚାହିଁ ଅଟାକୁ ତା' ଦେହରୁ ଝାଡ଼ିଦେଲା । ତା' ହାତର ମାଂସପେଶୀଗୁଡ଼ିକ ଫୁଲି ଫୁଲି ଉଠୁଥିଲେ ।

ସେ ଖାଲି ହସିଲା ।

ନର୍କଜଙ୍କ ଭଳି ହସୁଛୁ କଅଣ ?

ଦେଖ, ଏଭଳି ଦାମିକା ଟେରଲିନ ସାର୍ଟ ପିନ୍ଧିବାକୁ ହେଲେ ତା' ପାଇଁ ଡ୍ରାଇ କ୍ଲିନିଂର ଖର୍ଚ୍ଚ କରିବାକୁ ପଡ଼େ । ନହେଲେ ଘରେ ତା'ନଯା ରଖିବାକୁ ପଡ଼େ । ନିଜକୁ ଧୋଇବାକୁ ପଡ଼େ । କିନ୍ତୁ ଟେରଲିନ୍‌ର ସବୁଠୁ ବଡ଼ ଗୁଣ ହେଉଛି ଆମେ ତାକୁ ଯେମିତି ଚାହୁଁ ସେମିତି ବ୍ୟବହାର କରିପାରୁ । ସେତିକିବେଳେ ତା' ମୂଲ୍ୟ ଅମୂଲ ହୋଇଯାଏ ।

ବୁଝିଲୁ ?

ମୁଁ ଅନେଇ ରହିଲି । ସେ ଅର୍ଥପୂର୍ଣ୍ଣ ହସ ହସିଲା । ଅଟାମୁଣିଗୁଡ଼ିକ ଉଠେଇ ମୋ ଆଡ଼କୁ ନଚାହିଁ ଆଗେଇ ଗଲା । ମୁଁ କିନ୍ତୁ ବଲ ବଲ ହୋଇ ତା' ବଳିଷ୍ଠ ଶରୀରକୁ ଅନେଇ ରହିଥିଲି···।



# ଦୂରତା

ଠିକ୍ ମାସକ ପରେ ଅଧ୍ୟାପକ ଚନ୍ଦ୍ରଚୂଡ଼ ପୁଣି ଥରେ ସେହି ଗାଁକୁ ଯାଉଥିଲେ ; କିନ୍ତୁ ମାସକ ପୂର୍ବର ପରିସ୍ଥିତି ଓ ବର୍ତ୍ତମାନର ପରିସ୍ଥିତିରେ ଆକାଶ ପାତାଳ ଫରକ ଥିଲା । ମାସକ ପୂର୍ବରୁ ସେ ଏ ଗାଁକୁ ଆସିଥିଲେ ମାଷ୍ଟର ସଦାନନ୍ଦଙ୍କ ବାରମ୍ବାର ବିନତି ପୂର୍ଣ୍ଣ ଅନୁରୋଧକୁ ରକ୍ଷା କରିବା ପାଇଁ । ମାଷ୍ଟରଙ୍କ ଚିଠି ପରେ ଚିଠିରେ ଅତି ନମ୍ରଭାଷା ଓ ଆକୁଳତାକୁ ସେ ଏଡ଼ି ପାରିଲେ ନାହିଁ । ବାସ୍ତବିକ୍ ନିଜ ସହର ଛାଡ଼ି କୌଣସି ବାହାର ଗାଁକୁ ନ ଯିବା ପାଇଁ ଚନ୍ଦ୍ରଚୂଡ଼ ନିୟମ କରିଥିଲେ । ଏହା ଜାଣି ମଧ୍ୟ ସେ ଅନେକ ଚିଠି ପାଉଥିଲେ । ତାଙ୍କର ଏ ସ୍ୱଭାବ ସମସ୍ତେ ଜାଣିଥିଲେ ବି ବାରମ୍ବାର ତାଙ୍କୁ ନିମନ୍ତ୍ରଣ କରୁଥିଲେ । ଏହାର ପ୍ରଧାନ କାରଣ ହେଲା ଚନ୍ଦ୍ରଚୂଡ଼ଙ୍କ ବିଦ୍ୱତ୍ତା, ତାଙ୍କ ବ୍ୟକ୍ତିତ୍ୱ ଓ ସାହିତ୍ୟରେ ପ୍ରତିପାଦିତ ଶ୍ରେଷ୍ଠତ୍ୱ । ଅନେକ ସେଥିପାଇଁ ତାଙ୍କୁ ଯେପରି ଭକ୍ତି କରୁଥିଲେ ସେହିପରି ଇର୍ଷା ମଧ୍ୟ କରୁଥିଲେ । ଯେଉଁଠି ପୁରୁଷମାନେ ତାଙ୍କ ମଧୁର ବାଣୀରେ ନିଜକୁ ହଜେଇ ଦିଅନ୍ତି, ସେଠି ନାରୀମାନଙ୍କ କଥା ନ କହିବା ହିଁ ଭଲ ।

ନାରୀମାନଙ୍କ କଥା ?

ସାଧାରଣତଃ ନାରୀମାନଙ୍କର ଯେଉଁ କଥା ଥାଏ ଚନ୍ଦ୍ରଚୂଡ଼ ସେଥିରୁ ବାଦ ନ ଥିଲେ । ନାରୀମାନେ ତାଙ୍କ ପାଇଁ ସବୁ କିଛି ଅର୍ପଣ କରିବାକୁ ରାଜି ଥିଲେ । ଚନ୍ଦ୍ରଚୂଡ଼ ମଧ୍ୟ ତାଙ୍କ ଆଶା ମେଣ୍ଟାଇବା ପାଇଁ ତତ୍ପର ଥିଲେ । ଏ ବାବଦରେ ତାଙ୍କର ସେମିତି ଖ୍ୟାତି ମଧ୍ୟ ଥିଲା । କିନ୍ତୁ ତାଙ୍କର ବିଦ୍ୱତ୍ତା ଓ ସାମାଜିକ କାର୍ଯ୍ୟର ଖ୍ୟାତିରେ ଏ ସବୁ ମଳିନ ପଡ଼ି ଯାଉଥିଲା । ତାଙ୍କ ଦର୍ଶନରେ ପ୍ରତ୍ୟକ୍ଷ ସରସ୍ୱତୀଙ୍କ ଦର୍ଶନର ପୁଣ୍ୟ ଲାଭ ହେଲା ଭଳି ଲୋକମାନେ ଭାବୁଥିଲେ । ତେଣୁ ତାଙ୍କ ଭକ୍ତମାନଙ୍କର ସଂଖ୍ୟା ବଢ଼ୁଥିଲା । ଚନ୍ଦ୍ରଚୂଡ଼ଙ୍କର ଏହି ସ୍ତ୍ରୀ ସୌଖ୍ୟ ବିଷୟରେ ତିଳେମାତ୍ର ଦୁଃଖ ନଥିଲା । ସେ ଅତି ଗୌରବରେ କହୁଥିଲେ, "ମୋ ଜ୍ଞାନ ଓ ବୁଦ୍ଧି ଯେପରି ମୋର ବିଭବ । ସେମିତି ସ୍ତ୍ରୀମାନଙ୍କର ମୋ ଗୃହପଟେ ପଡ଼ୁଥିବା ପ୍ରେମ ମଧ୍ୟ ମୋ ବିଭବ । ମୁଁ ନିଜେ କାହା ପଛରେ ଗୋଡ଼ାଇ ଯାଏନାହିଁ । ମୋର ସମୟ ମଧ୍ୟ ନାହିଁ । କିନ୍ତୁ କେହି ଯଦି ମୋ ସମ୍ମୁଖରେ ଠିଆହେଲା, ତା' ହେଲେ ପିଠି ଦେଖେଇ ଗଲାଭଳି ଅରସିକ ମଧ୍ୟ ମୁଁ ନୁହେଁ ।"

କେହି କେହି ହିତ ଚିନ୍ତକ ତାଙ୍କୁ କହନ୍ତି "ତୁମର ଏକଥା କ'ଣ ଲୋକ-ମାନଙ୍କ ପର୍ଯ୍ୟନ୍ତ ଯାଏ ? ଯାଏ କେବଳ ଅପକୀର୍ତ୍ତି !"

ଚନ୍ଦ୍ରଚୂଡ଼ଙ୍କ ପାଖରେ ଏହାର ମଧ ଜବାବ ଥିଲା । ସେ କହୁଥିଲେ "ଲୋକମାନେ କେବଳ ମତେ କାହିଁକି ଦୋଷୀ ବୋଲି ଭାବନ୍ତି । ମୁଁ ଜଣେ ସ୍ତ୍ରୀ ଲମ୍ପଟ ବୋଲି ମୋର ଖ୍ୟାତି ଅଛି, ତେଣୁ ସ୍ତ୍ରୀ ଲୋକମାନେ ମୋ ପାଖରୁ ଦଶହାତ ଦୂରରେ ରହିବା କଥା । କିନ୍ତୁ ସେମିତି ହୁଏ ନାହିଁ । ମୋ ସଙ୍ଗଲାଭ ପାଇଁ ସେମାନେ ସର୍ବୁବେଳେ ତତ୍ପର । ମୋଠୁଁ ଦ'ପଦ ଶୁଣି ଗର୍ବରେ ଫୁଲି ଉଠନ୍ତି । ଯେଉଁ ସମାଜ ମୋ ବିରୁଦ୍ଧରେ ପ୍ରଚାର କରୁଛି ସେହି ସମାଜରୁ କ୍ଷଣିକ ସୁଖ ପାଇଁ ମୁଁ ସ୍ତ୍ରୀମାନଙ୍କୁ ପାଉଛି । ତେଣୁ ଏ ସମାଜ କଥା ମତେ କିଛି ନାହିଁ ।"

ଚନ୍ଦ୍ରଚୂଡ଼ଙ୍କ ଏହି କଥାଗୁଡ଼ିକ ଏତେ ତର୍କସିଦ୍ଧ ଓ କଟୁସତ୍ୟ ଯେ କହିଲବାଲାଙ୍କ ମୁହଁ ଗୁଏଁ ଗୁଏଁ ବନ୍ଦ ହୋଇ ଯାଉଥିଲା ।

ଚନ୍ଦ୍ରଚୂଡ଼ଙ୍କ ଏହି ହେଲା ଜୀବନ । ଏ ସବୁ ବ୍ୟାପାର ସମ୍ଭାଳିଲା ବେଳକୁ ବାହାର ନିମନ୍ତ୍ରଣ ରକ୍ଷା କରିବା ପାଇଁ ତାଙ୍କ ପାଖରେ ସମୟ ନ ଥିଲା । ତଥାପି ନିମନ୍ତ୍ରଣ ବର୍ଷୁଥିଲା । ଲୋକମାନେ ତାଙ୍କୁ ବାରମ୍ବାର ଡାକୁଥିଲେ, ବାରମ୍ବାର ନିରାଶ ହେଉଥିଲେ ।

କିନ୍ତୁ ପ୍ରତ୍ୟେକ ନିୟମ ପାଇଁ ବ୍ୟତିକ୍ରମ ରହିଛି । ନ ହେଲେ ଆଉ ଯାହା ହେଉନା କାହିଁକି, ମାଷ୍ଟରଙ୍କ ନିମନ୍ତ୍ରଣକୁ ଚନ୍ଦ୍ରଚୂଡ଼ ନାହିଁ କରିପାରିଲେ ନାହିଁ । ମାଷ୍ଟରଙ୍କ ଚିଠିର ହସ୍ତଲିପି ଦେଖି ପ୍ରଥମେ ସେ ସ୍ତମ୍ଭିତ ହେଲେ । ପରେ ଚିଠିର ଭାଷା ପଢ଼ି ତାଙ୍କୁ ଆଶ୍ଚର୍ଯ୍ୟ ଲାଗିଲା । ସେଥିରେ ଥିବା ଅନୁରୋଧର ବ୍ୟାକୁଳ ସ୍ୱର ତାଙ୍କୁ ଅସ୍ଥିର କଲା । ତଥାପି ପ୍ରଥମ ଦୁଇ ଚାରିଟା ଚିଠିକୁ ସେ ଖାତିର କଲେ ନାହିଁ । ଚିଠି ସେମିତି ଆସୁଥିଲା । ଧିରେ ଧିରେ ତାଙ୍କ ମତ ପରିବର୍ତ୍ତିନ ହେଲା । ଶେଷରେ "ପହଞ୍ଚିବି"ର ଚିଠି ଲେଖିଲେ !

ଏଭଳି ପରିସ୍ଥିତିରେ ମାସକ ତଳେ ସେ ଆସିଥିଲେ । କିନ୍ତୁ ଆଜ କୌଣସି ନିମନ୍ତ୍ରଣ ନ ଥାଇ ସେ ସେହି ଗାଁକୁ ଯାଉଥିଲେ । ବର୍ତ୍ତମାନର ଯିବା ଓ ସେ ସମୟର ଯିବା ଭିତରେ ଆକାଶ ପାତାଳ ଫରକ୍ ଥିଲା । ସେତେବେଳେ ସେ ଏ ଗାଁରେ ପ୍ରବେଶ କରିଥିଲେ ଜଣେ ସମ୍ରାଟ ଭଳି । ସେ ଗ୍ରେଟିଆ ଗାଁଟି ତାଙ୍କୁ ବିପୁଳ ସ୍ୱାଗତ ଜଣେଇଥିଲା । ସରସ୍ୱତୀଙ୍କର ଏ ମହାନ ଉପାସକର ସେବାରେ ପୁରା ଗାଁ ଲାଗି ପଡ଼ିଥିଲା । ମାଷ୍ଟରଙ୍କ କଥା କହିଲେ ନ ସରେ । ଚନ୍ଦ୍ରଚୂଡ଼ଙ୍କ ଆଗମନ ତାଙ୍କ ଜୀବନରେ ଭାଗ୍ୟୋଦୟର ସମୟ ହୋଇଥିଲା । ଏହି ଖୁସିରେ ସେ ସମସ୍ତ କାର୍ଯ୍ୟ କରୁଥିଲେ । ସମ୍ମିଳନୀରେ ଚନ୍ଦ୍ରଚୂଡ଼ଙ୍କ ଅତ୍ୟନ୍ତ ମଧୁର, ରସାଳ ଓ ଆବେଗପୂର୍ଣ୍ଣ ଭାଷଣ ଶୁଣି ମାଷ୍ଟର ବାରମ୍ବାର ତାଙ୍କ ଆଖି ପୋଛୁଥିଲେ । ଏ ମହାନ ବିଦ୍ୱାନ ବ୍ୟକ୍ତି କେବଳ ଚିଠି ପାଇ ଏଠାକୁ ଆସିଲେ । ତାଙ୍କ ସଙ୍ଗସୁଖର ଲାଳସା ପାଇଁ ତାଙ୍କୁ ଏତେ କଷ୍ଟଦେଲି ଏହି ଚିନ୍ତାରେ ମାଷ୍ଟର ମ୍ରିୟମାଣ ହୋଇ ପଡ଼ିଲେ ।

ଆଜ କିନ୍ତୁ କାହାରକୁ ନ ଜଣେଇ, ଚୁପ୍‌ଚାପ୍ ଏକୁଟିଆ ଚନ୍ଦ୍ରଚୂଡ଼ ଏ ଗାଁରେ ପ୍ରବେଶ କରୁଥିଲେ । ଗତ ମାସଟାକ ସେ ଯେଉଁ ଯନ୍ତ୍ରଣାରେ ଛଟପଟ ହୋଇଥିଲେ ତା'ର ତୁଳନା ନାହିଁ । ଭୋକ ନ ଥାଇ ଖାଉଥିଲେ । ଶୋଉଥିଲେ କିନ୍ତୁ ଆଖିପତା ପଡ଼ୁ ନ ଥିଲା । କୌଣସି କାମରେ ତାଙ୍କ ମନ ଲାଗୁ ନ ଥିଲା । ବନ୍ଧୁମାନେ ଆସୁଥିଲେ, ଯାଉଥିଲେ, ଗପସପ ହେଉଥିଲା କିନ୍ତୁ ରଙ୍ଗହୀନ । ଥଟ୍ଟା ମଜ୍ଜା କଥା ହେଉଥିଲା କିନ୍ତୁ ରସହୀନ । ପେଟେଣ୍ଟ ସ୍ତ୍ରୀମାନଙ୍କ ସହ ହସଖେଳ ହେଉଥିଲା କିନ୍ତୁ ସେଥିରେ ଉତ୍କଣ୍ଠା ନ ଥିଲା ।

ଏ ସବୁ କାହିଁକି ହୋଇଥିଲା ।?

ମାଷ୍ଟରଙ୍କ ଗାଁ ହିଁ ଏହାର କାରଣ । ମାସକ ତଳର ସେ ଦୁଇଟି ଦିନ ଚନ୍ଦ୍ରଚୂଡ଼ଙ୍କ ଅତୀତକୁ ପୁଣି ଥରେ ନୂତନ ବସ୍ତୁରଧ୍ୟାସରେ ଆଗେଇ ନେଇଥିଲା । କାହିଁକି ? କାହାପାଇଁ ଏ ସବୁ ହେଲା ?

ଚଂନ୍ଦ୍ରଚୂଡ଼ ସବୁ କିଛି ବୁଝି ପାରୁଥିଲେ ।

ହେନାର ସୁଗନ୍ଧ ପଲଙ୍କରେ ଶୋଇ ରହି ଆମେ ଉପଭୋଗ କରିପାରୁ । କିନ୍ତୁ ତୁଳସୀ ବୃନ୍ଦାବନରେ ରହୁଥାଏ । ତା' ଆଗରେ ଆମକୁ ଠିଆ ହେବାକୁ ପଡ଼େ । ଏ ସଙ୍କେତରେ ଚନ୍ଦ୍ରଚୂଡ଼ କଳା ବୋଲାଦେଲେ । ତାଙ୍କ ମନ ତାଙ୍କୁ ଏହି କଥା କହୁଥିଲା ।

ପୂଜା ଘର ଭିତରେ ଆମେ ଯୋତା ପିନ୍ଧି ବୁଲିପାରୁ; କିନ୍ତୁ ଠାକୁର ଘର ଭିତରେ ନୁହେଁ । ସେମିତି ଆମ ମନ ଭିତରେ ଥିବା ଠାକୁର ଘରେ ଆମେ ଯୋତା ପିନ୍ଧି ପଶିପାରୁ ନାହିଁ । ଚନ୍ଦ୍ରଚୂଡ଼ କିନ୍ତୁ ସେଠି ମଧ ଯୋତା ପିନ୍ଧି ପଶିଗଲେ । କେବେ ? ଯେତେବେଳେ ଜ୍ୟୋତିକୁ ସେ ପ୍ରଥମେ ସ୍ପର୍ଶ କଲେ—ଓଠ ଉପରେ ଓଠ ରଖିଲେ, ସେତେବେଳେ । ଦୁଇଟି ମନ ଯେତେବେଳେ ଦୁଇଟି ମନ ହୋଇ ରହିଲା ନାହିଁ । ଦୁଇଟି ଦେହ ଯେତେବେଳେ ଏକାକାର ହୋଇଗଲେ, ସେତେବେଳେ— ଠିକ୍ ମାସକ ତଳେ ଏହା ଘଟିଥିଲା ।

ଯେତେବେଳେ ଏ ସବୁ ହେଲା ; ଚନ୍ଦ୍ରଚୂଡ଼ଙ୍କୁ ତାହା ଜିଣିଜିଣିଆ କଥା ଭଳି ଲାଗିଥିଲା । ଟିକେ ଗର୍ବ ମଧ ଅନୁଭବ କରିଥିଲେ । କାରଣ ଜଣେ ଭୋକିଲାକୁ ସେ ଷିଷ୍ଟସୁସ୍ୱାଦୁ ଭୁଷ୍ଟ ଭୋଜନ ଦେଇ ପାରିଛନ୍ତି । ଜଣେ ତୃଷାର୍ତ୍ତର ତୃଷା ମେଣ୍ଟେଇ ପାରିଛନ୍ତି ।

ଜ୍ୟୋତିର ମୁହଁରେ ତୃପ୍ତିର ଆଭାକୁ ପିଇ ସେ ସହରକୁ ଫେରିଥିଲେ ।

କିନ୍ତୁ ସହରକୁ ଫେରିବା ପରେ ମୋ ନିଜକୁ ଦୋଷୀ ବୋଲି ଭାବିଲେ । ଯେତେବେଳେ ପୁଣିଥରେ ସେହି ସବୁ ସୌଖ୍ୟର ଅନୁଭୂତିରୁ ଯିବାକୁ ପଡ଼ିଲା

ସେତେବେଳେ ଦୁର୍ବଳ ପଡ଼ିଗଲେ । ବାହୁର ବନ୍ଧନ ଢ଼ିଲା ପଡ଼ିଗଲା । ତୃପ୍ତିର ସଙ୍କେତ ପୂର୍ବରୁ କାମବାସନା ମରିଗଲା । ଜୀବନଟା ଅଲଣା ହୋଇଗଲା ।

ଚନ୍ଦ୍ରଚୂଡ଼ ଭାବିଲେ ଯେଉଁ ଖେଳ ସେ ଅନ୍ୟଠି ଖେଳୁଥିଲେ ଏଠି ସେହି ଖେଳ ଖେଳି ମସ୍ତବଡ଼ ଭୁଲ କଲେ । ତାଙ୍କୁ ତାଙ୍କ ବଦ୍‌ବସ୍ତି ମଳିନ ପଡ଼ିଗଲା ଭଳି ଲାଗିଲା । କେବଳ ସ୍ତ୍ରୀତ୍ୱର ଅପମାନ ନୁହେଁ, ପୌରୁଷ ମଧ୍ୟ ପରାଭୂତ ହୋଇଥିଲା । ଲଜ୍ଜିନାଶ୍ରିଦ ମିଳନ ।

ଏ ଯନ୍ତ୍ରଣାର ଉପଶମ ପାଇଁ ଏକମାତ୍ର ଔଷଧ ଅପରାଧ ପାଇଁ ଦଣ୍ଡ ଦରକାର । ଦଣ୍ଡ ମାଷ୍ଟର ଦେବା ଦରକାର । ତା'ହେଲେ ଏ ଦାହ କମିବ । ଶରୀରରେ ଲହରପ ଫୁଟୁଛି । ମାଷ୍ଟରଙ୍କ କଣ୍ଠ, ବାକ୍‌ବାଣ, ନ ହେଲେ ଘୃଣାର କଟାକ୍ଷ ଏହାକୁ ଶାନ୍ତ କରି ପାରିବ । ସେହି ଆଶାରେ ସେ ଆଜି ଏ ଗାଁକୁ ଆସିଥିଲେ । ନିଜକୁ ଦଣ୍ଡ ଦେବାପାଇଁ ।

ମାଷ୍ଟର ଏ ସମୟରେ ଘରେ ନ ଥିବେ । ଜ୍ୟୋତି ଦୁଆର ଖୋଲିବ । ଅଣ୍ଟାରୁ କାନି ଖୋଲି ମୁଣ୍ଡରେ ଓଢ଼ଣା ଦେଇ ତଳକୁ ମୁହଁ ପୋତି ପଚାରିବ — —

ଆପଣ ? ଏ ସମୟରେ ?

ଏ ଦୁଇଟି ପ୍ରଶ୍ନରେ ଯେତିକି ଆଶ୍ଚର୍ଯ୍ୟ ଥିବ, ସେତିକି ଆନନ୍ଦ ।

ମାସକ ପୂର୍ବରୁ ଏହି ଦୁଇଟି ପ୍ରଶ୍ନରେ ଜ୍ୟୋତି ତାଙ୍କର ସ୍ୱାଗତ କରିଥିଲା ।

ଆପଣ ? ଏ ସମୟରେ ?

ହଠାତ୍ ମାଷ୍ଟରଙ୍କୁ କରୁଣୀ କାମରେ ଭାଲୁକା ଯିବାକୁ ପଡ଼ିଲା । ପୂର୍ବଦିନ ସମ୍ଭ ଲମାରେ ଚନ୍ଦ୍ରଚୂଡ଼ଙ୍କ ମହାନୀୟତା ଓ ବଦ୍‌ବସ୍ତି ସମସ୍ତେ ଦେଖିଥିଲେ । ମାଷ୍ଟରଙ୍କ ଅନୁରୋଧ ରକ୍ଷାକରି ଚନ୍ଦ୍ରଚୂଡ଼ ଗୋଟିଏ ଦିନ ରହିଗଲେ । ଚନ୍ଦ୍ରଚୂଡ଼ ଭାବୁଥିଲେ—"ସତରେ କ'ଣ ମାଷ୍ଟରଙ୍କ ଅନୁରୋଧ ଯୋଗୁଁ ସେ ରହିଗଲେ । ନା, ସେ ରହିଗଲେ ଜ୍ୟୋତିର ଆଖିରେ ପ୍ରଦୀପ୍ତ ଦୁଇଟି "ଜ୍ୟୋତି" ପାଇଁ । କୌଣସି କଥା ନ କହି ମଧ୍ୟ ଜ୍ୟୋତି ଯେମିତି ତାଙ୍କୁ ବାରମ୍ବାର ଅନୁରୋଧ କରୁ ଥିଲା, ରହିଯାଅ, ରହିଯାଅ ।

ତୁମେ ଆସିଲ ଏ ଘର ପୂରି ଉଠିଲା । ତୁମେ ଆସିଲ ଏ ଘର ହସିବାକୁ ଶିଖିଲା । ତୁମେ ଆସିଲ ଏ ଘର ଜାଣିଲା ମୋ ହାତରେ ଅନ୍ନପୂର୍ଣ୍ଣା ଅଛନ୍ତି । ତୁମ ସ୍ୱର ଶୁଣି ଏ ଘରର କାନ୍ଥଗୁଡ଼ିକ ଜାଣିପାରିଲେ, ସ୍ୱରର ମଧ୍ୟ ଗୋଟିଏ ଭାଷା ଅଛି । ଲିପିବା ପରେ ମୁଁ ଭଲ ଦେଖାଯାଏ, ଏ କଥା ଏ ଘରର ଭୂମି ଜାଣିପାରିଲା ।

ଲିପା ହୋଇଥିବା ଭୂମିରେ ପଡ଼ିଥିବା ଚଟା ମଧ୍ୟ ଜାଣିପାରିଲି ଯେ ସେ ଖୁବ୍ ସୁନ୍ଦର ଡଣେ । ଏ ଘରର ବାସନଗୁଡ଼ିକ ଜାଣିଯାଉଲେ, ତାଙ୍କୁ ଆଇନା ଭଳି ସ୍ୱଚ୍ଛ ରଖାଯାଇଛି । କାରଣ ତୁମର ପ୍ରତିବିମ୍ବ ସେଥିରେ ପ୍ରତିଫଳିତ ହେଲା । ଚନ୍ଦ୍ରଚୂଡ଼ ଏ ଘର ଆଜି ବସିବାର ସାର୍ଥକତା ବୁଝିପାରିଲି; ତେଣୁ ତୁମେ ରହିଯାଅ । ମୋ ସ୍ୱାମୀ ତୁମକୁ ସିଧାସଳଖ ଅନୁରୋଧ କରି ରହିବା ପାଇଁ କହିପାରନ୍ତି । ମୁଁ କିନ୍ତୁ ଆଖିର ଭାଷାରେ—କହୁଛି । ମୋର ପ୍ରତ୍ୟେକ କୃତ ତୁମକୁ ସେହି କଥା କହିବ । ମୌନର ଯେଉଁ ଭାଷା ଅଛି, ସେହି ଭାଷାରେ ଅନୁରୋଧ କରୁଛି ରହିଯାଅ ।

ଚନ୍ଦ୍ରଚୂଡ଼ ରହିଗଲେ । ମାଷ୍ଟର ଦିନଯାକ ହାତବାନ୍ଧି ତାଙ୍କ ସେବାରେ ରହିଥିଲେ, କିନ୍ତୁ ସେଦିନ ତାଲୁକାରୁ ଖବର ପାଇ ମାଷ୍ଟରବାହାରିଲେ । ହଜାରଥର ଚନ୍ଦ୍ରଚୂଡ଼ଙ୍କୁ କ୍ଷମା ମାଗି ବାହାରିଲେ । ପଛେ ପଛେ ଚନ୍ଦ୍ରଚୂଡ଼ ମଧ୍ୟ ବାହାରିଲେ । ବସ୍‌ଷ୍ଟାଣ୍ଡରୁ ମାଷ୍ଟରଙ୍କ ଗାଡ଼ି ଛାଡ଼ିଲା ଦଶମିନଟ୍ ପରେ, ଚନ୍ଦ୍ରଚୂଡ଼ଙ୍କ ଗାଡ଼ି ବାହାରିବା କଥା କିନ୍ତୁ ଯାନ୍ତ୍ରିକ ତ୍ରୁଟି ଯୋଗୁ ଗାଡ଼ି ଛାଡ଼ିଲା ନାହିଁ । ଚନ୍ଦ୍ରଚୂଡ଼ ଫେରି ଆସିଲେ । ଜ୍ୟୋତି ଦୁଆର ଖୋଲି ପଚାରିଲା ।

ଆପଣ ? ଏ ସମୟରେ ?

ଫେରିଯିବ ! ଚନ୍ଦ୍ରଚୂଡ଼ ପଚାରିଲେ ।

ନା, ନା, ଜ୍ୟୋତି ଏତେ ତରବରରେ କହିଲା ଯେ ଚନ୍ଦ୍ରଚୂଡ଼ ନ ହସି ରହି ପାରିଲେ ନାହିଁ । ତା'ଆଡ଼କୁ ଅନେଇ ରହିଲେ । ତାଙ୍କୁ ଚାହିଁ ରହିଥିବା ଦେଖି ଜ୍ୟୋତି ସରମରେ ତଳକୁ ମୁହଁ ପୋତିଲା । ସେ ସମୟରେ ତା' ମୁଖର ଭାବ, ରଙ୍ଗଛଟା ଦେଖି ଚନ୍ଦ୍ରଚୂଡ଼ ଭାବିଲେ ଆଜି ପର୍ଯ୍ୟନ୍ତ ଦୁଇଶହରୁ ଅଧିକ ଗଳ୍ପ, ଅନେକ ଉପନ୍ୟାସ ଲେଖିଲି, କିନ୍ତୁ ଏ ଭାବଗୁଡ଼ିକ ଥରେ ହେଲେ ଲେଖି ପାରିନି । ଆଖିର ସେ ଅଧିର ଭାବ, ଓଠକୁ ଚାପି କଥା କହିବାର ଭଙ୍ଗୀ, ସ୍ତ୍ରୀ ସୁଲଭ ଲଜ୍ୟା, ଶାଳିନତା, ମୁଗ୍ଧତା ଆଜି ପର୍ଯ୍ୟନ୍ତର ସମସ୍ତ ସାହିତ୍ୟ ଯେମିତି ବୃଥା ହୋଇଗଲା । ସ୍ତ୍ରୀତ୍ୱର ଏ ରଙ୍ଗ ଆଜି ପର୍ଯ୍ୟନ୍ତ ଜୀବନରେ କେବେହେଲେ ଦେଖି ନ ଥିଲି । ଅନେକ ନାରୀମାନଙ୍କ ବାହୁପାଶରେ ଆବଦ୍ଧ ହୋଇ ମଧ୍ୟ ଅସ୍ପର୍ଶିତ ରହିଗଲି । ଅନେକ ଓଠର ରସରେ ଭିଜି ମଧ୍ୟ ଏ ଓଠଗୁଡ଼ିକ ଶୁଷ୍କ ରହିଗଲେ । ଶରୀରରେ ଉଠିଥିବା ରୋମାଞ୍ଚ ଅପ୍ରାକୃତିକ ଥିଲା । ପ୍ରକୃତ ସ୍ତ୍ରୀ ଆଜି ପର୍ଯ୍ୟନ୍ତ କେବେହେଲେ ଦେଖି ନଥିଲି । ଏ ଯେ ଠିଆ ହୋଇଛି ସେହି ହେଉଛି ପ୍ରକୃତ ସ୍ତ୍ରୀ ।

ଚନ୍ଦ୍ରଚୂଡ଼ ସେମିତି ଠିଆ ହୋଇଥିଲେ । ଦୁହିଁଙ୍କର ସାମାଧି ଲାଗିଥିଲା । ହଠାତ୍ ଜ୍ୟୋତି 'ଭବନା ସାଇକରୁ ଫେରି ଆସିଲା, ଆସନ୍ତୁ ଭିତରକୁ ଆସନ୍ତୁ' କହି ଘର ଭିତରକୁ ଗଲା । 'କାହିଁକି ଫେରିଲେ ? କଅଣ ଅସୁବିଧା ହେଲା ?' ଆଦି ଶୁଷ୍କ

ପ୍ରଶ୍ନ ପଗ୍ଚରିବାରେ ତାର ଇଚ୍ଛା ନ ଥିଲା । ଦୁହେଁ ମୌନ ରହି ଚାଲି ପ୍ରଚାଲି ହେଉଥିଲେ । ତଥାପି ପରସ୍ପର ସହ କଥା ହେଉଥିଲେ । ସେମାନେ ଜାଣିକି, ସୁପ୍ତ ଘର ମଧ୍ୟ ତାଙ୍କ ସହ କଥା କହୁଥିଲା ।

ମୌନରେ ଖାଇବା ସରିଲା । ପୂର୍ବ ଦିନର ପଲଙ୍କରେ ଚନ୍ଦ୍ରଚୂଡ଼ ଆଉଜି ବସିଲେ । କିଛି ସମୟ ପରେ ଜ୍ୟୋତି ଆସିଲା । ଘରେ ଆଲୁଅ ଜଳୁ ନ ଥିଲା । କିନ୍ତୁ ଝିଙ୍କି ବାଟେ ପଡ଼ୁଥିବା ଜ୍ୟୋତ୍ସ୍ନାର ଆଲୋକରେ ଘର ଆଲୋକିତ ହୋଇଥିଲା ।

—ଦୁଇଦିନ କାମ କରି ତୁମେ ଥକିଗଲ ।

—ଏଭଳି ଥକିବାରେ ବି ସାର୍ଥକତା ଅଛି ।

—ମତେ ନିରୁତ୍ତର କରିଦେଲ ।

—କମା ନୁହଁ · ଆପଣ ଏତେ ମହାନ୍ ··

—ତୁହ, କୃପାକର—ଏ ମହାନତାର ଭାଷା ମତେ ଭଲ ନାହିଁ । ଏହି ମହାନତା ଥରେ ଥରେ ଅଭିଶାପ ଭଳି ଲାଗେ । ମଣିଷମାନେ ମୋ ପାଖରୁ ଦୂରେଇ ଯାନ୍ତି । ମତେ ପାଖକୁ ଆସିବାକୁ ଡରଆନ୍ତି ନାହିଁ । ମନ ମରିଗଲା ଭଳି ଲାଗେ । ଲାଗେ, କିଏ ଜଣେ ପାଖରେ ବସନ୍ତା, ସୁଖ ଦୁଃଖର ଗପ ସପ କରନ୍ତା; ଯେଉଁଥିରେ ଏ ପାଣ୍ଡିତ୍ୟ ନ ଥିବ, ବାଙ୍ଗ୍ମସ୍ତ ନ ଥିବ, ମୋ ମହାନତା ନ ଥିବ, ଉଚ୍ଚ ନୀଚର ବନ୍ଧନ ନଥିବ, ଆଭିଜାତ୍ୟର ଚାଙ୍କୁଣୀ ନ ଥିବ । ନା, କିଛି ହେବନି, ଏ ଜୀବନ ଏମିତି ନିରର୍ଥକ ହୋଇଯିବ । କେହି ପାଖରେ ବସି କିଛି କହିବେନି···କହିବା ଦୂରରେ ଥାଉ, ଖାଲି ପାଖରେ ବସିଲେ ମଧ୍ୟ ଜୀବନଟା ସାର୍ଥକ ହେଲା ଭଳି ଲାଗିବ ।

ଜ୍ୟୋତି ଚୁପ୍ ହୋଇ ବସିଲା ।

—ତୁମେ ଚୁପ୍ ହୋଇ ବସିଛ ଯେ ?

—ମୁଁ ! ନା ଚୁପ୍ ନାହିଁ । ସତ କହିବ ?

—କୁହ—

—ଆପଣ ବର୍ତ୍ତମାନ ଯାହା ସବୁ କହିଲେ, ସେ ସବୁ ମୁଁ କହିଲି । ଶବ୍ଦ-ଗୁଡ଼ିକର ମାଲିକ ଆପଣ । କିନ୍ତୁ ଭାବନା ଆମ ଦୁହିଁଙ୍କର । ମୁଁ ତ କିଛି ପାଠଶାଠ ପଢ଼ିନାହିଁ । ମାଷ୍ଟର ତ ବହୁତ ପଢ଼ିଛନ୍ତି । ଆପଣ ମାଷ୍ଟରଙ୍କ ଅପେକ୍ଷା ଶତଗୁଣରେ ଅଧିକ ପଢ଼ିଛନ୍ତି । ମୁଁ ଯଦି ପଢ଼ିଥାନ୍ତି, ତା ହେଲେ ଏମିତି କିଛି କହିଥାନ୍ତି । ନିଜ ଜ୍ଞାନକୁ ଭୁଲି, ବନ୍ଦିବସ୍ତ୍ରର ଶାଳକୁ ବାହାର ଦୁନିଆରେ ରଖି ମତେ ଯଦି କେହି ଏମିତି ଆପଣାର କରିବା ପାଇଁ ଚାହେଁ, ସେଥିରେ ମୋର ସମ୍ମତି ଥିଲା ଓ ଅଛି ମଧ୍ୟ ।

କୌଣସି ଏକ ଭାବନାର ଆବେଗରେ ଜ୍ୟୋତି ଏ ସବୁ କହିଗଲା । 'ହଠାତ୍ ଏସବୁ କଅଣ କହିଗଲି' ଭାବି କାତର ହୋଇଗଲା । କିନ୍ତୁ ପରିସ୍ଥିତି ହାତ ମୁଠାରୁ ଖସି ଯାଉଥିଲା । କଦାଚିତ ଏ ପରିସ୍ଥିତିରେ ମଧ୍ୟ କିଛି ଘଟି ନ ଥାନ୍ତା । କିନ୍ତୁ ଏ ଖେଳରେ ଧୁରନ୍ଧର ଚନ୍ଦ୍ରଚୂଡ଼ ସେହି ଝିଅକୁ ଧରି ଆଗେଇ ଗଲେ, ଅଗ୍ରଭାଗର ତାଳରେ ଆଗେଇ ଗଲେ ।

ଭୂମିକମ୍ପର ହାବୁଡ଼ରେ ପଡ଼ିଥିବା ଅଟ୍ଟାଳିକାର ଶେଷ ପରିଣତି ଧରାଶାୟୀ ହେବା ଛଡ଼ା ଆଉ କଅଣ ହୋଇପାରେ ? ଅବହେଳିତ, ମାୟା-ମମତା ଓ ପ୍ରେମର ଅଭାବରେ ଜର୍ଜରିତ ଜ୍ୟୋତି ସ୍ନେହ ସ୍ୱରର ଗୋଟିଏ ଫୁଙ୍କରେ ଲିଭିଗଲା । ଚନ୍ଦ୍ରଚୂଡ଼ଙ୍କ ବଳିଷ୍ଠ ବନ୍ଧନରେ ବାନ୍ଧି ହୋଇଗଲା । ଦୁଇଟି ମନ ଶୀତଳ ଜ୍ୟୋତ୍ସ୍ନାକୁ ସାକ୍ଷୀ ରଖି ଏକ ହୋଇଗଲେ । ଚନ୍ଦ୍ରଚୂଡ଼ ସେତେବେଳେ ଜାଣି ପାରିଲେ ନାହିଁ ଯେ ଏହି ଶୀତଳ ଜ୍ୟୋତ୍ସ୍ନା ବଡ଼ବାନଳ ହୋଇ ତାଙ୍କୁ ଗ୍ରାସିବ । ଏ ନିଶା ତାଙ୍କ ନିଦ୍ରା ନାଶ କରିବ । ଏ ମନ୍ଥନରୁ ହଳାହଳ ବିଷର ଉଦ୍‌ଗୀରଣ ହେବ ।

ପୁଣି ଥରେ ଜ୍ୟୋତି ଦୁଆର ଖୋଲି ପଚାରିବ—

—ଆପଣ ? ଏ ସମୟରେ ?

ଆଜି କିନ୍ତୁ ଉତ୍ତର ଖୋଜିବାକୁ ପଡ଼ିବ ।

କିନ୍ତୁ ଏ ସବୁ କିଛି ହେଲା ନାହିଁ ।

—ଆପଣ ? ଏ ସମୟରେ ?

ପ୍ରଶ୍ନ ପଚରାଗଲା । କିନ୍ତୁ ଜ୍ୟୋତି ନୁହଁ, ମାଷ୍ଟର ପଚାରିଲେ ।

ଦୁଆର ମାଷ୍ଟର ଖୋଲିଲେ । ଜ୍ୟୋତି ତା' ବାପଘରକୁ ଯାଇଥିଲା । ସେ ପରିସ୍ଥିତିରେ ଚନ୍ଦ୍ରଚୂଡ଼ଙ୍କୁ ଭାରି ଭଲ ଲଗିଲା । ମାଷ୍ଟରଙ୍କ ସମ୍ମୁଖରେ ଠିଆ ହେବା ପାଇଁ ସେ ନିଜ ମନକୁ ଦୃଢ଼ କରି ଆସିଥିଲେ । ଜ୍ୟୋତି ସମ୍ମୁଖରେ କିପରି ଠିଆ ହେବେ, ଏହି ଚିନ୍ତା ଆପେ ଆପେ ସରି ଯାଇଥିଲା ।

ମନ ଦୃଢ଼ କରି ମଧ୍ୟ ମାଷ୍ଟରଙ୍କ ମୁହଁକୁ ସିଧାସଳଖ ଅନେଇବାର ସାହସ ଚନ୍ଦ୍ରଚୂଡ଼ କରି ପାରିଲେ ନାହିଁ । ମାଷ୍ଟର ଅତି ବିନୀତ ସ୍ୱରରେ ଚନ୍ଦ୍ରଚୂଡ଼ଙ୍କୁ ବସିବାକୁ ଅନୁରୋଧ କଲେ । ଚନ୍ଦ୍ରଚୂଡ଼ ମୁହଁ ପୋତି ଚଉକିରେ ବସିଲେ ।

—ମୋ ଭଳି ପାମର ଘରକୁ ପୁଣି ଥରେ କିପରି ଆସିଲେ ?

ଚନ୍ଦ୍ରଚୂଡ଼ ମାଷ୍ଟରଙ୍କୁ ଚାହିଁଲେ । ଏତେ ବଡ ମହାନ୍ ସାହିତ୍ୟିକ୍ କିନ୍ତୁ ଉତ୍ତର ପାଇଁ ଶବ୍ଦ ଖୋଜୁଥିଲେ । ମାଷ୍ଟର ପ୍ରଶ୍ନବାଚକ ଦୃଷ୍ଟିରେ ଚାହିଁ ରହିଥିଲେ ।

ପ୍ରଥମ ବାକ୍ୟଟା କହିବା ଅତି କଷ୍ଟଦାୟକ ହେବ ଚନ୍ଦ୍ରଚୂଡ଼ ବୁଝିଥିଲେ, ତଥାପି କହିବାକୁ ହେବ । କହିଲେ—"ଆସିଲି, ଅତି ଜରୁରୀ କାମ ପଡ଼ିଲା ··"

ଚନ୍ଦ୍ରଚୂଡଙ୍କ କାତର ସ୍ୱର, ମଳିନ ମୁଖ ଦେଖି ମାଷ୍ଟର ଯାହା ବୁଝିବା କଥା ବୁଝିଲେ । ତଥାପି ଅତି ଶାନ୍ତ ସ୍ୱରରେ କହିଲେ—

"ବାଃ, ଖୁସି ହେଲି । ଆସନ୍ତୁ, ହାତ ଗୋଡ଼ ଧୋଇ ବସନ୍ତୁ । ମୋ ହାତ ତିଆରି ଚାହା ପିଅନ୍ତୁ । କାରଣ ଆମ ସୌଭାଗ୍ୟବତୀ ତାଙ୍କ ବାପ ଘରକୁ ଯାଇଛନ୍ତି ।

—ମାଷ୍ଟର···

—ଉଠନ୍ତୁ—କାମ ତ ହବ । କାମ ପାଇଁ ଯଦି ଆସିଛନ୍ତି···

କିନ୍ତୁ ଚନ୍ଦ୍ରଚୂଡ଼ ଉଠିବାକୁ ରାଜି ନ ଥିଲେ । କେମିତି କହିବେ ଏହି ଚିନ୍ତା ତାଙ୍କୁ ଘାରୁଥିଲା ।

—ମାଷ୍ଟର !

ମାଷ୍ଟର ଏଥର ଭଲ କରି ଚନ୍ଦ୍ରଚୂଡ଼ଙ୍କୁ ଚାହିଁଲେ । ଗତ ମାସ ଯାକ ଏ ଲୋକ କେତେ ମନସ୍ତାପ ଭୋଗିଥିବ, ତାର ଅନ୍ଦାଜ କରୁଥିଲେ । ସେ ଚନ୍ଦ୍ରଚୂଡ଼ଙ୍କୁ ବୁଝେଇବାକୁ ଯାଇ କହିଲେ—"ଆପଣଙ୍କ ଜରୁରୀ କାମ କଅଣ, ମୁଁ ଭଲଭାବରେ ଜାଣିଛି ।'

ଚନ୍ଦ୍ରଚୂଡ଼ ବିକଳ ସ୍ୱରରେ କହିଲେ—"ମାଷ୍ଟର, ଦଣ୍ଡ ଦିଅ—ମୁଁ ଭୋଗିବାକୁ ରାଜି ଅଛି । ଦଣ୍ଡ ଶୁଣିବାକୁ ଅଧିର ହୋଇ ପଡ଼ିଲିଣି ।" ମାଷ୍ଟର ଖାଲି ହସିଲେ··· ଲୁଚି ଭିତର ହସ ନୁହେଁ··ଉଦାସର ହସ—' ଦଣ୍ଡ ଦିଅ ମାଷ୍ଟର, ଦଣ୍ଡ ଦିଅ ମୁଁ ଭିତରୁ ବାହାରୁ ଜଳୁଛି ।"

"ଗତ ମାସ ଯାକ ତା ହେଲେ ତ ବହୁତ ଦଣ୍ଡ ଭୋଗିଲେଣି ।"ମାଷ୍ଟର ଶାନ୍ତ ସ୍ୱରରେ କହିଲେ ।

ଅନ୍ୟମନସ୍କ ହୋଇ ଚନ୍ଦ୍ରଚୂଡ଼ କହିଲେ—"ସେ ଦଣ୍ଡ ମୁଁ ନିଜେ ଭୋଗିଲି । ତେଣୁ ମନ ଶାନ୍ତ ନାହିଁ । ଦଣ୍ଡ ପାଇବା ଆଶାରେ ତୁମ ପାଖକୁ ଆସିଛି ।"

ମୁଁ କିନ୍ତୁ କିଛି କରିପାରିବ ନାହିଁ । ମାସଯାକ ଆପଣ ଯାହା ଦଣ୍ଡ ଭୋଗିଛନ୍ତି, ତାଠୁଁ ବେଶି କିଛି ବଡ଼ଦଣ୍ଡ ମୁଁ ଦେଇପାରିବ ନାହିଁ । ତା'ଛଡ଼ା ଆପଣଙ୍କ ଓ ମୋ ମଧ୍ୟରେ ଯେଉଁ ଦୂରତ୍ୱ ଅଛି, ସେ ଦୂରତାକୁ ଦଣ୍ଡଦେବା ପାଇଁ ମୋ ଅଧିକାର ଆପଣଙ୍କ ପର୍ଯ୍ୟନ୍ତ ପହଞ୍ଚି ପାରିବ ନାହିଁ ।

"ଏ କଅଣ କହୁଛନ୍ତି ? କେଉଁ ଦୂରତା । ?"

ମାଷ୍ଟର କିଛି ସମୟ ରହିଗଲେ । ତାଙ୍କ ମୁଖର ଭାବ ଅନେକ ଥର ବଦଳିଲା । ପରେ କିଛି ଗୋଟେ ସ୍ଥିର କରି କହିଲେ—"ଏ ବିଷୟ ନେଇ କୌଣସି ପ୍ରକାର ଆଲୋଚନା କରିବା ପାଇଁ ମୁଁ ଚାହୁଁ ନ ଥିଲି । କାରଣ ମୋ ଦୃଷ୍ଟିରୁ ସେ କଥାର ପରିସମାପ୍ତି କେବେଠୁଁ ହୋଇଗଲାଣି । ଆଜି କହୁଛି କେବଳ ଆପଣଙ୍କ ପାଇଁ ।"

"ଆପଣ 'ସହିଷ୍ଣୁ' ବୋଲି ଜଣେଇଲେ । ସେହି ଦିନଠାରୁ ମୋ ଭାଗ୍ୟ ବଦଳିଲା । ଜଣେ ମହାନ୍ ପଣ୍ଡିତ ମୋ ଘରେ ପାଦଧୂଳି ଦେବେ । ତାଙ୍କୁ ଆଦର ଆତିଥ୍ୟ କରିବାର ସୌଭାଗ୍ୟ ମୁଁ ପାଇବି—ଏହା ହିଁ ମତେ ଆନନ୍ଦିତ କରିଥିଲା । ଆପଣ ଆସିଲେ, ଏଠି ରହିଲେ । ଆପଣଙ୍କ ଦୈବୀ ପ୍ରତିଭାର ଦର୍ଶନ ଆପଣଙ୍କ ଭାଷଣରୁ ପାଇଲି । କେବଳ ମୋର ଇଚ୍ଛା ପାଇଁ ଆପଣଙ୍କୁ ହଇରାଣ କଲି, ତା'ହିଁ ଦୁଃଖ ଦେଲା । ପରେ ଆପଣଙ୍କ ରହଣିକାଳ ବଢ଼ିଲା ଓ ସେ ଘଟଣା ଘଟିଲା । କେହି ନ କହି ମଧ୍ୟ ମୁଁ ଜାଣିପାରିଲି । ସେହି କ୍ଷଣରେ ପ୍ରଚଣ୍ଡ କ୍ଷୋଭର ଏକ ଲହରୀ ମୋ ମନରେ ଉଠିଲା । କିନ୍ତୁ ମୁଁ ଶିକ୍ଷିତ, ଅନେକ ସଂସ୍କାର ଓ ଡିଗ୍ରୀମାନଙ୍କ ଦ୍ୱାରା ମୁଁ ଆବଦ୍ଧ । କ୍ୟୋଢ଼ ଅଶିକ୍ଷିତ. ଚୁରଟା ବହି ମଧ୍ୟ ପଢ଼ିନି । କ୍ଷୋଭର ଆବେଗରେ ଭାବିଲି ଗୋଡ଼ଠୁଁ ମୁଣ୍ଡଯାଏ ପିଟି ଦେଇଯିବି, କିନ୍ତୁ ଡରିଗଲି । ଭାବିଲି, କ୍ୟୋଢ଼ କ'ଣ କହିବ ? ଜଣେ ଅଶିକ୍ଷିତ ଯାହା କରିଥାନ୍ତା, ଏ ଶିକ୍ଷିତ ମାଷ୍ଟର ତାହା ହିଁ କଲା ! ପରେ ଆପଣଙ୍କ କଥା ଭାବିଲି । ସେଇଠି ମୁଁ ଶ୍ରେଷ୍ଠ ହୋଇଗଲି । ଆପଣଙ୍କର ସାମାଜିକ ସ୍ଥିତି ଏତେ ଉଚ୍ଚରେ ଯେ ସେଠି ମୋ ଭଳି ପାମର ଆପଣଙ୍କୁ କି ଦଣ୍ଡ ଦେଇପାରେ ?"

ଚନ୍ଦ୍ରଚୂଡ଼ ତାଙ୍କୁ ଅଟକେଇ କହିଲେ, "ଏ ମହାନତା ହିଁ ମତେ ଜାଳୁଛି । ମୁଁ କି ଶ୍ରେଷ୍ଠ ? ମୁଁ ତୁମରି ଭଳି ଜଣେ । ମତେ ଦଣ୍ଡଦିଅ ମାଷ୍ଟର ।"

"ଚନ୍ଦ୍ରଚୂଡ଼ ! ଆପଣଙ୍କ ଭ୍ରମରେ ଅଛନ୍ତି । ସ୍ତ୍ରୀ ସୌଖ୍ୟର ଅଭିଳାଷ ବାବଦରେ ମୁଁ ଜିତେନ୍ଦ୍ରିୟ । ମୋ ପଛରେ ମଧ୍ୟ ନାରୀମାନେ ପାଗଳ ହୋଇ ବୁଲୁଥିଲେ । ବିଶ୍ୱାସ ହେଉନି ? ନ ହେଉ ! ତଥାପି କହୁଛି—ବିଦ୍ୱତା, ସୁନ୍ଦରତା, ଲବ୍ଧ ପ୍ରତିଷ୍ଠା ପଛରେ ଯେପରି ନାରୀମାନେ ଆକର୍ଷିତ ହୁଅନ୍ତି, ସେମିତି ସରଳ, ସାଧୁ ପ୍ରକୃତିର, ସଦଗୁଣୀ ଓ ସଦାଚାରୀ ପ୍ରତି ଆକୃଷ୍ଟ ହୁଅନ୍ତି । ମୁଁ କିନ୍ତୁ ଅଚଳ ମେରୁ ହୋଇ ରହିଲି । ଏହି ଗୋଟିଏ କଥାରେ ମୁଁ ଆପଣଙ୍କଠାରୁ ବହୁ ଊର୍ଦ୍ଧ୍ୱରେ ଅଛି । ଆପଣ ମୋ ଭଳି କେବେହେଲେ ହୋଇ ପାରିବେ ନାହିଁ । ତେଣୁ ମୋ ଭଳି ଏତେ ଉଚ୍ଚସ୍ଥାନର ଥିବା ଲୋକ ଆପଣଙ୍କ ଭଳି ନୀଚସ୍ଥାନରେ ଥିବା ଲୋକଙ୍କୁ ଦଣ୍ଡଦେବା ମତେ ଶୋଭା ଦିଏନି । ଦୁଇଟିଯାକ ପରିସ୍ଥିତିରେ ଆମ ଭିତରେ ଥିବା ଦୂରତ୍ୱ ସେତିକି ରହିବ ।"

—ମାଷ୍ଟର ପ୍ରକୃତରେ ଆପଣ ବହୁତ ବଡ଼, ବିଶାଳ !

— ବିଶାଳ ମଧ୍ୟ ଆପଣ ଓ କ୍ଷୁଦ୍ର ମଧ୍ୟ ଆପଣ । ଏହାକୁ ପ୍ରକୃତ କୁହନ୍ତୁ ବା ନିୟତି । ନିୟତି ମଣିଷକୁ କୌଣସି ଏକ ବିଷୟରେ ଅତ୍ୟୁଚ୍ଚ ଶିଖରରେ ନେଇ ଥୋଇ ଦିଏ ଓ ଦେଇଥିବା ଉଚ୍ଚତାର ହିସାବ ରଖିବା ପାଇଁ ଆଉ ଏକ ବିଷୟରେ ତାକୁ ଅତି କ୍ଷୁଦ୍ର କରିଦିଏ । ଜଣକୁ ବଡ଼କରି ଆଉ ଜଣକୁ ସେ ଶ୍ରେଷ୍ଠକରେ ନାହିଁ । ଜଣକୁ ହିଁ ଏଠି ବଡ଼ ତ ସେଠି ଶ୍ରେଷ୍ଠ କରିଥାଏ । ଛାଡ଼ନ୍ତୁ ସେ କଥା । ଚର୍ଚ୍ଚା କରି କିଛି ଲାଭ ନାହିଁ । ମୁଁ କେବଳ ଆପଣଙ୍କ ମହାନତାକୁ ମନେ ରଖିଛି । ଅନ୍ୟକଥା ବିଷୟରେ ମୋର କିଛି ଦାବିଦାର ନାହିଁ । କାରଣ ଅଜାଣତରେ ହେଉନା କି ହିଁକି ଆପଣ ମୋ ଉପରେ ଉପକାର କରିଛନ୍ତି ।”

“ଉପକାର”

“ହଁ ଉପକାର । ଜ୍ୟୋତି ଅଶିକ୍ଷିତ ହେଲେ ମଧ୍ୟ ତାର ସୌନ୍ଦର୍ଯ୍ୟବୋଧ ବହୁତ ଅଛି । ମୋଠୁଁ ଅଧିକ ରୂପବାନ, ଧନୀ ସ୍ୱାମୀ ସେ ତା ସୌନ୍ଦର୍ଯ୍ୟ ବଳରେ ପାଇଥାନ୍ତା, ଏହି ଭାବ ତା କଥାରେ, ଚାଲି ଚଳନରେ ପରିଲକ୍ଷିତ ହେଉଥିଲା । କିନ୍ତୁ ସେହିଦିନଠୁଁ ସେ ମୋ ସହିତ ନମ୍ର ବ୍ୟବହାର କରୁଛି । ଛାଡ଼ ସେ କଥା । ରହନ୍ତୁ । ହାତ ମୁହଁ ଧୋଇ ନିଅନ୍ତୁ । ମୁଁ ଚାହା କେମିତି କରୁଛି, ଦେଖନ୍ତୁ ।”

ଚନ୍ଦ୍ରଚୂଡ଼ ବଧିର ହୋଇ ମାଷ୍ଟରଙ୍କ ଦୂରେଇ ଯାଉଥିବା ପିଠି ଆଡ଼କୁ ଚାହିଁ ରହିଥିଲେ । ଏ ଦୂରତ୍ୱକୁ ପାର କରିବା କଷ୍ଟଦାୟକ ନୁହେଁ, ଅସମ୍ଭବ ଥିଲା ।



# ଋତୁ ବସନ୍ତ ରଠ୍ ଗପ୍ପି

ଆପଣମାନେ ଯକ୍ଷର ଗପଟି ଜାଣନ୍ତି କି ନା ମୁଁ ଜାଣେନା ! ମନେପଡ଼ୁଛି ? ନା' ନା, ମୁଁ ମହାଭାରତରେ ଥିବା ଯକ୍ଷ ବିଷୟରେ ପଚାରୁନି । କାରଣ ସେ ଗପରେ ଯକ୍ଷ ସହିତ ପଞ୍ଚପାଣ୍ଡବଙ୍କ ମଧ୍ୟରୁ ଜ୍ୟେଷ୍ଠ ପାଣ୍ଡବ ଧର୍ମ ମଧ୍ୟ ଥିଲେ । ମୁଁ ଯେଉଁ ଯକ୍ଷ ବିଷୟରେ କହୁଛି ସେ ଏକୁଟିଆ ରହୁଥିଲା । ସୁନ୍ଦର ସୁନ୍ଦର ଫୁଲର ସେ ରସିଆ ଥିଲା । ତା'ର ଗୋଟିଏ ବଡ଼ ବଗିଚା ଥିଲା । ସେଥିରେ ସେ ବହୁତ ସୁନ୍ଦର ସୁନ୍ଦର ଫୁଲ ଗଛ ମାନ ଲଗେଇ ଥିଲା । ତେଣୁ ଅନେକ ଗ୍ରେଟ ଗ୍ରେଟ ପିଲା ସେ ବଗିଚା ପ୍ରତି ଆକର୍ଷିତ ହେଉଥିଲେ । ସେଠି ଆସି ଖେଳୁଥିଲେ । ଫୁଲ ଛିଣ୍ଡେଇ ଫୋପାଡ଼ୁ ଥିଲେ । ଡାଳ ଭାଙ୍ଗି ଦେଉଥିଲେ । ତେଣୁ ବଗିଚାଟି ନଷ୍ଟ ହେଉଥିଲା । ବଗିଚା ନଷ୍ଟ ହେବା ଦେଖି ଯକ୍ଷ ବ୍ୟସ୍ତ ହୋଇ ପଡ଼ିଲା । ପିଲାଙ୍କ ଲାଗି କି ବନ୍ଦୋବସ୍ତ କରିବ ବୁଝି ପାରୁ ନଥିଲା । ଶେଷକୁ ନିରୁପାୟ ହୋଇ ସେ ଏତେ ବଡ଼ ବଗିଚା ଚାରିପଟେ ଗୋଟିଏ ମଜବୁତ ପାଚେରୀ ତୋଳିଲା, ପିଲାମାନେ ଆସିବା ବନ୍ଦ ହୋଇଗଲେ । ଯକ୍ଷ ଖୁସି ହୋଇଗଲା ; କିନ୍ତୁ ସେଇ ବର୍ଷ ଗୋଟିଏ ଅଦ୍ଭୁତ ଘଟଣା ଘଟିଲା । ବସନ୍ତ ଋତୁ ଆସିଲା । ନଗରର ପ୍ରତ୍ୟେକ ଗଛ ନୂଆ ପତ୍ର ଫୁଲରେ ଲଦି ହୋଇଗଲେ । କିନ୍ତୁ ଯକ୍ଷର ବଗିଚାରେ ଥିବା ଗଛରେ କିଛି ହେଲା ନାହିଁ । ବସନ୍ତ ଋତୁ ଯକ୍ଷର ବଗିଚା ପ୍ରତି ରୁଷିଲା । ଏମିତି ଅନେକ ବର୍ଷ ବିତିଗଲା । ବସନ୍ତ ଋତୁ ସେମିତି ରୁଷି ରହିଲା । ଯକ୍ଷ ବୁଢ଼ା ହୋଇଗଲା । ତା' ହାତ ଗୋଡ଼ ଅଚଳ ହୋଇ ପଡ଼ିଲା । ସେଇବର୍ଷ ପୁଣି ଥରେ ଚମତ୍କାର ହେଲା । ଯକ୍ଷର ନାକରେ ଫୁଲର ସୁଗନ୍ଧ ବାଜିଲା । ସେ ଘୁଷୁଡ଼ି ଘୁଷୁଡ଼ି ବଗିଚାକୁ ଆସିଲା । ଦେଖେ ତ ବସନ୍ତ ଋତୁ ତା' ବଗିଚାରେ ଅବତରଣ କରିଛି । ଗଛ ଲତା ଫୁଲରେ ଲଦି ହୋଇ ହସୁଛନ୍ତି । ବୃକ୍ଷଗୁଡ଼ିକ ଝୁଲୁଛନ୍ତି । ଲତାଗୁଡ଼ିକ ଦୋଳି ଖେଳୁଛନ୍ତି । ଚାରିଆଡ଼େ ସୁଗନ୍ଧ ଭରି ରହିଛି । ଅନ୍ୟ ପଟେ ପାଚେରୀ କାନ୍ଥରେ ଗୋଟିଏ ବଡ଼ କଣା ହୋଇଛି । ସେଇ କଣା ବାଟେ ଗ୍ରେଟ ପିଲାମାନେ ବଗିଚା ଭିତରେ ପଶି ଖେଳୁଛନ୍ତି । ସେଇ ସମୟରେ ଯକ୍ଷ ବୁଝିପାରିଲା । ଗ୍ରେଟ ଗ୍ରେଟ ନିଷ୍ପାପ ଦେବଶିଶୁ ପିଲାମାନେ ହିଁ ବସନ୍ତ ଋତୁ । ପିଲାମାନଙ୍କୁ ଦୂରକୁ ଠେଲି ଦେଲେ ବସନ୍ତ ଋତୁ କିପରି ହସିବ ?

ଏଥର ମନେ ପଡ଼ୁନି ?

ମନେ ପଡ଼ୁନି ?

ତାହେଲେ କ'ଣ କହିବ ? ଏଭଳି ସୁନ୍ଦର ଗପ ତମେ ମନେ ରଖିନ। ତମେ ନିଶ୍ଚୟ ଅରସିକ।

ମୁଁ କିନ୍ତୁ ଗପଟିକୁ ମନେ ରଖିଛି। ଯେତେବେଳେ ନିରୋଳାରେ ଥାଏ। ଏ ଗପ ମନେ ପକାଏ। ଉପରେ ସିଲିଂ ଫ୍ୟାନକୁ, ଫୁଲ ସ୍ପିଡ୍‌ରେ ଚଳେଇ ଦିଏ। ଆରାମଚୌକିକୁ ଫ୍ୟାନ ତଳକୁ ଟାଣି ଆଣେ। ପରେ ଆଖି ବୁଜି ଯକ୍ଷର ବଗିଚାକୁ ବୁଲିବାକୁ ଯାଏ। ତୁମକୁ ମଧ୍ୟ ନେଇଥାନ୍ତି; କିନ୍ତୁ ତମେ ତ ଯକ୍ଷକୁ ଭୁଲି ସାରିଛ।

ତାହା ହେଲେ ତୁମ ଜୀବନରେ ଯାହା ସବୁ ଭଲ ଘଟଣା ଘଟିଚି ତା' ମଧ୍ୟ ତମେ ଭୁଲିଯାଇଥିବ। Just possible, one who can afford to forget the best story can afford to forget -anything.- ତମର ତାରୁଣ୍ୟ ମଧ୍ୟ। ଏପରିକି ଚଉଠି ରାତି ମଧ୍ୟ।

କିନ୍ତୁ ମୋର ସେଭଳି ନୁହେଁ। ଫ୍ୟାନ୍ ତଳେ ବସିଲେ ମୋର ସବୁ କିଛି ମନେ ପଡ଼େ।

ଚଉଠି ରାତି ମଧ୍ୟ।

ମୋ ଲାଇଫ୍‌ଟା ମଧ୍ୟ ଅଜବ। ବାହାଘର ହେଲି। ଚଉଠି ରାତି ଆସିଲା, କିନ୍ତୁ ଚଉଠି ଦିନ ନୁହେଁ। ଦୀର୍ଘ ଗୁରମାସ ପରେ ! ଏପରି କାହିଁକି ?

ବହୁତ କାରଣ ଅଛି। ସବଳ ମଧ୍ୟ। ଚଉଠି ରାତି ଅପେକ୍ଷା ମହତ୍ତ୍ୱପୂର୍ଣ୍ଣ। ନହେଲେ ଅଭାବ କିଛି ନ ଥିଲା। ନିଜର ଘର ଥିଲା। ସେଥିରେ ଏକ ସୁନ୍ଦର ବେଡ୍‌ରୁମ ଥିଲା ଓ ଡବଲ ବେଡ୍ ମଧ୍ୟ। କିନ୍ତୁ "ସେ" ରାତିଟି ଉଦୟ ହେଲା ଦୀର୍ଘ ଗୁରମାସ ପରେ। କାରଣ ସୁହାସିନୀ ଗୁରମାସ ପର୍ଯ୍ୟନ୍ତ କଲିକତାରେ ଥିଲା।

ତେଣୁ ଏ ଗୁରଟା ମାସ କେମିତି ବତେଇଲି ?

କେବଳ ପଢ଼ଣା ଘରେ ମିନି ଭଲି ସୁନ୍ଦର ଝିଅଟିଏ ଥିଲା ବୋଲି। ହଁ। ହଁ। ଟିକେ ରହିଯାଅ। ହଠାତ୍ କୌଣସି କନ୍‌କ୍ଲୁଜନ କର ନାହିଁ। ଏ ପଢ଼ଣା ଘରର ମିନି ମାନେ ଅଢ଼େଇ ବର୍ଷର ଛୁଆ ଝିଅଟିଏ। ବହୁତ ସୁନ୍ଦର। ଅତି ସୁନ୍ଦର ମିଠା କଥା କହେ। ସବୁବେଳେ ମୋର କୋଳରେ। ପପା, ମମିଙ୍କ ଅପେକ୍ଷା ମୋର ପାଖରେ ବେଶି ସମୟ ରହୁଥିଲା।

ବାସ୍ତବରେ ମିନି ପାଇଁ ମୁଁ ବେଶି କିଛି କ'ଣ କରୁଥିଲି। ତା' ଜନ୍ମଦାତାଙ୍କ ଅପେକ୍ଷା ମୁଁ କ'ଣ ଅଧିକ ସ୍ନେହ କରି ପାରିଥାନ୍ତି। ତଥାପି ସେ ମୋର ପାଖରେ ରହୁଥିଲା।

କାହିଁକି ?

ଅତ ସହଜ କଥା ।

ମିନି ଘରେ ମିନି ତା' ବାପା ମା'ଙ୍କର ଥିଲା । ମୋ ଘରେ ମୁଁ ମିନି ପାଇଁ ଥିଲି । ସେ ମତେ "ମିଥିଲେ ମିଥିଲେ କାନ୍ଦିଲୁ" କହିଲେ ମୁଁ ଭେ ଭେ ହୋଇ କାନ୍ଦେ ।

ସେଠୁ ସେ କହେ "ଧିଲେ ଧିଲେ" ।

ମୁଁ କଇଁ କଇଁ କାନ୍ଦେ ।

ସେଠୁ ସେ ହୁକୁମ କରେ । "ଏଥିଲ ହସିଲୁ" ।

ମୁଁ ହସେ ।

ହସି ହସି ଗଲିଲୁ ।

ମୁଁ ହସି ହସି ଗଡ଼ିଯାଏ ।

ଥରେ ଏମିତ ମୁଁ ମିନିର ଫରମାଇସ୍ ଅନୁସାରେ ହସି ହସି ଗଡ଼ୁଥିଲି । ମିନି ଜୋର ଜୋର ତାଳି ମାରି ହସୁଥିଲା । ଦେଖେତ ମିନିର ମମି ଓ ପପା ଦୁଆର ମୁହଁରେ ଠିଆ ହୋଇଛନ୍ତି ।

ତମେ ଏ ସବୁ କରୁଛ । ସେଥିପାଇଁ ତମେ ନଥିଲେ ସେ ତା ପପାଙ୍କୁ ଏମିତ କରିବାକୁ ବାଧ କରୁଛି ।

ତାହାହେଲେ କରିବେ । ମୁଁ ହାତ ଝାଡ଼ି ଉଠି ଠିଆ ହେଲି ।

କରିବ କ'ଣ ? ତମେ ବି କମାଲ କରୁଛ । ଦୁଇଦିନ ତଳେ ମିନିର ପପା ଅଫିସକୁ ବାହାରି ଥିଲେ । ଇମ୍ପୋର୍ଟାଣ୍ଟ ମିଟିଂ ଥିଲା ବୋଲି ସୁଟ୍ ପିନ୍ଧିଥିଲେ । ସେତକବେଳେ ମିନି ଜିଦ୍ ଧରି ବସିଲା ହସି ହସି ଗଡ଼ିବା ପାଇଁ ।

ମିନିର ଡାଡ଼ି ମଧ କିଛି କମ୍ ନୁହଁନ୍ତି । କହିଲେ; ଏତ କିଛି ନୁହଁ ସେଦିନ ରାତରେ ଆମେ ଶୋଇଥିଲୁ । ଗୋଟିଏ ପଟେ ମିନି । ଆର ପଟେ ମିନିର ମମି । ମୁଁ ଭାବିଲି ମିନି ଶୋଇପଡ଼ିଛି···

ମମି ପପାଙ୍କୁ ଆଖି ଦେଖେଇଲେ ।

ପପା' ନଷ୍ଟେଡ଼ ବନ୍ଦ୍ୱା ।

ସେ କହିଲେ, ଆଉ କିଛି କହୁ ନାହିଁମ ।

ମୁଁ ଫିସ୍ କରି ହସି ଦେଲି । ସେମାନେ ମଧ ହସିଲେ ।

ହଁ କ'ଣ କହୁଥିଲି କି । ମୁଁ ଭାବିଲି, ମିନି ଶୋଇ ପଡ଼ିଛି ।

କିନ୍ତୁ ହଠାତ୍ ଉଠି କହିଲା । "ପପା ମିଛେ ମିଛେ କାନ୍ଦିଲୁ" ।

ଏଥର କହିଲେ, ମଜାରେ ସ୍ତ୍ରୀ ପାଖରେ ଶୋଇଥିଲି । ସେଟା କ'ଣ କାନ୍ଦିବା ହେଲା ।

ଏଇଠିକି ଭୁଲ୍ କଲେ ।

ଭୁଲ୍ କଲି ?

ସତ ! ତମେ ନୁହେଁ, ମିନି ଭୁଲ୍ କଲା ।

କ'ଣ ଭୁଲ୍ କଲା ?

ମିନି ଭାବିଲା, ପପା ତା' ପାଖରେ ଶୋଇଛନ୍ତି ।

ସେ କ'ଣ ଜାଣିଥିଲା, ମାମା ତାଙ୍କ·····

ଯାଃ, ଯା ନାହିଁ ତାହା କହୁଛ, କହି ମମି ତାଙ୍କ ଘରକୁ ପଳେଇଲେ ।

ଏମିତି ହୁଏ । ବାପା ମା'ଙ୍କ ପାଖରେ ତାଙ୍କୁ ଯେତେବେଳେ ଫୁରୁସତ ଥାଏ; ତାଙ୍କର ଯେତେବେଳେ ମନ ହୁଏ, ସେତେବେଳେ ପିଲା ସହ ସେମାନେ ଖେଳିବାକୁ ଚାହାନ୍ତି । ମିଳିଛି ଏକୁଟିଆ ମଜାରେ ଖେଳୁଥିଲା ବେଳେ, ତା' ମନ ଭିତରେ ତାକୁ ଟେକି ଧରନ୍ତି; କିନ୍ତୁ ମୋର ଅଦ୍ୟାପି ଆରମ୍ଭ ହୋଇ ନଥିବା ସଂସାରରେ ମିନି ମୋ ପାଇଁ ନ ଥାଇ ମୁଁ ମିନି ପାଇଁ ଥିଲି । ସେ ଏଠିକାର ସାମ୍ରାଜ୍ଞୀ ଥିଲା ଓ ମୋ ଭଳି ଗୋଲାମ ପ୍ରତି ଖୁସ୍ ଥିଲା ।

ମନେ ପକେଇଲେ । ବାପା ମା'ଙ୍କ ଅପେକ୍ଷା ପିଲାମାନେ ତାଙ୍କୁ ସମ୍ଭାଳିବା ପାଇଁ ରଖା ଯାଇଥିବା ଆୟାମାନଙ୍କ ଉପରେ ଖୁସ୍ ଥା'ନ୍ତି । ଦିନେ ଯଦି ତାଙ୍କ ଆୟା କାମ କରିବାକୁ ନ ଆସେ, ନ ହେଲେ ମୋ ଭଳି ଅଫିସରୁ ଫେରିଲେ କାମ ଧନ୍ଦା ନ ଥିବା ଲୋକ ଯଦି ତାଙ୍କୁ ନଭେଟେ, ତାଙ୍କ ଅବସ୍ଥା କ'ଣ ନ ହେଉଥିବ ।

ସାପ୍ତାଂଶରେ ମୋର ସ୍ବରମାସ ଦେଖୁ ଦେଖୁ କଟିଗଲା । କେବଳ ମିନି ପରି ଝିଅଟିଏ ପଡ଼ୋଶୀ ଘରେ ଥିଲାବୋଲି । ଏହି ଅଢ଼େଇ ବର୍ଷର ଛୋଟ ସୁନ୍ଦର ବଜୁଲି ବେଗରେ ଧାଉଁଥିବା ଝିଅଟି ମୋ ଜୀବନକୁ ସରସ କରିଥିଲା । ଏହା ଛଡ଼ା ଆଉ ଗୋଟିଏ କଥା ମଧ୍ୟ ଥିଲା ।

ସୁହାସିନୀ ପାଖରୁ ସପ୍ତାହକୁ ଆସୁଥିବା ଦୁଇଟି ଚିଠି । ପରିସ୍ଥିତି ଏଭଳି ଥିଲା ଯାହାଦ୍ୱାରା ସୁହାସିନୀ କଲିକତାରେ ରହିବାକୁ ବାଧ୍ୟ ହୋଇଥିଲା । କିନ୍ତୁ ଏହି ସର୍ତ୍ତରେ ମୁଁ ତାକୁ ଯିବାପାଇଁ ଅନୁମତି ଦେଇଥିଲି ଯେ ସପ୍ତାହକୁ ତିନୋଟି ଚିଠି ଯେମିତି ହେଲେ ଲେଖେ ଓ ସର୍ତ୍ତଟି ସେ ମାନୁଥିଲା ।

ବେଳେବେଳେ ଚିଠିଟି ଏତେ ଗ୍ରେଟିଆ ଦ'ଧାଡ଼ିଆ ଥାଏ ଯେ ମୋର ରାଗହୁଏ । ଆଚ୍ଛା ସେ ବ ପ୍ରତ ଦୁଇ ଦିନରେ କ'ଣ ପୂଳାଏ ଲେଖିବ । କେବଳ ସର୍ତ୍ତ ପୂରଣ ପାଇଁ ଲେଖୁଥିଲ । ସେଠି ତା' ପଛରେ କାମ ବ ବହୁତ ଥିଲ । କ୍ୟାନ୍‌ସରର ଶେଷ ଅବସ୍ଥାରେ ତା' ମା' ସେଠି ପଡ଼ିଥିଲେ । ତାଙ୍କ ସେବା ଶୁଶ୍ରୂଷା ପାଇଁ କଲିକତା ଯାଇଥିଲ । ମିନ ଦିନ୍ହ ଟେଲ ଦିଉଲେ ବଳିଥିବା ସମସ୍ତ ଚିଠି ଲେଖିବାରେ ଯାଉଥିଲ । ତଥାପି ଭାବୁଥିଲ ପୂର୍ବାପିକ ପାଖରୁ ଲମ୍ବା ଲମ୍ବା ଚିଠି ଆସୁ ।

ଗତ ସପ୍ତାହରେ ତା' ପାଖରୁ ଆସିଥିବା ସବୁ ଚିଠିତକ ଅତି ମାମୁଲି ଥିଲ । ତେଣୁ ରାଗିଯାଇ ଗୋଟିଏ ଜବରଦସ୍ତ ଚିଠି ତା' ପାଖକୁ ଲେଖିଲି । ଯଦି ବଡ଼ ଚିଠି ନ ଆସେ ତେବେ ଆଉ ଚିଠି ଦେବନି ।

ପିଲାଟିଏ ରଙ୍ଗୀନ ଖେଳଣା ଦେଖିଲେ ଯେମିତ ଖୁସି ମନରେ ତା' ଉପରକୁ ଝାମ୍ପି ପଡ଼େ, ମୁଁ ସେମିତ ଚିଠି ଉପରେ ଝାମ୍ପି ପଡ଼ିଲି । ଏତେ ମୋଟା ଲଫାପା ମାନେ ଚିଠି ନିଶ୍ଚୟ ଲମ୍ବା ଥିବ । ଏଥର ଧୀରେ ଧୀରେ ପଢ଼ିବାକୁ ହେବ । ସେଥିପାଇଁ ଉପରେ ଫ୍ୟାନ ଖୁବ୍ ସ୍ପିଡ୍‌ରେ ବୁଲିବା ଦରକାର ଓ ଫ୍ୟାନ୍ ତଳେ ସାଧାରଣ ଚେୟାର ନୁହଁ ଆରାମ ଚେୟାର ଦରକାର ।

ମୁଁ ଜମିକରି ବସିଗଲି । ଅତି ଧୀରେ ଧୀରେ ଲଫାପାକୁ ଖୋଲିଲି । କାରଣ ଅଠା ଯଦି ବେଶି ଲାଗିଯାଇ ଥିବ, ତାହାହେଲେ ଭିତର କାଗଜ ଚିରି ଯାଇପାରେ । ଲଫାପା ଖୋଲି ଭିତରୁ ଭଙ୍ଗା ହୋଇଥିବା କାଗଜ ସବୁ ବାହାର କଲି, ଛଅ ଫର୍ଦ୍ଦର ଚିଠି ଥିଲ ; କିନ୍ତୁ ଏମିତ ଫାଜିଲମି କରିଥିଲ···

ପ୍ରଥମେ ମୁଁ ରାଗିଗଲି ।

ମୁଁ କ'ଣ, ଯିଏ ହେଲେ ବ ରାଗିଥାନ୍ତା ।

ପ୍ରତ୍ୟେକ ଫର୍ଦ୍ଦରେ ଅନ୍ଧ ବ ଦେଖି ପାରିବ ଏମିତ ବଡ଼ ବଡ଼ ଅକ୍ଷରରେ ଗୋଟିଏ ଶବ୍ଦ ଲେଖା ହୋଇଥିଲ । ଛଅଟି ଶବ୍ଦର ଗୋଟିଏ ବାକ୍ୟ ପାଇଁ ଶବ୍ଦ ପିଛା ଗୋଟିଏ ଫର୍ଦ୍ଦ ବ୍ୟବହାର କରିଥିଲ । ତେଣୁ ଚିଠିଟି ଛଅ ଫର୍ଦ୍ଦର ହୋଇଥିଲ ।

ମୁଁ ବାକ୍ୟଟି ପଢ଼ିଲି । ମୋ ରାଗ ଉଡ଼ନ୍ ଛୁ ହୋଇଗଲି । ଆରାମ ଚେୟାରରେ ବସିବା ଅସମ୍ଭବ ଲାଗିଲି ।

ପୁରା ଘରଯାକ ନାଚିଗଲି । ପାଟିରେ ହାତ ପୂରାଇ ସିନେମା ହଲରେ ସିଟି ବଜାଇଲି ଭଳି ବଜେଇଲି । ନିଜର ସ୍ୱତନ୍ତ୍ର ଘର ଥିଲେ ଏହି ସୁବିଧା ଥାଏ ।

ମୁଁ ଘରର ସବୁ ଲାଇଟ୍ ଯାକ ଜଳେଇଲି । ରେଡ଼ିଓ ଟି: ଭି: ଏକାବେଳେ ବୋବେଇ ଉଠିଲେ । ସିଲିଂ ଫ୍ୟାନ୍‌କୁ ଧରି ଝୁଲିବା କେବଳ ବାକି ଥିଲା ।

"ମୁଁ ଆଜି ସଂଧ୍ୟା ପାଞ୍ଚଟାରେ ବମ୍ବେ ପହଞ୍ଚିବି ।" ଚିଠିରେ କେବଳ ଏତିକି ଲେଖା ଥିଲା ।

ତମେ କହିବ ଏଥିରେ ଏତେ ନାଚିଲା ଭଳି କ'ଣ ଅଛି ? ତମେ ବୁଝି ପାରିବ ନାହିଁ, ଏଠିକି ମୁଁ କହିବ । କାରଣ ତମେ ବି କ'ଣ ଜାଣିବ । ତମ ବାହାଘର ହୋଇ କୋଡ଼ିଏ କୋଡ଼ିଏ ବର୍ଷ ବିତି ଗଲାଣି, ତେଣୁ ସ୍ତ୍ରୀ ଦୂରେଇ ଗଲେ ତମକୁ ହାଲୁକାଁ ହାଲୁକା ଲାଗୁଥିବ ।

ମୋର ଆଜି ଚଉଠି ରାତି ଥିଲା ।

ଏହି ସମୟରେ କବାଟ ଖଡ଼୍ ଖଡ଼୍ ହେଲା ।

ମୁଁ କବାଟ ଖୋଲିଲି । ସାମନାରେ ମିନିଙ୍କୁ ଧରି ମମି ଠିଆ ହୋଇଥିଲେ ।

କ'ଣ ଚାଲିଛି ଏସବୁ ? ମମି ପଚାରିଲେ (ମାନେ ମୋ ସ୍ୱତନ୍ତ୍ର ଘରେ ମଧ୍ୟ ମୁଁ ମୋ ଇଚ୍ଛା ଅନୁସାରେ କିଛି କରି ପାରିବି ନାହିଁ ।) ଏତିକି ବେଳେ ମମିଙ୍କ ନଜର ତଳେ ପଡ଼ିଥିବା ଚିଠିର ଫର୍ଦ ଉପରେ ପଡ଼ିଲା ।

ସେଗୁଡ଼ିକ ଗୋଟେଇ ସେ ପଢ଼ିଲେ ।

ଅର୍ଥପୂର୍ଣ୍ଣ ହସ ହସି କହିଲେ—'ଓଃ ଏଇଥି ଲାଗି !' ସେତେବେଳକୁ ମିନି ମୋ କୋଳରେ ବସି ସାରିଥାଏ ।

ମୁଁ ଘରେ ଯାହା ସବୁ କଲି, ତମ ଘରେ ଶୁଭିଲା ?

ମୋର ଟିକେ କାମ ଥିଲା । ତେଣୁ ଆସିଥାନ୍ତି, କିନ୍ତୁ ତମ ହୁଇସିଲ୍ ଶବ୍ଦ ଶୁଣି ସାଙ୍ଗେ ସାଙ୍ଗେ ଆସିଲି ।

ତମ କାମ କୁହ ଫଟାଫଟ୍ କରିଦେବି ।

ସେଥିରେ ସନ୍ଦେହ ନାହିଁ । କିନ୍ତୁ ଏଥର କହିବି ନାହିଁ ।

କାହିଁକି ?

ଉତ୍ତର ନ ଦେଇ ମିନିକୁ ମୋ ପାଖରୁ ନେଇଯାଇ କହିଲେ,—"ମିନି ! ଏଥର ଅଙ୍କଲଙ୍କୁ ଭୁଲିଯିବୁ ।"

ମମି ତମ କାମ କୁହ ।

ତମ ସ୍ତ୍ରୀ ଆସି ପହଞ୍ଚିବେ । ମୁଁ କାମ କହିବା ମାନେ···

କହିବାରେ କ'ଣ ଅସୁବିଧା ? କଣବକ ନାହିଁ ଦେଖାଯିବ ।

ମମି କହିଲେ । କାଲି ମୋ ଭଉଣୀର ବାହାଘର । ତେଣୁ ଆଜି ସଂଧ୍ୟାରେ ସମସ୍ତେ ଆସି ଆମର ଘରେ ରହିବେ ।

ବୁଝିଲୁ, ଅସୁବିଧା କ'ଣ ।

କେତେଜଣ ଆସିବେ ଜାଣିଛ ?

ମୁଁ ମୁଣ୍ଡ ହଲେଇଲି ।

କୋଡ଼ିଏ ବାଇଶି ଜଣ ଆସିବେ । ସେଥିରେ ଆଠ ଦଶଟା ପିଲା ଅଛନ୍ତି ।

ସେଠୁ ?

ଆଜି ରାତିରେ ତମ ଶୋଇବା ମୁସ୍କିଲ ।

ମୋ ପାଟିରୁ ହଠାତ୍ ବାହାରିଗଲା, ଏମିତିବ ଆଜି ରାତିରେ କଏ ଶୋଇବ ଯେ !

ମମି ମୁରୁକି ହସି କହିଲେ, 'ସେଥିପାଇଁ ତ କାମ କହିପାରିବ ନାହିଁ ।'

ନା, ନା କାମ କୁହ ।

ବେଶି କିଛି ନାହିଁ । ସବୁଦିନିଆ କାମ । ଘରେ ଏତେ କୁଣିଆ, ଗ୍ରେଟ ପିଲାଙ୍କ ପ୍ରତି ଅବହେଳା ହିବ । ତେଣୁ କହୁଥିଲି ମିନି ଆଜି ରାତିରେ ତମ ପାଖରେ ଶୋଇଥିଲେ ·· ·· !

ଏଇ କଥା ତ ? ନୋ ପ୍ରୋବେଲମ୍ ।

ତୁମକୁ ହଇରାଣ କଲି ··

ହଇରାଣ କ'ଣ ? ମିନି ଶୋଇପଡ଼ିଲେ କାମ ସରେ; କିନ୍ତୁ ମିନି ରାତିରେ ଉଠି ବସେ ନାହିଁ ତ ?

ମମି ଲାଜରେ ମୁଣ୍ଡ ତଳକୁ କରି ପଳେଇଲେ ।

ସୁହାସିନୀ ଆସି ପହଞ୍ଚିଲା । ଗାଡ଼ିରୁ ଓହ୍ଲେଇବା ସମୟରେ କେମିତି ଦେଖାଯାଉଥିଲା । ······କହିବି : କଳ୍ପନାର ତାଜମହଲ ମଧ୍ୟ ଫିକା ପଡ଼ିଗଲା । ଆମେ ସିଧା ଘରେ ଆସି ପହଞ୍ଚିଲୁ । ମମି ଆମକୁ ଦେଖିଲେ ; କିନ୍ତୁ ପଛେ ପଛେ ଆସିଲେ ନାହିଁ । ନ ହେଲେ କୋଡ଼ିଏ ପଚିଶ ମିନିଟ୍ ମଣିଷ ବୋର ହୋଇଥାନ୍ତା ।

ସୁହାସିନୀ ଘରେ ପହଞ୍ଚିବାର ଅଧଘଣ୍ଟା ପରେ ମାଙ୍କ ଘରେ କଣେ କଣେ କୁଣିଆ ଆସି ପହଞ୍ଚିବା ଆରମ୍ଭ ହେଲା ।

ପିଲାମାନଙ୍କର ପାଟିଗୋଳ, କାନ୍ଦ ଓ ବଡ଼ମାନଙ୍କର ଜୋର୍ ଜୋର୍‌ରେ ଚର୍ଚ୍ଚାର ଶବ୍ଦ ଶୁଭିଲା ।

ସେତିକବେଳେ ମନେ ପଡ଼ିଲା ସକାଳେ ଛଅ ଘଣ୍ଟାରେ ମିନିକୁ ରାତିରେ ମୋ ପାଖକୁ ଆଣିବ ବୋଲି କହିଛୁ ।

ଘରେ କରିଥିବା ମୂର୍ଖାମି ଯୋଗୁଁ ନିଜକୁ ଶୋଧୁଥିଲି ।

କିଛି ଗୋଟାଏ ଉପାୟ କରିବାକୁ ହେବ ।

ପଡ଼ିଶା ଘରେ ଚାଲିଥିବା ପାର୍ଟି ଭିଡ଼ରେ ଘରେ ବସିବା ଅସମ୍ଭବ ଥିଲା । ମୁଁ ସୁହାସିନୀକୁ ଧରି ବୁଲିବାକୁ ବାହାରିଲି ।

ବୁଲୁଥିବା ସମୟରେ ମନରେ ସେହି କଥାର ଚାଲିଥାଏ ।

ଆଜି ମିନିକୁ କେମିତି ଆଭଏଡ଼ କରିହେବ । ବଢ଼ିଆ ପ୍ଲାନଟିଏ ମୁଣ୍ଡକୁ ଯୁଟିଲା ।

ବଢ଼ିଆ ହୋଟେଲରେ ଆମେ ଦୁହେଁ ଖାଇ ପିଇ ଘରକୁ ଫେରିଲୁ ।

ସୁହାସିନୀକୁ ଘରେ ଛାଡ଼ି ମୁଁ ମିନି ଘରକୁ ଗଲି । ମିନିର ପାପା ମୋତେ ଦେଖି ଆଗେଇ ଆସିଲେ ।

ମୁଁ ଟିକେ ଆପୋଲୋଜି ମାଗିବାକୁ ଆସିଥିଲି ।

• କାହିଁକି ?

ମମିଙ୍କୁ ମୁଁ କହିଥିଲି ମିନିକୁ ଆଜି ରାତିରେ ମୋ ଘରକୁ ନେଇଯିବ । କିନ୍ତୁ……

ଆରେ ସ୍ୟାର୍ ! ଆଜି ତୁମକୁ ସବ୍‌କୁଛି ମାଫ୍ ହୈ ।

ସେଥିପାଇଁ କହୁନ ।

ଓହୋଃ ଡୋଣ୍ଟ ଓ୍ୱରି ।

ଶୁଣ ତ, କ'ଣ କହୁଛି ।

କୁହ !

ସୁହାସିନୀକୁ ସର୍ଦ୍ଦି ହେଲାଭଳି ଲାଗୁଛି । ତେଣୁ ମିନିଙ୍କୁ ନବା ପାଇଁ ମନା କରୁଛି ।

ୟୁ ଆର୍ ରାଇଟ୍ । ମିନି ମଧ୍ୟ ପିଲାଙ୍କ ମେଳରେ ଖେଳରେ ମଜଗୁଲଣି ।

ମୁଣ୍ଡରୁ ବୋଝ ଗଲାଭଳି ଲାଗିଲା ।

ଘରକୁ ଫେରି କବାଟ ବନ୍ଦ କଲି ।

କିନ୍ତୁ ; No ! No !' ପରେ କ'ଣ ହେଲା ମୁଁ କହିବିନି । କେବଳ ତମ ଚଉଠି ରାତି କଥା ତମେ ମନେ ପକାଅ । ପରଦିନ ସକାଳେ କେତେ ସମୟ ପର୍ଯ୍ୟନ୍ତ ବେଲ୍ ବାଜୁଥିଲା ଜଣାନାହିଁ । ମୁଁ ନିଦରେ କବାଟ ଖୋଲିଲି । ସାମନାରେ ପପା ଠିଆ ହୋଇଥିଲେ ।

ଅରେ ପପା । ଆସନ୍ତୁ, ଆସନ୍ତୁ ।

ମୁଁ ଭିତରକୁ ଆସୁନି । ସମୟ ମଧ୍ୟ ନାହିଁ । ମିନି ଏଠିକି ଆସିଛି କି ?

ନାଁ ତ ! କାଲି ସନ୍ଧ୍ୟାରୁ ତା'ର ମୋର ଭେଟ ହୋଇନି ।

କୁଆଡ଼େ ଗଲା କି ?

କେହି ଠିକ୍ ଖବରେ କହି ପାରୁନାହାନ୍ତି ।

ପପାଙ୍କ ଚେହେରା ଦେଖି ମୋ ପେଟ ପାଣି ହୋଇଗଲା ।

ଆପଣ ଚାଲନ୍ତୁ । ମୁଁ ବି ଆସୁଛି । କୁଆଡ଼େ ଗଲା ଦେଖିବା ।

ଯେଉଁ କଲ୍ୟାଣ, ମଣ୍ଡପ ଭଡ଼ାରେ ନିଆ ହୋଇଥିଲା, ସେଠି ମଧ୍ୟ ସମସ୍ତେ ଚୁପ୍ ହୋଇ ବସିଥିଲେ । ମମିଙ୍କ ଆଖି କାନ୍ଦି କାନ୍ଦି ଫୁଲି ଯାଇଥିଲା । ତାଙ୍କୁ ବହୁତ ଜଣ ମହିଳା ଘେରି ବସିଥିଲେ । ଆଉ ଜଣେ ସ୍ତ୍ରୀକୁ ମଧ୍ୟ ଏମିତି ବହୁତ ଜଣ ଘେରି ବସିଥିଲେ । ବୁଝିଲି ପରେ ଜାଣିଲି 'ମମି, ପପା' ଯେଉଁ ସ୍ତ୍ରୀକୁ ମିନିର ଖବର ବୁଝିବାପାଇଁ କହିଥିଲେ ଏଇ ହେଉଛି ସେହି ସ୍ତ୍ରୀ ।

ଏତିକି ବେଳେ ଜଣେ ଖବର ଦେଲା ।

ଜଗା ଭାଇଙ୍କ ସାଙ୍ଗରେ ଜଣେ ଝିଅଟିଏ ଗଲା । ସେ ଟାକ୍ସିରେ ଯିବ ବୋଲି ଜିଦ୍ କରୁଥିଲା ।

ପପା ତାକୁ ପଚାରିଲେ । ସେ କଣ ନାଲି ଫ୍ରକ୍ ପିନ୍ଧିଥିଲା । ସେ ହଁ କହିଲା ।

ପପା ମୋତେ ଜଗା ଭାଇଙ୍କ ଠିକଣା ଦେଇ ଦେଖି ଆସିବାକୁ କହିଲେ ।

ମୁଁ ଠିକଣା ଧରି ବାହାରିଲି । ଟାକ୍ସିରେ ଜଗା ଭାଇଙ୍କ ଘରେ ପହଞ୍ଚିଲି । କିନ୍ତୁ କିଛି ଲାଭ ହେଲା ନାହିଁ ।

କାରଣ ତାଙ୍କ ସାଙ୍ଗରେ ଯେଉଁ ଝିଅଟି ଆସିଥିଲା ସେ ତାଙ୍କର ପଡ଼ୋଶୀ ଘରର । ଯେମିତି ମିନି ମୋ ପାଖରେ ରହୁଥିଲା ସେମିତି ସେ ଜଗାଭାଇଙ୍କ ପାଖରେ । ମୁଁ ଫେରି ଆସିଲି ।

ସମସ୍ତେ ମୋର ବାଟକୁ ଚାହିଁ ରହିଥିଲେ । ଦୂରରୁ ଲୋକଙ୍କ ଚେହେରା ଦେଖିଲି ଜାଣି ମିନି ଏପର୍ଯ୍ୟନ୍ତ ମିଳିନି । ଫେରିବା ସମୟରେ ଯେଉଁ ଟାକ୍ସିରେ

ଆସିଥିଲି, ସେ ଟାକ୍‌ସିବାଲା ଏକନମ୍ବର ଗପୁଡ଼ି ଥିଲା । ପିଲ୍ଗୁଡ଼ିକ କପରେ ହଜଲ୍ନ, ତାଙ୍କୁ କେଉଁଠି ଖୋଜିବ, ନ ମିଳିଲେ କ'ଣ କରିବ, ଏମିତି ଦୁନିଆ କଥା ମୋତେ କହିଲା । ସେଥିରୁ ଦୁଇଟି ମହତ୍ତ୍ୱପୂର୍ଣ୍ଣ ଘଟଣା ମୋତେ ଜଣାପଡ଼ିଲା । ପ୍ରଥମେ ପୁଲିସ୍‌ରେ ଖବର ଦେବାକୁ ହେବ । ଦ୍ୱିତୀୟରେ ସରକାରୀ ଡାକ୍ତରଖାନାରେ ବୁଝିବାକୁ ହେବ ।

ମୁଁ ଖାଲି ହାତରେ ଫେରିଛି ଶୁଣି ମମି ପୂର୍ଣ୍ଣଥରେ ବେହୋସ ହୋଇଗଲେ ।

ପୁଲିସ୍‌ରେ ଖବର ଦେବାପାଇଁ ମୋ' ଫେରିବା ପୂର୍ବରୁ ତାଙ୍କୁ କେହି ଜଣେ କହିଥିଲେ ।

ପୁଲିସ୍‌ରେ ଖବର ଦେବା ମାନେ ଫଟୋ ଦରକାର ।

ଫଟୋପାଇଁ ମୁଁ ଓ ପପା' ତାଙ୍କ ଘରକୁ ବାହାରିଲୁ ।

ବାଟରେ ଆମେ ଦୁହେଁ ଚୁପ୍ ହୋଇ ବସିଥିଲୁ । ପପା ତାଙ୍କ ଦୁଃଖରେ ମଗ୍ନ ଥିଲେ । ଦୁଃଖି ମୁଁ ମଧ୍ୟ ଥିଲି ; କିନ୍ତୁ ମୋ ମନର କୌଣସି ଏକ କଣରେ ସେ ଦୁଃଖଟି ପଲୁଥିଲା । ଯେଉଁଳା ନାହିଁ ପପାଙ୍କ ମନରେ ନଥିବ । କାରଣ ନିଜକୁ ମୁଁ ଅପରାଧୀ ଭାବୁଥିଲି । କାଲି ଯଦି ମିନିକୁ ମୋ ଘରକୁ ଆଣିଥାନ୍ତି, ରାତିରେ ସେ ମୋ ପାଖରେ ଶୋଇଥାନ୍ତା, ତାହାହେଲେ ସେ କ'ଣ ହଜିଥାନ୍ତା ?

ପପାଙ୍କ ଘରଭିତରକୁ ଆମେ ଗଲୁ । ମିନିର ଫଟୋଥିବା ଆଲବମଟି ତାଳା ଉପରେ ଥିବା ସୁଟ୍‌କେଶ ଭିତରେ ଥିଲା । ତୋଳା ତଳେ ସାତ ଆଠଟା ଗଦି, ତା' ଉପରେ ତା' ଉପରେ ରଖା ଯାଇଥିଲା । ପପା କୋଡା ସହ ଗଦି ଉପରକୁ ଚଢ଼ି ଯାଇ ସୁଟ୍‌କେଶ ଖୋଲି ଆଲବମଟା କାଢ଼ିଲେ । ମିନିର ଫଟୋଟା ଆଲବମ୍‌ରୁ କାଢ଼ି ଆମେ କବାଟ ବନ୍ଦକରି ଫେରିଆସିଲୁ ।

ସ୍ତ୍ରୀକୁ ଦେଖା କରିବେ ବୋଲି କହୁଥିଲେ ।

ଆରେ ଭୁଲିଗଲି ।

ମୁଁ ମୋ ଘରଭିତରକୁ ପଶି ପୁତ୍ରାସିମାନଙ୍କୁ ସବୁ କଥା କହିଲି । ଫଟୋଧରି ଆମେ ଦୁହେଁ କଲ୍ୟାଣମଣ୍ଡପ ଫେରିଲୁ ।

କଲ୍ୟାଣ ମଣ୍ଡପରେ ବିବାହବେଦୀରେ ଧାର୍ମିକ ବିଧିମାନ ଚାଲିଥିଲା ; କିନ୍ତୁ ଏସବୁ ରୁଟିନ୍ ଚାଲିଲା ଭଳି ଚାଲିଥିଲା । କାରଣ ଏସବୁ ମଙ୍ଗଳ କାର୍ଯ୍ୟରେ ଯେଉଁ ଉତ୍ସାହ ଥାଏ, ଆବେଗ ଥାଏ, ତାହା ନ'ଥିଲା । କୌତୁକ ନ ଥିଲା । ସମସ୍ତେ ମନମାରି ବସିଥିଲେ । ସବୁ କାମ ଚାଲିଥିଲା, କିନ୍ତୁ ଆତ୍ମାବିହୀନ ଯନ୍ତ୍ର ମାନବ ଭଳି ।

ପପା ଥକି ଯାଇଥିଲେ । ମେ ଦୁଃଖରେ, ଗ୍ଲାନିରେ ସେଇଠି ଗୋଟିଏ ଚଉକିରେ, ବସିପଡ଼ିଲେ । ସକାଳୁ ପେଟରେ ଦାନାଟିଏ ବି ପଡ଼ିନଥିଲା ।

ମୁଁ ମଧ କିଛି ଖାଇ ନଥିଲି । କିଏ ଜଣେ ମୁଣ୍ଡ ଖର୍ଚ୍ଚ କରି ଦୁ'ଟା କଦଳୀ ଓ ସେଓ ପପାଙ୍କୁ ଦେଲେ ।

ମୁଁ ଖାଇ ପାରିବି ନାହିଁ କହି ପପା ଫଳଗୁଡ଼ିକ ଦୂରକୁ ଠେଲି ଦେଲେ । ପପାଙ୍କ ସମ୍ପର୍କୀୟ ବୁଢ଼ୀ ଜଣେ ତାଙ୍କ ପାଖରେ ବସି ଜବର ଦସ୍ତିରେ ତାଙ୍କୁ ଖୁଆଇଲେ । ବୁଢ଼ା ବୁଢ଼ୀମାନେ ଏହି ସମୟରେ ବହୁତ କାମରେ ଆସନ୍ତି ।

× × × × ×

ମିନି ହଜିଗଲା ସେତେବେଳେ ଆପଣ କେଉଁଠି ଥିଲେ ।

ପୁଲିସ ଅଫିସର ମୋତେ ପଚାରୁ ଥିଲେ ।

ମୁଁ ମୋ ଘରେ ଥିଲି ।

ଘରେ କ'ଣ କରୁଥିଲେ ?

କାହିଁକି ?

ଯାହା ପଚାରୁ ଯାଉଛି ଉତ୍ତର ଦିଅ ।

ମିନିର ହଜିବା ସହ ଏ ପ୍ରଶ୍ନର ସମ୍ବନ୍ଧ ଥିଲା ଭଳି ଲାଗୁନି ।

ସେ କଥା ପୁଲିସ ଡିପାର୍ଟମେଣ୍ଟ ଚିନ୍ତା କରିବ ।

ମୁଁ ଏ ପ୍ରଶ୍ନର ଉତ୍ତର ଦେଇ ପାରିବି ନାହିଁ । ମୁଁ ରାଗି ଯାଇ କହିଲି ।

କାହିଁକି ?

This is harashment.

ଏତେ ସମୟ ପର୍ଯ୍ୟନ୍ତ ଚୁପ୍ ଚୁପ୍ ବସିଥିବା ଆଉ ଜଣେ ଅଫିସର କହିଲେ—"ଦେଖନ୍ତୁ । ଆପଣମାନେ ପୋଲିସକୁ ଯଦି ସହଯୋଗ କରିବେ, ସେଥିରେ ଆପଣଙ୍କର ହିଁ ଫାଇଦା ଅଛି ।"

ମୁଁ ଘରେ ଥିଲି ।

କିନ୍ତୁ ଘରେ କ'ଣ କରୁଥିଲେ । ସତ କହିଲେ ଆପଣଙ୍କର ଫାଇଦା ହେବ ।

ମୋ ସ୍ତ୍ରୀ ପାଖରେ ଶୋଇଥିଲି—Are any more details necessary ! ମୁଁ ଚିଡ଼ିଗଲି ।

That's allright.

ଯୋଉ ଝିଅଟି ହଜଛୁ ତା'ର ଉଚ୍ଚତା କୁହନ୍ତୁ ।

ମୁଁ ଭାବିଲି ଏ ତ ଅଡ଼ୁଆ କଥା ହେଲା । ତଥାପି କହିଲି । ଠିକ୍ କହିପାରିବି ନାହିଁ—ଅନ୍ଦାଜରେ..।

ଦେଖିଲେ ତ ଏମିତ ଥାଏ । ତମ ହାତ କାନ୍ଧରେ ପିଲା ଖେଳୁଛି । ଅଥଚ ତା' ଉଚ୍ଚତା କହି ପାରିବେନି ?

ମୋ ସହିତ ସୀମା ମଧ୍ୟ ଯାଇଥିଲା । ମୁଁ କହିଲି ।

ଆଚ୍ଛା ମୁଁ ଆପଣଙ୍କୁ ପ୍ରଶ୍ନଟିଏ ପଚାରି ପାରେ କି ?

ପଚାରନ୍ତୁ ।

Are you married ?

Yes .

Any issue.

ଗୋଟିଏ ପୁଅ ଅଛି ।

ଆପଣ ତା' ଉଚ୍ଚତା କହିପାରିବେ ?

Nonsense. ତୁମ ଝିଅ ଭଳି ମୋ ପୁଅ ହଜନି ।

ମୁଁ ମଧ୍ୟ ଚଡ଼ିଯାଇ କହିଲି । ହଜ ନାହିଁ ବୋଲି ତ କହୁଛି । ଉଚ୍ଚତା ମାପି ରଖିଥାନ୍ତୁ । ଦରକାର ବେଳେ କାମରେ ଆସିବ ।

ପରିବେଶ ଗରମ ହେଉଛି ଦେଖି ଡ୍ୟୁଟିରେ ଥିବା ଅଫିସର ଜଣଙ୍କ କିଛି କହିବାକୁ ଯାଉଥିଲେ ।

ମତେ ବୁଝାନ୍ତୁନି । ଆପଣଙ୍କ ବନ୍ଧୁଙ୍କୁ ମଣିଷ ପଣିଆ ଶିଖାନ୍ତୁ । ଆଇନ୍ ଶିଖାନ୍ତୁ ନାହିଁ । କାରଣ ଆଇନ୍‌କାନୁନ୍, ପୁଲିସ ଡିପାର୍ଟମେଣ୍ଟ କପର ଓ କେତେଦୂର ପାଳନ କରୁଛି ସେକଥା ମତେ ଭଲ ଭାବରେ ଜଣା । Teach him how to be have.

ଆପଣ ଏମିତ ଗରମ ହେଲେ ଚଳିବ ।

ଗରମ ହେବନି । ସକାଳୁ ଝିଅଟିଏ ହଜଛି । ଆମେ ସମସ୍ତେ ଟେନ୍‌ସନରେ ଅଛୁ । ସେ କଥା କ'ଣ ଆପଣମାନେ ବୁଝୁଛନ୍ତି । ଯାହା ନାହିଁ ତାହା ପ୍ରଶ୍ନ ପଚାରୁଛନ୍ତି । ଜଣେ ସାଧାରଣ ନାଗରିକ ଭାବରେ ଆପଣଙ୍କ ସାହାଯ୍ୟ ପାଇବା

ପାଇଁ ଆସିଥିଲି । ନା···ଆଉ ନୁହେଁ । କଥାଟା ଉପର ମହଲକୁ ନବାକୁ ହେବ । ଫୋନଟା ଦେଲେ । କମିଶନରଙ୍କୁ ଫୋନ କରେ । ମୁଁ ଫାଙ୍କା ଗୁଳିଟିଏ ଫୁଟେଇ ଦେଲି ।

ସେଇଟା କିନ୍ତୁ କାଉଁର କାଠି ଭଳି କାମ କଲା ।

× × × ×

ସନ୍ଧ୍ୟା ସାତଟାରେ ମୁଁ ଘରକୁ ଫେରିଲି । ମୋ ବାଟ ଚାହିଁ ଚାହିଁ ସୁହାସିନୀ ବୋର୍ ହୋଇ ଯାଇଥିଲା । ତାକୁ ସବୁ କଥା କହିଲି । ମୋ ମନସ୍ଥିତିକୁ ସେ ବୁଝିଥିଲା । ମିନକୁ ମୁଁ କେତେ ଭଲ ପାଉଥିଲି ସେ ଜାଣିଥିଲା । କାରଣ ମିନ ସହ ତାର ପରିଚୟ ନ ଥିଲେ ମଧ୍ୟ ମୁଁ ଯେଉଁ ଚିଠି ସବୁ ଲେଖୁଥିଲି ସେଥିରୁ ଅଧା ମିନ ସହିତ ମୋର ସମସ୍ତ କପର କଟୁଥିଲା, ସେ ବିଷୟ ଥିଲା ।

ଗ୍ୟାଲେରୀରେ ଚଉକି ପକେଇ ମୁଁ ଆକାଶକୁ ଚାହିଁ ରହିଥିଲି ।

କେତେବେଳ ଯାଏ ବସିଛି ଜାଣି ନାହିଁ । ସୁହାସିନୀ ପଛରୁ ଆସି ମୋ ବେକରେ ହାତ ଛନ୍ଦିଦେଲା ।

ଚାଲ ବାହାରକୁ ଯିବା । ଏଠି ବସି ବସି ଦୁନିଆ କଥା ଭାବିବ ।

ସୁହାସିନୀର ସେ ସ୍ପର୍ଶରେ ମୁଁ ହଠାତ୍ କାନ୍ଦି ପକେଇଲି । ସେଇ ମୁହୂର୍ତ୍ତରେ ମୋର ମିନ କଥା ବେଶି ମନେ ପଡ଼ିଲା । ଆଜି ଏତେ ବର୍ଷ ପରେ ମଧ୍ୟ ବେଳେ ବେଳେ ସେ କଥା ମନେ ପଡ଼ିଲେ ମୋତେ ଆଶ୍ଚର୍ଯ୍ୟ ଲାଗେ । ସୁହାସିନୀ ମୋତେ ସ୍ତିରମାସ ପରେ ଭେଟୁଥିଲା । ଗତ ରାତିଟା ମୁଁ ଉଙ୍ଗୀବ ମନ୍ତ୍ରିରେ କଟେଇଥିଲି । କାଲି ଏହି ସମୟରେ ସେ କଲିକତାରୁ ଫେରିଥିଲା । ଯାହାକୁ ମୁକ୍ତ ସ୍ପର୍ଶ କୁହନ୍ତି । ସେ ସ୍ପର୍ଶ ସୁଖକୁ ମୁଁ ରନ୍ଧ୍ରେ ରନ୍ଧ୍ରେ ଅନୁଭବ କରିଥିଲି । ବାର ଘଣ୍ଟା ପରେ ସେହି ସୁହାସିନୀ ମୋ ବେକରେ ହାତ ଛନ୍ଦି ଠିଆ ହୋଇଥିଲା ।

ମୋ କାନ୍ଦିବା ଦେଖି ମୋ ମୁଣ୍ଡକୁ ଟାଣି ଆଣି ତା' ଗ୍ରୀବା ଉପରେ ଚାପି ଧରିଲା । କିନ୍ତୁ ସେ କ୍ଷଣରେ ମଧ୍ୟ ମୋର ମିନ କଥା ମନେ ପଡ଼ୁଥିଲା । ବାସ୍ତବିକ ସେହି ସୁହାସିନୀ, ସେହି ସ୍ପର୍ଶ, କିନ୍ତୁ ମନେ ପଡ଼ୁଥିଲା ମିନ ।

ମିଥେ ମିଥେ କାନ୍ଦିଲି, କହୁଥିବା ମିନ ।

ମୁଁ ଜୋର୍‌ରେ କାନ୍ଦିଲି । ମନେ ପଡ଼ିଗଲା ପରେ ପରେ 'ଧିଲେ ଧିଲେ' କହୁଥିବା ମିନ ବର୍ତ୍ତମାନ କେଉଁଠି ଥିବ ? ସୁହାସିନୀ ଜୋର୍ ଦେଇ ମତେ

ବାହାରକୁ ଟାଣି ନେଲା ; କିନ୍ତୁ କେଉଁଥିରେ ମୋର ମନ ଲାଗୁ ନ ଥିଲା । ଗୋଟିଏ ବଗିଚାରେ ଆସି ବସିଲୁଁ । ସେଠାରେ ଅନେକ ଛୋଟ ଛୋଟ ଖେଳୁଥିବା ପିଲାଙ୍କୁ ଦେଖି ମିନା କଥା ବେଶି ମନେ ପଡ଼ିଲା ।

ଅନେକ ସମୟ ପର୍ଯ୍ୟନ୍ତ ସେମିତି ବସି ରହିଲୁ ।

ସୁହାସିନୀ ପ୍ରଥମ ଥର ପାଇଁ କାଲି ଘରକୁ ଆସିଲା ।

ତା' ନୂଆ ସଂସାରର ଆରମ୍ଭ ଏଭଳି କାହିଁକି ?

ମନ ସ୍ଥିର କରିବାକୁ ହେବ । ମିନା ନିଶ୍ଚୟ ମିଳିବ ।

ଏମିତି କିଛି ହେଲେ ମନରେ ଅବସ୍ଥରଗୁଡ଼ିକ ପ୍ରଥମେ ପ୍ରବେଶ କରନ୍ତି । ସେଥିରେ ଆମେ ଅଧମରା ହେଉ । ସେଠୁ ଉଠିଲୁ । ସୁହାସିନୀର ହାତ ଧରି ହୋଟେଲକୁ ଗଲୁ । ଖାଇ ସାରି ଫେରିଲାବେଳେ ତା' ପାଇଁ ଗଜରାଟିଏ କିଣିଲୁ । ଦଶଟା ସମୟରେ ଘରେ ପହଞ୍ଚିଲୁ ।

ମିନାଘରେ କାନ୍ଦ ବୋବାଳି ପଡ଼ିଥିଲା ।

ଆମେ ଦୁହେଁ ଦଉଡ଼ି ତାଙ୍କ ଘରକୁ ଗଲୁ । ଭୁକୁ ଫଟା କାନ୍ଦଣା ଶୁଭୁଥିଲା । ମମି ବେହୋସ ହୋଇ ପଡ଼ିଥିଲେ । ପପା ତାଙ୍କ ମୁଣ୍ଡ ପିଟୁଥିଲେ । କୁଣିଆମାନେ ସ୍ତବ୍ଧ ହୋଇ ବସିଥିଲେ । ପିଲାଗୁଡ଼ିକ ବଲ ବଲ ହୋଇ ଚାହିଁଥିଲେ । ମତେ ଦେଖିବା ମାତ୍ରେ ପପା ମତେ କୁଣ୍ଢେଇ ହୋ-ହୋ ହୋଇ କାନ୍ଦି ଉଠିଲେ । ପୁରା ଘର ଭିତରେ ଗଦିଗୁଡ଼ିକ ଇତସ୍ତତ ହୋଇ ପଡ଼ିଥିଲା । ତାଳାତଳେ ଥିବା ସବା ତଳ ଗଦିରେ ମିନାର ନିଶ୍ଚଳଶରୀରଟି ପଡ଼ି ରହିଥିଲା ।

ମମି ହୋସରେ ଆସି ପୁଣି ଛାତି ପିଟି କାନ୍ଦି କାନ୍ଦି କହିଲେ—ମିନାକୁ ମୁଁ ମାରିଲି । ତାକୁ ଅନ୍ୟଙ୍କ ହାତରେ ଛାଡ଼ି କାହିଁକି ଗଲି । ଯେଉଁ ସ୍ତ୍ରୀଟି ମିନାର ଦାୟିତ୍ୱ ନେଇଥିଲା ସେ ମଧ୍ୟ ସେମିତି ଛାତି ପିଟି କାନ୍ଦୁଥିଲା ।

ଯେଉଁ ଲୋକ ସକାଳୁ ତରବରରେ ଗଦି ଉପରେ ଗଦି ପକେଇ ତାଳାତଳେ ଖଞ୍ଜି ଥିଲା ତା' ଅବସ୍ଥା ସବୁଠୁ ଅସମ୍ଭାଳ ଥିଲା । ନିଦବାଉଳାରେ ହେଉ ବା ଦେଖି ପାରିନି, ସକାଳୁ ତରବରରେ ସାତ ଆଠଟା ଗଦି ମିନା ଶୋଇଥିବା ଗଦି ଉପରେ ପକେଇ ଦେଇ ଥିଲା ।

ପପା ପାଗଳ ଭଳି ନିଜକୁ ଦୋଷ ଦେଉଥିଲେ ।

ମିନାକୁ ମୁଁ ମାରିଲି, ମୁଁ । କେବଳ ଗଦି ଓଜନରେ ସେ ମରିନି । ତାହାକୁ ଫଟୋ କାଢ଼ୁଥିବା ବେଳେ ମୁଁ ଘୃଣ୍ଡାଳ ଜୋତାସହ ଗଦି ଉପରେ ଚଢ଼ିଥିଲି । ମୋର ଝିଅର ଫଟୋ ମୁଁ ତା' ଦେହ ଉପରେ ଠିଆହୋଇ କାଢ଼ିଥିଲି । I am a murderer···I am a murderer ।

ପପା ବୃଦ୍ଧଜଣଙ୍କ ମେଳରେ ନିଜକୁ ଖୁନୀ କହିବାର ସତ୍ ସାହସ ତମ ପାଖରେ ଅଛି । ମୋ ପାଖରେ ତାହା ମଧ୍ୟ ନାହିଁ । ପନ୍ଦର ଦିନ ପରେ ତମେ ଏ ଘର ଛାଡ଼ି ଚାଲିଗଲ । ତମେ ଯିବ ବୋଲି ମୁଁ ଅନ୍ଦାଜ କରିଥିଲି । ଗଲାବେଳେ ତମେ ମୋତେ ଦେଖା କରିବାକୁ ଆସିଲ, ସେତିକି ବେଳେ "ମୁଁ ହିଁ ଖୁନୀ" କହିବା ମୋ ପକ୍ଷରେ ସମ୍ଭବ ହେଲାନାହିଁ । ସତ କଥା ତମେ ଜାଣିନ । ମମି ନିଜକୁ ଦୋଷ ଦେଉଛନ୍ତି । ତମେ ନିଜକୁ ଖୁନୀ କହୁଛ । କିନ୍ତୁ ପ୍ରକୃତ ଖୁନୀ ମୁଁ, ତମର ମୋର ମିନି ସୃଷ୍ଟିକ ଘଡ଼ରେ ମୋ ପାଖରେ ଶୋଇଥାନ୍ତି । ଯେତେବେଳେ ମୁଁ ତମକୁ ମିଛ କଥା କହିଲି, ମିନିକୁ ଅଭିଏଡ଼ କଲି, ତୁମର ଓ ମୋ ମିନିର ଖୁନୀ ମୁଁ ପପା' ତୁମକୁ ଏସବୁ କହିଥିଲେ ଭଲ ହୋଇଥାନ୍ତା । ବର୍ତ୍ତମାନ ତମେ କେଉଁଠି ଅଛ '

ପନ୍ଦର ବର୍ଷ ହେଲାଣି, ଆମର ଦେଖା ସାକ୍ଷାତ୍ ନାହିଁ । ବର୍ତ୍ତମାନ ମୁଁ ଏସବୁ ତୁମକୁ କହିବାକୁ ଚାହୁଁଛି । ପନ୍ଦର ବର୍ଷ ତଳେ ଏଭଳି ଧୈର୍ଯ୍ୟ ନଥିଲା ।

ଆଜି କିନ୍ତୁ ଅଛି ।

ପପା ! ପନ୍ଦର ବର୍ଷରେ ମୋ ଘରେ କ'ଣ ସବୁ ଘଟିଲା କହିବ ?

କିଛି ଘଟିନି ନାହିଁ ।

ହଁ ପପା । କିଛି ବୋଲି କିଛି ଘଟିନି ।

ଏ ଘରେ ଫୁଲ ଫୁଟିନି, ଫୁଟିବା ଆଶା ମଧ୍ୟ ନାହିଁ ।

ସବୁ ପ୍ରକାର ମେଡ଼ିକାଲ ଟେଷ୍ଟ ମଧ୍ୟ ସରିଗଲାଣି ।

ଆମ ଦୁହିଙ୍କର କୌଣସି ଶାରୀରିକ ଦୋଷ ନାହିଁ ।

ଲୋକମାନେ ତର୍କ ବିତର୍କ କରୁଛନ୍ତି ।

ଡାକ୍ତରମାନେ ପରୀକ୍ଷା ନିରୀକ୍ଷା ଚଳେଇଛନ୍ତି । ଆମେ ଦେହ ଓ ପକେଟ ଉପରେ ମଧ୍ୟ । ଏଥିକରେ ଏସବୁ ବନ୍ଦ ହେଲା ଭଳି ଲାଗୁ ନାହିଁ । କାରଣ ଏଥର ଆମ ମନ ଉପରେ ଟ୍ରିଟ୍‌ମେଣ୍ଟ ଆରମ୍ଭ ହେବ ।

ଆଜିକାଲି ମୁଁ ଫୁଲ ସ୍ପିଡ଼୍‌ରେ ଫ୍ୟାନ ଚଳେଇ ଘଣ୍ଟା ଘଣ୍ଟା ଧରି ଆରାମ ଚୌକିରେ ବସି ଶୂନ୍ୟକୁ ଚାହିଁ ରହୁଛି ।

ସମସ୍ତେ କହିଲେଣି ।

ପିଲା ପିଲା ହେଉ ନାହାନ୍ତି ବୋଲି, ମୋର ମସ୍ତିଷ୍କ ଭ୍ରମ ହେଲାଣି । ତାଙ୍କ କଥା କିଛି ଅଂଶରେ ସତ ହୋଇପାରେ, ମୋର ପିଲା ପିଲା କାହିଁକି ହେଉନାହାନ୍ତି ?

ସେ ପ୍ରଶ୍ନର ଉତ୍ତର ଅନ୍ୟମାନଙ୍କ ପାଖରେ ନାହିଁ ; କିନ୍ତୁ ମୋ ପାଖରେ ଅଛି । ଶ୍ରେଷ୍ଠ ଶ୍ରେଷ୍ଠ ଅଭିଶାପ ଦେବଶିଶୁ ପିଲାକୁ ଘରୁ ଯେ ତଡ଼ିଦିଏ, ତାକୁ ଅଭିଏଡ଼ କରେ ତା' ଘରେ ବସନ୍ତ ଋତୁ କିପରି ହସିବ କହିଲେ ?

●

# କ୍ୟାଲେଣ୍ଡର

ଖୋଲା ଦରଜା ଦେଇ ରଞ୍ଜୁ ଓରଫ ଭଜା ମୋ ଘର ଭିତରକୁ ପଶି ଆସିଲା । ମୋ ହାତକୁ ଏତେ ଆବେଗରେ ଟାଣିଲା ଯେ, ପିଲାଦିନେ ମୁଁ ଯଦି ଟିକେ କସରତ୍ କରି ନ'ଥାନ୍ତି ତା'ହେଲେ ମୋ ହାତଟି କାନ୍ଧରୁ ଖସି ଯାଇଥାନ୍ତା । ମୁଁ ବୋକାଙ୍କ ଭଳି ତା' ଆଡ଼କୁ ଅନେଇ ରହିଲି । ସେ କିନ୍ତୁ ମୋ ଆଡ଼କୁ ନ ଚାହିଁ, ମତେ ଟାଣି ଟାଣି ବାହାର ଘରକୁ ନେଲାବେଳେ କହିଲା—

"ବାହାରେ କିଏ ଆସିଛନ୍ତି ଦେଖ୍ ।"

ସେତେବେଳକୁ ମୁଁ ବାହାର ଘରେ ପହଞ୍ଚି ସାରିଥିଲି ଓ ସେଠାରେ ଠିଆ ହୋଇଥିବା ବ୍ୟକ୍ତିକୁ ଦେଖି ସ୍ଥାଣୁ ପାଲଟିଗଲି । ସେତିକିବେଳେ ରଞ୍ଜୁ ମୋ କାନରେ କହିଲା—

"ତାଙ୍କୁ ବସିବାକୁ କହ ।"

"ରଞ୍ଜୁ ! ମତେ ଚିମୁଟିଲୁ ।"

ରଞ୍ଜୁ ଜୋରରେ ଚିମୁଟି ଦେଲା । ମୁଁ ଯନ୍ତ୍ରଣାରେ ଚିତ୍କାର କଲି । ତଥାପି କହିଲି "ବିଶ୍ୱାସ ହଉନି !"

"କ'ଣ କଲେ ବିଶ୍ୱାସ କରିବୁ ?" କହି ରଞ୍ଜୁ ଦିଆସିଲି କାଠିଟିଏ ବାହାର କରି ଜଳେଇଲା । ମୁଁ ଭିତର ଘରକୁ ପଶିଗଲି । କାଠି ଫୋପାଡ଼ି ସେ ମୋ ପଛେ ପଛେ ଆସି କହିଲା — "ଆରେ ତାଙ୍କୁ ଟିକେ ବସିବାକୁ ମଧ୍ୟ କହିଲୁ ନାହିଁ । ଏଇ ତୋର ଭଦ୍ରାମି ?"

"ଆଗ ଅଣ୍ଡାପାଣି ବାଲ୍ଟିଏ ମୁଣ୍ଡରେ ଢାଳି ସାରେ । ଟିକେ ହୋସ ଆସିଲେ ଗୃହସ୍ଥଧର୍ମ ପାଳନ କରିବି ।"

"ତୁ ଏ ସବୁ କରିବୁ ବୋଲି ମୁଁ ଜାଣିଥିଲି । ତେଣୁ ତାଙ୍କୁ ମଧ୍ୟ ସେହି କଥା କହିଥିଲି । ତୋ ତରଫରୁ ମୁଁ ତାଙ୍କୁ ସ୍ୱାଗତ କରି ବସିବାକୁ କହୁଛି । ତୁ ମୁଣ୍ଡରେ ଅଣ୍ଡାପାଣି ଢାଳ ନ ହେଲେ ବାଲ୍ଟିଏ ପାଣିରେ ମୁଣ୍ଡ ପୂରା । ଯାହା କରୁଛୁ କର । ହୋସ ଆସିଲେ ବାହାରକୁ ଆସିବୁ । କିନ୍ତୁ ଶିଘ୍ର ଆସିବୁ । ମୋ ପାଖରେ ସମସ୍ତ କାମ୍ ।"

"କାହିଁକି ?"

"ଆରେ ତାକୁ ଏମିତି ବେଶୀ ସମୟ ବୁଲାଇବା ଭଲ ନୁହେଁ ।" ରାଜୁ ବାହାର ଘରକୁ ଗଲା । ମୁଁ କିନ୍ତୁ ସେଠି ସେମିତି ଠିଆ ହୋଇ ରହିଲି । ସତ ଓ ମିଛ ଭିତରେ ଚାରି ଆଙ୍ଗୁଳିର ଫାଙ୍କ ଥାଏ ବୋଲି କୁହନ୍ତି । ଏଠି କିନ୍ତୁ ସେସବୁ କିଛି ଶୁଣିବାର ପ୍ରଶ୍ନ ଉଠୁ ନ ଥିଲା । ସ୍ୱ-ଚକ୍ଷୁରେ ମୁଁ ସେ ସୁନ୍ଦରୀଙ୍କୁ ମୋର ଘରେ କିଛିକ୍ଷଣ ପୂର୍ବରୁ ଦେଖିଥିଲି । ତଥାପି ମୁଁ ବିଶ୍ୱାସ କରିପାରୁ ନ ଥିଲି । କେମିତି ବିଶ୍ୱାସ କରିବି ? ଆପଣମାନେ କହିଲେ ଦେଖି ? ନୂତନ ବର୍ଷ ଆରମ୍ଭ ହୋଇ ମାତ୍ର ଚାରିମାସ ହୋଇଥିଲା । ଚାରିମାସ ପୂର୍ବରୁ ଘରେ ଘରେ ନୂଆ କ୍ୟାଲେଣ୍ଡର ମାନ କାନ୍ଥରେ ଝୁଲିଥିଲା । ବ୍ରତାବ୍ରତୀମାନେ ସେ କ୍ୟାଲେଣ୍ଡରର ତାରିଖଗୁଡ଼ିକ ଭଲ ଭାବରେ ଦେଖିଲେ । ପୂର୍ଣ୍ଣିମା, ଚତୁର୍ଥୀ, ସଂକ୍ରାନ୍ତି ଓ ପଞ୍ଚପର୍ବାଣୀ ଇତ୍ୟାଦିର ସଠିକ୍ ବିବରଣୀମାନ ଅଛି କି ନା ଦେଖିଲେ । ସୁଦକ୍ଷ ଗୃହିଣୀମାନେ ତାରିଖ ତଳପଟେ କେତେ ଜାଗା ଛଡ଼ାଯାଇଛି ତାହା ଦେଖିଲେ । କାରଣ ସେଥିରେ ଦୈନିକ ଖର୍ଚ୍ଚର ହିସାବ କିତାବ ଲେଖା ଯାଇପାରିବ କି ନାହିଁ—ତା'ର ହିସାବ କଲେ । ଚାକିରିଆମାନେ ରବିବାର ଛଡ଼ା ନାଲି ତାରିଖଗୁଡ଼ିକ କେଉଁ ମାସରେ ବେଶି ଅଛି, ସେ ଅନୁସାରେ କେଉଁ ମାସରେ ଅଧିକ ଛୁଟି ନେଇ ହେବ ସେ ସବୁର ହିସାବ କରି ନିଜ ପାଇଁ ନୂଆ କ୍ୟାଲେଣ୍ଡର ପ୍ରସ୍ତୁତ କଲେ । ମୁଁ ? ମୁଁ, କିନ୍ତୁ ରାଜୁ ଘରେ ଟଙ୍ଗା ହୋଇଥିବା ନୂଆ କ୍ୟାଲେଣ୍ଡର ଦେଖି ବରଫ ପାଲଟିଗଲି । କ୍ୟାଲେଣ୍ଡ ଅପେକ୍ଷା କ୍ୟାଲେଣ୍ଡରରେ ଥିବା ସୁନ୍ଦରୀଙ୍କୁ ଦେଖି । ହାତରେ ଟ୍ରାନ୍‌ଜିଷ୍ଟର ଧରି ଠିଆ ହୋଇଥିବା ଏ ସୁନ୍ଦରୀଙ୍କୁ ଦେଖି ମୁଁ କହିଲି --"ରାଜୁ ଆଜିଠୁ ତୋ ଘରକୁ ରୋଜ ମତେ ଆସିବାକୁ ହେବ । ତାହା ଯଦି ତୁ ଚାହୁଁନୁ ତା'ହେଲେ ଏ କ୍ୟାଲେଣ୍ଡର ମତେ ଦେଇ ଦେ ।"

"କ୍ୟାଲେଣ୍ଡର ତଳେ ଥିବା ତାରିଖଗୁଡ଼ିକ ଚିରି ନେଇ ଯା ।" ରାଜୁ କହିଲା । ଏ କ୍ୟାଲେଣ୍ଡର ମତେ ଦେଇଥାନ୍ତି ; କିନ୍ତୁ ରୋଜ ତୋ ଘରକୁ ଯିବାପାଇଁ ମୋର ସମୟ ନାହିଁ । ତୁ' ଆସିବାଦ୍ୱାରା ମତେ ଯାହା କଷ୍ଟ ହବ ତାହା ପଛେ ମୁଁ ସହିଯିବ ।"

"ମୁଁ ତ ନିଶ୍ଚୟ ଆସିବ । କି ଫିଗର ହୋଇଛି ଦେଖିଲୁ । 'ଅପନା ତୋ ଜାନ୍ ନିକଲ୍ ଗୟି ୟାର୍ ।"

ରାଜୁ ସ୍ତ୍ରୀକୁ ଉଦ୍ଦେଶ୍ୟ କରି ବଡ଼ ପାଟିରେ ପଚାରିଲା—

"ମୁଁ ରୋଜ ଆସିଲେ ଚଳିବ ତ ଭାଉଜ ।"

କାନରେ ହାତ ପୋଛୁ ପୋଛୁ ଭାଉଜ ବାହାରକୁ ଆସି କହିଲେ, "ସେ ସୁନ୍ଦରୀ କଥା ଛାଡ଼ । ତା' ଶାଢ଼ି ଦେଖ ! ଦୁଇ ହଜାର ଟଙ୍କା ଦେଲେ ବି

ଏମିତି ଶାଢ଼ି ମିଳିବ ନାହିଁ ।'' ସେତିକି ବେଳେ ରାଜୁ ମୋ କାନରେ କହିଲା— ''ତାକୁ କହ ତମେ ଶାଢ଼ି ଦେଖ । ଆମେ ଡ୍ରଇଂରୁମ୍‌ରେ ଶାଢ଼ୀ ଦେଖିବା ।'' ମୁଁ ଜୋର୍‌ରେ ହସିଲି । ସ୍ୱପନ ରାଜୁକୁ ଆଖି ଦେଖେଇ ମତେ ପଚାରିଲେ—''କିଛି ଗୋଟେ ଫାଇଲରୁ ଜୋକ୍ କରିଥିବେ । ''ନା, ନା, କହିଲି ତେଲି ଆସିଲେ ଚଳିବ ।''

''ତମେ ମଧ୍ୟ ତାଙ୍କର ଭଳି ।'' କହି ସ୍ୱପନ ଭିତରକୁ ଗଲେ ।

ଏ ପ୍ରସଙ୍ଗ ପରେ ସେ ଲାବଣ୍ୟ ଲତିକାକୁ ଦେଖିବା ପାଇଁ ମୁଁ ଅନେକ ଥର ସେ ଘରର ପାହାଚ ଚଢ଼ିଛି । କିନ୍ତୁ ଆଜି ଏଥର କ'ଣ କହିବ ?

ରାଜୁ ସେ କ୍ୟାଲେଣ୍ଡରର ସୁନ୍ଦରୀକୁ ଧରି ମୋ ଘରକୁ ଆସିଥିଲା । ହଁ ସେହି ସୁନ୍ଦରୀ । ତା' ଭଳି ଦେଖା ଯାଉଥିବା ଆଉ କେହି ନୁହେଁ । ସେହି ଦୁଇ ହଜାର ଟଙ୍କିଆ ଶାଢ଼ି, ହାତରେ ଟ୍ରାନ୍‌ଜିଷ୍ଟର ଧରିଥିବା ସୁନ୍ଦରୀ । ମୁଁ ମୁଣ୍ଡରେ ଥଣ୍ଡା ପାଣି ଢାଳେ, ନ ହେଲେ ଭରି ବାଲଟିରେ ମୁଣ୍ଡ ପୁରେଇ ଥିଲେ ମଧ୍ୟ ପରିସ୍ଥିତି ବଦଳି ନ ଥାନ୍ତା ।

ରାଜୁ ପୁଣି ଭିତରକୁ ଆସିଲା । ତା' ଦୁଇ କାନ୍ଧକୁ ଜୋରରେ ଧରି ମୁଁ ପଚାରିଲି ।

''ରାଜୁ ଏ ସବୁ କେମିତି ସମ୍ଭବ ହେଲା ?''

''ମୋ କାନ୍ଧ ଛାଡ଼ । ଦୁଇ ଦିନରେ ମୋ ଦେହ, ଆଣ୍ଠୁ, ଅଣ୍ଟା ବିନ୍ଧିଲାଣି ।''

''କାହିଁକି ?''

''ଆଖି ମାରି ରାଜୁ କହିଲା- ବ୍ରହ୍ମଚର୍ଯ୍ୟ ବାହାହେଲେ ଯାଇ ତା' କାରଣ ବୁଝିବ । ଛାଡ଼ ସେ କଥା—।''

''ଛାଡ଼ କ'ଣ ମତେ କହ କ'ଣ ସବୁ ହେଲା ?''

''କେମିତି କହିବି—ମୋ ମୁଣ୍ଡ ବି କାମ କରୁନି । କିନ୍ତୁ କଥାରେ ଅଛି - ପୁରୁଷସ୍ୟ ଭାଗ୍ୟମ୍, ସ୍ତ୍ରୀୟଶ୍ଚ ଚରିତମ, ଦେବୋ ନ ଜାନାତି କୁତୋ ମନୁଷ୍ୟ ? ସେଭଳି କିଛି ଗୋଟେ ହୋଇଛି । ଏ ଅଦ୍‌ଭୁତ କଥା ଘଟିଛି ଓ ସତରେ ଘଟିଛି, ଏତିକି ମୁଁ କହିପାରିବି ।''

ମୁଁ ମୁଣ୍ଡ ହଲେଇଲି ।

''ସେଥିପାଇଁ ତୋ ଘରକୁ ନେଇଆସିଲି ।''

''ମତେ ଉହ୍ୱାଳ ବକଲ କରିବା ପାଇଁ ?''

ସେମିତି ଭାବନା । ମୁଁ ବୋଧେ ମିଛୁଆ ବୋଲି ମତେ ସବୁବେଳେ ଗାଳିଦିଅ । ଅବଶ୍ୟ ମୁଁ ମିଛ କହେ , କିନ୍ତୁ ଏଇଟା ମିଛ ନୁହେଁ ନିଗଚ୍ଛ ସତ୍ୟ, ତେଣୁ ତୋ ଘରକୁ ନେଇ ଆସିଲି । ନ ହେଲେ ତାକୁ ଧର ବାହାରେ ବୁଲିବାର ସାହସ ମୋର କାହିଁ ।''

''କାରଣ ।''

''କାରଣ କ'ଣ ? ଆରେ କେହି ଯଦି ଦେଖିଥାନ୍ତା ?''

''ଅଭିଅଫିସ ?''

''ହାସ୍ୟ କମୃଚ୍ଛ । ତୁ' ଯେ କ'ଣ ପଗ୍ଭରୁ । ସବୁ ବୃଥା, କାଲି କଲ୍ପବୃକ୍ଷ ତଳେ ବସିଲେ ମଧ ରୁ ସେହି ସିଙ୍ଗଲ୍ ଗ୍ଭହା କପେ ମାଗିବୁ । ଆରେ ସ୍ତ୍ରୀ ବାହାରେ, ଘରେ ଏ ଅଡ୍‌ସଂଧ ପ୍ରପନ୍ନ । ଅଫିସ୍‌କୁ କାଏ ପଗ୍ଭରେ ।''

''ଗ୍ଭନ୍ନ ଏ ସବୁ ଭଲ ନୁହେଁ ।''

''ଚୁପ୍ ବେ । ପାଣି ଟାଙ୍କି ଦେହି ପିନ୍ଧିଥିବା ମଣିଷ ହୁଇସ୍କି ଗିଲାସେ ପାଇଲେ ତାକୁ କ'ଣ ଗୋଇଠା ମାରପାରେ ? ମାନସରୋବର କୂଳରେ ଠିଆ ହୋଇ ବାରପଟ୍ଟ ଗାଡ଼ିଆରେ ବୁଡ଼ ମାରିବାର ଇଚ୍ଛା ଧରିଥାନ୍ତ ।''

''କିନ୍ତୁ ସ୍ୱପ୍ନ ?''

''ଦେଖ, ଯେଉଁମାନଙ୍କ ଗ୍ଭନସ୍ ମିଳେ ନାହିଁ ସେମାନେ ସସ୍ତାର, ସସ୍ତ୍ରତ କଥା କୁହନ୍ତି । 'ନାରିଚରିମି'ର ଶପଥ ବିବାହ ବେଦୀରେ ନବ ଓ ବେଦୀରେ ନବ ଓ ବେଦୀରେ ଜଳୁଥିବା ହୋମର ଧୂଆଁରେ ଆକାଶକୁ ଛାଡ଼ିଦେଇ ମୁକ୍ତ ହୋଇଯିବ ।''

''ସେ କଥା ନୁହଁ । ମୁଁ ସ୍ୱପ୍ନଙ୍କ ବିଷୟରେ ପଗ୍ଭରୁଥିଲି ।''

''ତା' ବାପଘରକୁ ଯାଇଛୁ ।''

''ଏ କେବେ ଆସିଲା ।''

''ଆସିଲା ଏମିତି ଏକ ପାହାନ୍ତରେ । ଗୋଲାପି ସ୍ୱପ୍ନ ଭଳି । ମୋ ମିଠା କଦକୁ ଅନ୍ତର ମିଠା କର ।

''ମୁଁ ଭାବଲି ନନ୍ଦନରେ ସ୍ୱପ୍ନ ହୋଇଥିବ ।'' ସପନଭରା ଆଖିରେ ମତେ ଚୁହିଁ ଗ୍ଭନ୍ନୁ କହିଲା—''ଦୋସ୍ତ ତୁ କ'ଣ କ୍ୟାଲେଣ୍ଡର ଦେଖି ବହୁଳତ ହୋଇଥିବା ଏକମାତ୍ର ପୁରୁଷ ? ମୁଁ ଭଗବାନଙ୍କ ନିକଟରେ ରୋଜ ପ୍ରାର୍ଥନା କରୁଥିଲି—ଦୁନିଆର କୌଣସି ସୌଖ୍ୟ ମୋର ଦରକାର ନାହିଁ । ଥରେ ମାତ୍ର କ୍ୟାଲେଣ୍ଡରରେ ଥିବା ଏ ସୁନ୍ଦରୀକୁ ବରଦାନ ଦେ ! ମୋ ଆକୁଳ ସ୍ୱରକୁ ଭଗବାନ ପଥରଦେନ ଶୁଣିଲେ ।''

"ପଥର ଦ୍ୱନ କେତେବେଳେ" ମୋ ଅଜାଣତରେ ମୋ ସ୍ୱର ସ୍ପଷ୍ଟ ହୋଇ-ଗଲା ।

"ପଥର ଦ୍ୱନ ପାହାନ୍ତା ପାଞ୍ଚଟା" । ପୂର୍ବଦ୍ୱନ ମୋ ସ୍ତ୍ରୀ ତା" ବାପ ଘରକୁ ଗଲା । ପାହାନ୍ତରେ ମତେ ଲଗିଲା କିଏ ଜଣେ ମତେ ହଲେଇ ଉଠାଉଛୁ । ଆଖି ଖୋଲି ଦେଖେ ତ ଏ ସୁନ୍ଦରୀ । ଭାବିଲି ନିଦ୍ରାଦ୍ୱନ ଭଳି ଏ ମଧ୍ୟ ସ୍ୱପ୍ନ । ସେଠୁ ଶହ୍ନା-ନାଇର ସ୍ୱର ଶୁଭିଲା । ଦେଖେ ତ କାନ ପାଖରେ ଟ୍ରାନଜିଷ୍ଟର । ହେନାର ସୁଗନ୍ଧ ନାକରେ ବାଜିଲା । ସେଠୁ ସାମନା କାନ୍ଥକୁ ଅନେଇଲି । କ୍ୟାଲେଣ୍ଡରଟି ପୁରା ସଫା । ଭାବିଲି ମୋ ସ୍ତ୍ରୀ ତାକୁ ଓଲଟେଇ ରଖିଥିବ । ସେତିକିବେଳେ ମଧୁର ସ୍ୱର ଶୁଭିଲା "ଉଠ ନା କେତେ ଶୋଇବ ଯେ !" ମୁଁ ଧଡ଼ପଡ଼ ହୋଇ ଉଠି ବସିଲି । ଦେଖେ ତ ଏ ସେହି ସୁନ୍ଦରୀ । ଯେଉଁ ଦାମିକା ବସ୍ତ୍ର ଓ ବସ୍ତ୍ର ଅପେକ୍ଷା ତା ମୂଲ୍ୟବାନ୍ ସ୍ୱର୍ଣ୍ଣ ମତେ କହୁଥିଲା" ସାକ୍ଷାତ୍ ଅମୃତ କୁମ୍ଭର ସାନିଧ ଲାଭ କରି ଶୋଇଛୁ କ'ଣ ?"

"ରାଜୁ ! ରାଜା ରାଜୁଆ କ'ଣ କହୁଛୁ ?"

"ଇଟମ୍ ଏ ଫ୍ୟାକ୍ଟ।"

ତା' କଥା ଶୁଣି ମୋ ଜିଭ ତାଳୁରେ ଲଗିଗଲା ।

"ରାଜୁ ରାଗିବୁ ନାହିଁ । ଦୁଇଦ୍ୱନ କ'ଣ ସବୁ କଲୁ କହିଲୁ ।"

ପୁଣି ଥରେ ରାଜୁ ଆଖି ମାରି କହିଲା —"କୌଣସି ସମର୍ଥ୍ୟଦାର ପୁରୁଷ ଆଉ ଜଣେ ପୁରୁଷକୁ ଏ ପ୍ରଶ୍ନ ପଚାରେ ନାହିଁ । ୟୁ କ୍ୟାନ୍ ଇମାଜିନ । ମାନେ ଏମିତି ହୁଏ କୌଣସି ଏକ ଲାବଣ୍ୟବତୀ ସୁନ୍ଦରୀ ବିଷୟରେ ଭାବିଲାବେଳେ ଆମେ ଭାବୁ ଯଦି ଆମେ ତାକୁ ବିବାହ କରୁ, ତା'ହେଲେ ତା'ର କଲ୍ୟାଣ ହବ । ଆଉ କେହି ବିବାହ କଲେ ତା' ଅବସ୍ଥା ଢିଲା ହବ । ଏମିତି ହେଲେ ମଧ୍ୟ ଦୁନିଆର ସମସ୍ତ ସୁନ୍ଦରୀଙ୍କ କଲ୍ୟାଣ ଆମେ କ'ଣ କରି ପାରିବା । ଗୁଲି ମେ କଥା —ସ୍ତ୍ରୀ'ର ଜଲ୍ଦି ମତ ! ମୁଁ ତାକୁ ବିଲକୁଲ ହଇରାଣ କରୁନାହିଁ । ଆମେ ବାହାର ଘରକୁ ଗଲୁ ।

"ଏ କ'ଣ ରାଜୁ ! ମତେ ଏତେ ସମସ୍ତ ବାହାରେ ବସେଇଲୁ ?"

'ସୋ ସରି ମାଇ ସ୍ୱିଟ୍ ହାର୍ଟ !' ରାଜୁ କହିଲା । ପରେ ଆମେ ଗପସପ ହେଲୁ । କିନ୍ତୁ ମୁଁ କ'ଣ ଗପିଲି ମୋର ମନେ ନାହିଁ । କାରଣ ମୁଁ ସେ ସୁନ୍ଦରୀର ମନ ମତାଣିଆ ଆଖି ଦେଖିବି ନା ନାଲି ଓଠକୁ ଦେଖିବି, ନା ଶୁଭ୍ର ଦନ୍ତ ପଂକ୍ତି ଦେଖିବି ନା ଗାଲର ଲାଲିମା ! ମୁଁ କିଛି ବୁଝି ପାରୁ ନ ଥିଲି । ତା'ର ସମସ୍ତ ରୂପକୁ ଦେଖିବା ପାଇଁ ପ୍ରତ୍ୟେକ ଭାବଭଙ୍ଗୀକୁ ନିରେଖିବା ପାଇଁ ସହସ୍ର ନେତ୍ର ହେବା ଦରକାର ଥିଲା ।

ତା'ପରେ ସୁଣ ସ୍ୱଡ ଆକାଶର ତାର ଗଣିବାରେ ଗଲା ।
ପୁଣି ଅରେ ସ୍ଵଜ୍, ଦୌଡ଼ ଦୌଡ଼ ଆସିଲା ।
କହୁଲା—"ବୋସ୍ତ ସବୁ ଗଡ଼ବଡ଼ ହୋଇଗଲା ।"
"କ'ଣ ହେଲା ?"

"ଆଉ ଅଶିଲା କ'ଣ ହବ ? ସେ ଦନ ତୋ ଘରୁ ଗଲି । ସେଠୁ ହୋଟେଲକୁ ଗଲି, ତାହା ମଧ୍ୟ ପୁନଶ୍ଚର ଶୋଷା ଉଠିଲା ବୋଲି ।

"ଆରେ ଏଠୁ ସରବତ ପିଇ ଯାଇଥିଲ ।"

"ସେତେ ହେଲେ ବି ସ୍ତ୍ରୀ ତ ! ବବାହିତ ସ୍ତ୍ରୀ ହେଉ, ନ ହେଲେ କ୍ୟାଲେଣ୍ଡରର । ଟିକେ ସୁନ୍ଦର ହୋଟେଲ ଦେଖିଲେ ଏମାନଙ୍କର ଶୋଷା ଉଠେ । ଗଲି ଓ ସବୁ ଗଣ୍ଡଗୋଳ ହୋଇଗଲା । ହୋଟେଲ ଦୁଆର ମୁହଁରେ ଆମ ଶାଳକ ଠିଆ ହୋଇଥିଲେ । ଠିକଣା ଜାଗାରେ ବାଟ ଓଗାଳିବା ହେଲା ଶାଳକ ଧର୍ମ ! ସୁନ୍ଦରୀକୁ ଦେଖି ସେ ମଧ୍ୟ ଟିକେ ଶଙ୍କିଗଲେ । କ୍ୟାଲେଣ୍ଡର ନେଇଯିବାର ସ୍ୱପ୍ନ ସେ ମଧ୍ୟ ବହୁତ ଥର କହୁଥିଲେ । ସେଠୁ ମୋ ଶଶୁର ଘରେ ଖବର ପହଞ୍ଚିବାପାଇଁ ଟାଇମ୍ କେତେ । ଏକଦମ୍ P.T.I. News ତୋ ଷ୍ଟଲ ଆସି ହାଜର । ତାହା ମଧ୍ୟ ସ୍ୱଚ୍ଛ ନ ପାରୁଣୁ ।

"ମାରି ଗଡ୍ ! ସେଠୁ କ'ଣ କଲୁ ?"

'କରିବ କ'ଣ ? ସେ ମୋ କାନ୍ଧରେ ମୁଣ୍ଡ ରଖି ଶୋଇଥିଲା । ଆମେ ଦୁହେଁ ନିଦ୍ରିତ ଅବସ୍ଥାରେ । ଝଞ୍ଜିର ପିଟିବା ଶବ୍ଦରୁ ମୁଁ ଜାଣିଗଲି ଦୁର୍ଗାଦେବୀ ପ୍ରସନ୍ନ ହୋଇଛନ୍ତି । ମୋ ନିଦ ଛୁଟିଗଲା । ତାକୁ ଉଠେଇଲି । ସବୁ କଥା କହିଲି । ସେଠୁ ସେ ବିଜୁଳି ବେଗରେ ଯେମିତି କ୍ୟାଲେଣ୍ଡରରୁ ଆସିଥିଲା ସେମିତି କ୍ୟାଲେଣ୍ଡରରେ ପଶିଗଲା ।

ମୁଁ କବାଟ ଖୋଲି ଆନନ୍ଦରେ ସ୍ୱାଗତ ଜଣେଇ ପଚାରିଲି ।
"ଏ ସମୟରେ ?"
"ସେଠି ମନ ଭଲ ଲାଗିଲା ନାହିଁ ।"

"ଭଉଣୀ ବଡ଼ ବଡ଼ ଆଖିରେ ଘର ଖୋଜି ପକଉଥିଲା । କିଛି ପାଇଲାନି ନାହିଁ, ତେଣୁ ପଚାରିଲା

"ଏ କ'ଣ ? ତମେ ଏକୁଟିଆ ?"

"ଏ କ ପ୍ରଶ୍ନ ? ଯୁ ମତେ ଗ୍ରୁଡ ବାପ ଘରକୁ ଗଲୁ । ଏକୁଟିଆ ରହିବ ନାହିଁ ତ କ'ଣ କରିବ ? ମୋର କ'ଣ ଦୁଇଟା ସ୍ତ୍ରୀ ଅଛନ୍ତି ?"

"ଆଉ ଜଣଙ୍କୁ ଆଣିଛ ବୋଲି ଶୁଣିଲି ।"

"ଓହୋ ! ସେଇଥିପାଇଁ ବାପଘରେ ମନ ଲାଗିଲା ନାହିଁ ।"

"କାହା ମନ ଲାଗିବ ସେ ?"

"ତଥାପି ସେ ନାରାଜ ଥିଲା । ସେ ସନ୍ଦେହ କରୁଥିଲା ; କିନ୍ତୁ କହୁ ପାରୁ ନଥିଲା । ମୁଁ ତାକୁ ବୁଝେଇ ସୁଝେଇ ଶାନ୍ତକଲି; କିନ୍ତୁ ଆଲମିରା ଖୋଲିବା ପର୍ଯ୍ୟନ୍ତ । ସେ ଆଲମିରା ଖୋଲିବା ମାତ୍ରେ ମୋ ଦେହରୁ ଝାଳ ବୋହିଗଲା ।

"କାହିଁକି ?"

କାହିଁକି—କ'ଣ ପଚାରୁଛୁ ? "ଆଲମିରାରେ ଦୁଇ ହଜାର ଟଙ୍କିଆ ଶାଢ଼ୀ ଓ ଟ୍ରାନ୍‌ଜିଷ୍ଟର ରଖିଥିଲି ।"

"କେମିତି ?"

"କେମିତି ମାନେ ! ମୁଁ ତାକୁ ମୋ ସ୍ତ୍ରୀର ଶାଢ଼ୀଟା ପିନ୍ଧିବାକୁ ଦେଇଥିଲି । ସେହି ପିନ୍ଧା ଶାଢ଼ୀ ସହ ସେ କ୍ୟାଲେଣ୍ଡରେ ପଶିଗଲା ।

"ସେଠୁ ?"

ମୋ ସ୍ତ୍ରୀ ଶାଢ଼ୀ ଦେଖି ତାକୁ ହଟେଇଲା । ତା' ତଳେ ଟ୍ରାନଜିଷ୍ଟର । ସେଠୁ କ୍ୟାଲେଣ୍ଡର ଦେଖିଲା । ସାଠ ଖତମ୍ । ଦୁଇ ଦିନ ହେବ ଘରେ ଯାହା ସବୁ ଚାଲିଛି ନ କହିଲେ ଭଲ ।

'ତୁ ଘର ଗ୍ରୁଡ଼ି ପଳେଇବା ବନ୍ଦୋବସ୍ତ କରୁନୁ ତ ?"

ଘର କଏ ଗ୍ରୁଡ଼ିଲାଣି ? ଯେତେ ହେଲେ ବି ମାଇପ ଜାତି ତ ? ଉପରେ ଗରଗର ହେଲେ ବି ଭିତରେ ଖୁସ୍ ଅଛି । କାରଣ ଦାମିକା ଶାଢ଼ୀ ଓ ଟ୍ରାନ୍‌ଜିଷ୍ଟର ପାଇଛି ଯେ !

ପନ୍ଦର ଦିନପରେ ପୁଣି ରାଜୁ ମୋ ଘରେ ହାଜର । ହାତରେ କ୍ୟାଲେଣ୍ଡରଟାଏ ମୋଡ଼ି ଧରିଛି !

ମୁଁ କହିଲି—"ଆରେ ବାବା, ମାଫ କର, ସେ କ୍ୟାଲେଣ୍ଡର ମୋ ଘରକୁ ଆଣନା । ଏ ଦୁଇ ଦିନଆ ମଜା ମୋର ଦରକାର ନାହିଁ । ଅନ୍ୟମାନେ ଜାଣିଲେ ମତେ କେହି ଝିଅ ଦେବେନି ।

"ଶୁଣ ତ ! ଏଟା ସେ କ୍ୟାଲେଣ୍ଡର ନୁହେଁ ।"

ରାଜୁ କ୍ୟାଲେଣ୍ଡର ଖୋଲି ଦେଖେଇଲା । ହ୍ୱାଇଟ୍ଲସ୍ ଟେରଲିନ୍ ସୁଟ୍ ପିନ୍ଧି ଜଣେ ସୁନ୍ଦର ଯୁବକ ଗୋଟିଏ ମଟର ସାଇକେଲରେ ବସିଥିଲା ।"

"କି ସୁନ୍ଦର ଡ୍ରେସ୍ ହୋଇଚି—ନାହିଁ ?"

"ଏ କପଡ଼ା କ'ଣ ଏଠି ମିଳିବ । ଫରେନ୍ ଜିନିଷ, ଏ ମଟର୍ ସାଇକଲ ମଧ୍ୟ ଫରେନ୍ ମଡେ଼ଲ ।

"ମତେ ଏ କ୍ୟାଲେଣ୍ଡର କାହିଁକି ଦଉଚୁ ?"

"ଆଠ ଦିନ ସମ୍ଭାଳି ରଖ ।"

"କିନ୍ତୁ କାହିଁକି ?"

"କାରଣ ମୁଁ ଆଠ ଦିନ ପାଇଁ ଅଫିସ୍ ଟୁର୍‌ରେ ଯାଉଛି । ସେଥିପାଇଁ କ୍ୟାଲେଣ୍ଡର ତୋ ଘରେ ରଖ । ମୋ ସ୍ତ୍ରୀ ଏଠି ଏକୁଟିଆ ରହିବ । ଏ କନାଟି ଯେତେ ଦାମିକା ଓ ଫରେନ ମଡେ଼ଲର ଏ ମଟର୍‌ସାଇକଲ ଯେତେ ସୁନ୍ଦର ହେଲେ ମଧ୍ୟ ମୋର ଜରୁରୀ ନାହିଁ । କାରଣ ଆମ ସଂସ୍କୃତି ଆଗରେ ଏସବୁ ମୂଲ୍ୟହୀନ୍ । ତୋ ମତ କ'ଣ ?"

ମୁଁ ଖାଲି ହସିଲି ।



# ବଦଳି

ଆଠ ବର୍ଷ, ନାନା କାରସାଦ କରି, ବଡ଼ ବଡ଼ଆଙ୍କ ସିଫାରିଶରେ, ଡାକ୍ତର ସାର୍ଟିଫିକେଟ ଦେଇ ବଦଳି କ୍ୟାନସେଲ୍ କରୁଥିବା ଦାଦା ଦାମଲେ ହଠାତ୍ ବଦଳି ପାଇଁ ପ୍ରାଣମୂର୍ଚ୍ଛା ଉଦ୍ୟମ କାହିଁକି ଆରମ୍ଭ କଲେ, କେହି ବୁଝି ପାରିଲେ ନାହିଁ । ଆମ ବ୍ୟାଙ୍କରେ ସେ ସମସ୍ତଙ୍କର ଦାଦା ଦାମଲେ ଥିଲେ । ଅର୍ଥାତ୍ ଦାମୋଦର ଦାଦୋଜୀ ଦାମଲେ । ଏହା ଥିଲା ତାଙ୍କର ସମ୍ପୂର୍ଣ୍ଣ ନାମ । ସଂକ୍ଷେପରେ ଦାଦା ଦାମଲେ ଓ ତାଙ୍କ ଖାସ ପରିଚିତ ମାନେ ତାଙ୍କୁ 'ଦାଦା' ଡାକୁଥିଲେ ।

ଦାଦା ବଦଳି ମାଗୁଛନ୍ତି ଶୁଣି ସମସ୍ତେ ଦାଦାଙ୍କ ଉପରେ ଚଢ଼ଉ କଲେ ।

"ଦାଦା, ଆମକୁ ପର କରିଯିବ ?"

"ଏଭଳି ସ୍ୱପ୍ନରେ ମଧ୍ୟ ଭାବିବ ନାହିଁ ।"

"ତା' ହେଲେ ବଦଳି କାହିଁକି ମାଗୁଛ ?

ଦାଦା ଖାଲି ହସୁଥିଲେ , କିନ୍ତୁ କିଛି କହୁ ନ ଥିଲେ ।

କାରଣ, କାରଣ ସେ କାହାରିକୁ କହିପାରି ନ ଥାନ୍ତେ ।

•ସେ ବଦଳି ଚାହୁଁଥିଲେ ।

ବଦଳି ହବ । ଏ ବାବଦରେ ସନ୍ଦେହ ନ ଥିଲା । ବଦଳି ନ ହେବା ପାଇଁ ନାନା କାରସାଦ କରି ବଦଳି ଯଦି କ୍ୟାନସେଲ କରିଯାଇ ପାରୁଛି; ଏଥର ତ ସେ ବଦଳି ଚାହୁଁଛନ୍ତି ତେଣୁ ବଦଳି ନିଶ୍ଚୟ ହେବ ।

ତେଣୁ ସେ ପ୍ରସ୍ତୁତି ମଧ୍ୟ ଆରମ୍ଭ କରି ଦେଇଥିଲେ ।

ଘରଣୀ ପଚାରିଲେ—"ଶୁଣୁଛ ପିଲାଙ୍କ ପରୀକ୍ଷା ପାଖେଇ ଆସିଲାଣି । ଏଭଳି ସମୟରେ ଏ ବଦଳି ମାନେ ?"

"ତମେ କ'ଣ ଜାଣିଛ ଚାକିରୀ କଥା । ମୋର କ'ଣ ଜୋର୍ ଅଛି ?"

"ଆଜି ପର୍ଯ୍ୟନ୍ତ କେମିତି ସବୁ ସମ୍ଭାଳୁ ଥିଲ ?"

"ସେଥିରେ କ'ଣ ଅସୁବିଧା, ପ୍ରମୋଶନ ମିଳୁଥିଲା, ମନା କରୁଥିଲି, ତେଣୁ ବଦଳି ମଧ୍ୟ କ୍ୟାନ୍‌ସେଲ ହେଉଥିଲା ।

"ଏଥର ମଧ୍ୟ ପ୍ରମୋଶନ ପାଇଁ ମନା କରିଦିଅ ।"

"ନା ! ଦରଦାମ ଯାହା ହେଲଣି, ଏତକ ଦରମାରେ ଘର ଚଳିବ କେମିତ ?

"ତମେ ଯାହା କହିବ କରିବ । ଖର୍ଚ୍ଚ କାଣ୍ଟଛାଣ୍ଟ କରି ଚଳିବା ; କିନ୍ତୁ ବଦଳି ବନ୍ଦ କର ।"

"କିନ୍ତୁ କାହିଁକି ?"

"ପିଲଙ୍କ ସ୍କୁଲ କଥା କ'ଣ କରିବ ?"

"ହଜାର ହଜାର ଲୋକଙ୍କ ବଦଳି ହେଉଛି । ସେମାନେ ଯଦି ପାରୁଛନ୍ତି ଆମେ କ'ଣ ପାରିବା ନାହିଁ ?

ସ୍ତ୍ରୀ ବସୁଧା ଚୁପ୍ ହୋଇଗଲେ । ସ୍ୱାମୀ ଏତେ କପରି ବଦଳି ଗଲେ ସେ ବୁଝି ପାରିଲେ ନାହିଁ । ଦେଖିବାକୁ ଗଲେ ସେ ମଧ୍ୟ ଏ ଘରେ ରହିବାକୁ ଆଉ ପସନ୍ଦ କରୁ ନ ଥିଲେ । କାରଣ ଉପର ମହଲା ତଳୁ ଲୋକ କେତେ ପାଣି ଆଣି ରଖିବ ।

ତୃତୀୟ ମହଲାକୁ ପାଣି ଚଢ଼େ ନାହିଁ । ତେଣୁ ଭଡ଼ାଟିଆମାନେ ମାଲିକ ବିରୁଦ୍ଧରେ ପାଟିଗୋଳ କରିବାରୁ, ପ୍ରତି ଦୁଇଜଣ ଭଡ଼ାଟିଆଙ୍କ ପାଇଁ ମାଲିକ ଗୋଟିଏ କଳ ଯୋଗେଇ ଦେଲେ । ପ୍ରଥମ ଥର ପାଞ୍ଚ ଦିନ ପାଣି ଠିକ୍ ଗଲା । ତା'ପରେ ପଡ଼ିଶା ଘର ଗଣପୁଲେ ଫ୍ଲାଟରକୁ ତାକ କ'ଣ କଲେ କେଜାଣି ତାଙ୍କ ଘରେ ପାଣି ଜୋର୍‌ସୋରରେ ଦଉଡ଼ିଲା । ଦାମଲେଙ୍କ ଘରେ କେବଳ ବୁନ୍ଦା ବୁନ୍ଦା ଗଳିଲା ; କିନ୍ତୁ ଗତ ସପ୍ତାହ ହେଲା କେମିତି କ'ଣ ହେଲା ଜଣାନାହିଁ, ଦାମଲଙ୍କ ଘରେ ପାଣି ଖାଲି ବର୍ଷିଲା । ତେଣୁ ଯେଉଁ କାରଣ ପାଇଁ ଦାମଲଙ୍କ ସ୍ତ୍ରୀ ଘର ଛାଡ଼ିବାକୁ ଚାହୁଁଥିଲେ ସେ କାରଣ ଆଉ 'କାରଣ' ହୋଇ ରହିନଥିଲା । ତା' ହେଲେ ବଦଳି କାହିଁକି ?

ସ୍ୱାମୀ ତ କିଛି କହୁ ନାହାନ୍ତି ?

ଦାଦା ବା କେମିତି କହିବେ ?

ମୁଣ୍ଡ ପିଟି, ଘଣ ଖାଇ ସତ କହିଥିଲେ ମଧ୍ୟ କେହି ବିଶ୍ୱାସ କରିବେ ନାହିଁ । ଏ କଥା ଦାଦାଙ୍କୁ ଭଲ ଭାବରେ ଜଣାଥିଲା । ଗତ ମାସ୍ ତଳେ ଘଟିଥିବା ସତ୍ୟ ଘଟଣା ।

ବ୍ୟାଙ୍କରେ କାମ କରୁଥିବା ଦ୍ୱିତୀୟ କ୍ୟାସିୟର ଛୁଟି ନେଲା । ରସିଭିଙ୍ଗ୍ ଓ ପେଇଙ୍ଗ ଦୁଇଟିଯାକ କାମ ଦାଦାଙ୍କୁ କରିବାକୁ ପଡ଼ିଲା । ତେଣୁ ଏ ଡବଲ ରୋଲ କରି ଦାଦା ବଡ଼ ହଇରାଣ ହେଉଥିଲେ । ଦାଦା ଟିକେ ସୁଖ ପ୍ରକୃତିର ଲୋକ । କୌଣସି କାମରେ ତରବର ତାଙ୍କୁ ପସନ୍ଦ ନ ଥିଲା । ତେଣୁ ପାଖ କ୍ୟାସିୟର ତାଙ୍କୁ ସବୁବେଳେ 'ବ୍ୟାଙ୍କର ଯୋଉଁ ଯୁଥ' କହୁଥିଲା ।

ତେଣୁ ସେଦିନ ଟୋଟାଲ କରୁ କରୁ ଦାଦା ହୃଡ଼ ବଢ଼େଇ ଗଲେ । ତାଙ୍କ ଲାଗି ଆଉ ଦୁଇଜଣ ମଧ୍ୟ ଅଟକିଲେ । ଏଣ୍ଟ୍ରିରେ ସାମାନ୍ୟ ଭୁଲ୍ ଯୋଗୁଁ ସମସ୍ତଙ୍କର ଦୁଇଘଣ୍ଟା ଗଲା ।

ଶେଷକୁ ସବୁ କାମ ସାରି ତିନିଜଣ ଯାକ ମୁଣ୍ଡ ଥଣ୍ଡା କରିବା ପାଇଁ ହୋଟେଲକୁ ଗଲେ । ଦାଦାଙ୍କ ଯୋଗୁଁ ଏ ସବୁ ହେଲା ବୋଲି ଦାଦାଙ୍କୁ ତାଙ୍କ ପକେଟ ହାଲୁକା କରିବାକୁ ପଡ଼ିଲା । ଦାଦା ମଧ୍ୟ ଖୁସିରେ ବିଲ୍ ଦେଲେ । ଘରକୁ ଫେରୁ ଫେରୁ ରାତି ଏଗାର । ଗୃହଅଫିସ୍ ନିସ୍ତବ୍ଧ । ଦାଦା ପାହାଚ ଦେଇ ଉପରକୁ ଉଠିଲେ । ଦୁଇ ପାହାଚ ଚଢ଼ିଛନ୍ତି କେହି ଜଣେ ଶୁକ୍...ଶୁକ୍ ଡାକିଲା ଭଳି ଲାଗିଲା । ଦାଦା ଚାହିଁ ଅନେଇଲେ । କେହି ନ ଥିଲେ । ଦାଦା ପୁଣି ଦୁଇ ପାହାଚ ଚଢ଼ିଲେ । ପୁଣି ସେହି ଡାକ । ଦାଦା ଚାହିଁ ଅନେଇଲେ । କେହି ନ ଥିଲେ । ତୃତୀୟ ଥର ଡାକ ଶୁଭିଲା ଦାଦା ପଛକୁ ନ ଅନେଇ କହିଲେ, "ମୋ ନାଁ ଦାମୋଦର ଦାମଲେ । ଡାକୁଛ ଯଦି ନାଁ ଧରି ଡାକ, ନ ହେଲେ କେବଳ ଦାଦା ଡାକିଲେ ଚଳିବ ।" ଏହା କହି ସେ ପ୍ରଥମ ମହଲାରେ ଆସି ପହଞ୍ଚିଲେ । ଦ୍ୱିତୀୟ ମହଲା ଚଢ଼ିବାକୁ ଆରମ୍ଭ କରୁଛନ୍ତି ଡାକ ଶୁଭିଲା ।

"ଦାଦା ଦାମଲେ, ଟିକେ ରୁହ !"

ଦାଦା ରହିଗଲେ । କେହି ଦେଖାଗଲେନି । ଦାଦା ନିଜ ସ୍ୱରପଟେ ଥରେ ବୁଲିଗଲେ ।

"ମୁଁ ତୁମ ପାଖରୁ ମାତ୍ର ତିନିଫୁଟ ଦୂରରେ ଠିଆ ହୋଇଛି ।"

"ତା'ହେଲେ ମୁଁ ତୁମକୁ ଦେଖିପାରୁ ନାହିଁ କାହିଁକି ?"

"ମୁଁ କାହାରିକୁ ଦିଶେ ନାହିଁ ।"

ଏଥର ଦାଦା ଡରିଗଲେ । ସେ ପାହାଚ ବାଡ଼ାକୁ ଧରିନେଲେ । ତାଙ୍କ ଗୋଡ଼ ଥରିବାକୁ ଲାଗିଲା । ଜିଭ ଶୁଖିଗଲା । ପୁଣି ଥରେ ଶୁଭିଲା—

"ଡର ଲାଗିବା ସ୍ୱାଭାବିକ ଓ ମଣିଷମାନେ ଭୂତକୁ ଡରନ୍ତି । କିନ୍ତୁ ମୁଁ ତୁମକୁ କଷ୍ଟ କରିବି ନାହିଁ । ବର୍ତ୍ତମାନ ପର୍ଯ୍ୟନ୍ତ କଷ୍ଟ କଲି ?

ଦାଦାଙ୍କ ମନକୁ କଥାଟା ପାଇଲା । ତଥାପି ଡରି ଡରି ପଚାରିଲେ—

"ତମେ କିଏ ?"

"ମୁଁ ଜନାର୍ଦ୍ଦନ ଏକ ବୋଟେ ।"

'କେଉଁଠି ଘର ?'

'ଏଇଠି ।'

'ମାନେ ?'

"ତୁମେ ଯେଉଁ ଘରେ ରହୁଛ, ସେହି ଶହେ ଏକାବନ ନମ୍ବର ଘରେ ମୁଁ ରହୁଥିଲି ।"

ଦାଦାଙ୍କୁ ଏଥର ଟିକେ ମଜା ଲାଗିଲା । ପଚାରିଲେ···

"କେବେ ?"

"ଏଗାର ବର୍ଷ ପୂର୍ବରୁ ।"

"ଜାଗା କାହିଁକି ଛାଡ଼ିଲ ?"

"ବଦଳି ହେଲି ବୋଲି । ବଦଳି ହେଲି ବୋଲି ବମ୍ବେ ଛାଡ଼ିଲି । ଜିନିଷ ବୋଝେଇ ଟ୍ରକ ସହିତ ବାହାରିଲି । ଟ୍ରକର ଆକ୍‌ସିଡେ଼ଣ୍ଟ ହେଲା । ସେଥିରେ ମଲି । ଫ୍ୟାମିଲି ଟ୍ରେନରେ ଗଲେ ତେଣୁ ବଞ୍ଚିଗଲେ ।"

'ଓଃ ମାଇ ଗୁଡ୍‌ନେସ୍ ।'

ମୋ ଘରେ କାନ୍ଦ ବୋବାଳି ପଡ଼ିଗଲା । ମୋ ସ୍ତ୍ରୀ ମୁଣ୍ଡ ପିଟି କାନ୍ଦୁଥିଲା । ମୁଁ ଛାତ ଉପରେ ବସି ସବୁ ଦେଖୁଥିଲି ; କିନ୍ତୁ କିଛି କରିପାରିଲି ନାହିଁ । ବଡ଼ ପୁଅ ମନ ଦୁଃଖରେ ମୋ ଶବ କେବେ ମିଳିବ, ତା'ର ଅପେକ୍ଷାରେ ବସି ରହିଥିଲା ।

"ମାନେ ?"

"ଆକ୍‌ସିଡେଣ୍ଟାଲ ଡେଥ୍ । ତେଣୁ ପୋଷ୍ଟମାର୍ଟମ, କରୋନର ଇତ୍ୟାଦି, ମୋର ଦେହର କଟାକଟି ମୁଁ ଦେଖୁଥିଲି ।"

ଦାଦା ଶିହରି ଉଠିଲେ । ଭୂତ କହିଲା--

ଛାଡ଼ ସେ କଥା ! ଏଗାର ବର୍ଷ ବିତିଗଲାଣି । ପୁଅର ବାହାଘର ହୋଇ-ଗଲାଣି । ତା'ର ଗୋଟିଏ ପୁଅ । ମୋ ସ୍ତ୍ରୀକୁ ମଧ୍ୟ ସୁଖରେ ରଖିଛି । ତେଣୁ ଚିନ୍ତା ନାହିଁ ।

ଭୂତ ଚୁପ ହୋଇଗଲା । ଦାଦା ମଧ୍ୟ ଦୁଃଖିତ ହେଲେ ।

ଭୂତ ପୁଣି କହିଲା—"ଆଜି ତମ ପାଖରେ ଟିକେ କାମ ଅଛି । କରିବେ ?"

ମୁଁ !! ତୁମ କାମ କରିବ ?

ହଁ ।

ମଜା ଲାଗିବ ଦାଦା କହିଲେ—କୁହ !

ଏଗାର ବର୍ଷ ପରେ ବଦଳି ହୋଇ ମୁଁ ପୁଣି ଥରେ ବମ୍ବେ ଆସିଛି ।

ବଦଳି !······ମାନେ ?

"ମାନେ ଆମକୁ ମଧ୍ୟ ସ୍ଥାନାନ୍ତର କରିବାକୁ ପଡ଼ୁଛି, ନ ହେଲେ କିଛି ନା କିଛି ବ୍ୟବସ୍ଥା। ଆମ ଧର୍ମରାଜାର ନିୟମାନୁସାରେ ମୋର ବଦଳି ହୋଇଛି। ମୁଁ ଦୁଇଦିନ ହେଲା ଏଠାକୁ ଆସିଲିଣି। ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ ବୁଲିଗଲି; କିନ୍ତୁ ଜାଗା ନାହିଁ, ଶେଷ ଏଠାକୁ ଆସି ତୁମକୁ ଅପେକ୍ଷା କରିଥିଲି। ଏ ଘରେ ରହୁଥିଲି। ତେଣୁ ଘର ପ୍ରତି ସ୍ନେହ ଥିଲା। ଆସିଲି। ତମ ସଂସାର ଦେଖିଲି। ସମସ୍ତେ ଭଲ ଲାଗିଲେ। ତେଣୁ ତମ ଘରେ ରହିବାକୁ ଚାହୁଁଛି। ରହିବି କି?"

ଦାଦା କିଛି ବୁଝି ପାରିଲେ ନାହିଁ। ସେମିତି ଠିଆ ହୋଇ ରହିଲେ। ଭୂତଟି ତରତରରେ କହିଲା।

"ଆମେ କେହି ତୁମକୁ ହଇରାଣ କରିବୁ ନାହିଁ।"

'ଆମେ ମାନେ ?'

"ମାନେ ହଁ କହିଲେ ଫାମିଲି ନେଇ ଆସିବି।"

"ଫାମିଲି ?"

"ମୁଁ ମୋ ସ୍ତ୍ରୀ ଓ ଆମର ଅଢ଼ତିରିଶଟି ପିଲା।

"ଅଢ଼ତିରିଶ ?"

"ପଚିଶ ମରିଗଲେ।"

"ମଲେ! ମାନେ ?"

"ତାଙ୍କର ପୁନର୍ଜନ୍ମ ହେଲା।"

"ଏତେ ଜଣଙ୍କୁ ଯାଗା ଅଣ୍ଟିବ ?"

ତମ ଘରେ ଯେଉଁ ଜାଗା ଅଛି ସେଥିରେ ଅଢ଼େଇ ହଜାର ଭୂତ ଆରାମରେ ରହି ପାରିବେ।

ଦାଦାଙ୍କ ମୁଣ୍ଡ ବୁଲେଇଲା—କହିଲେ—

ମୁଁ ବହୁତ ଥକି ପଡ଼ିଛି। ଘରକୁ ଚାଲ। କଥାବାର୍ତ୍ତା ହେବା। ଆହୁରି ଦ' ମହଲା। ଚଢ଼ିବାର ଅଛି।

ଏହଠି ରୁହ। ତୁମ ସ୍ତ୍ରୀ ତୁମ ବାଟ ଚାହିଁ ଦୁଆର ମୁହଁରେ ଠିଆ ହୋଇଛନ୍ତି। ଆମେ ଯାହା ସବୁ କଥାବାର୍ତ୍ତା ହେଲୁ ତାହା ଆମ ଦୁହିଁଙ୍କ ଛଡ଼ା ଆଉ କେହି ଯେପରି ନ ଜାଣନ୍ତି। ତୁମେ ମନାକଲେ ମୁଁ ରହିବି ନାହିଁ, ଫେରିଯିବି। କିନ୍ତୁ ଥରେ ହଁ କଲେ ଆଉ ଘର ଛାଡ଼ିବାକୁ କହିବ ନାହିଁ।

ତମେ ଚୁପ୍ ଚାପ ଆସି ରହିଥିଲେ ମୁଁ କ'ଣ ଜାଣି ପାରିଥାନ୍ତି ?

ମଣିଷର ସଂସ୍କାର ମଲା ପରେ ମଧ୍ୟ ସେମିତି ରହେ । ମୁଁ ମୋ ଜୀବିତ ଅବସ୍ଥାରେ ମଧ୍ୟ କୌଣସି କାମ ହସ୍ତକ୍ଷେପ କରି ନାହିଁ । ଯାହା କରିଛି ଅନୁମତି ନେଇ । ଏମିତି ଚୁପ୍ ଚାପ୍ ଲକ୍ଷ ଲକ୍ଷ ଭୂତ ଲକ୍ଷ ଲକ୍ଷ ଘରେ ରହୁଛନ୍ତି । ତେଣୁ ପଚାରିଲି । ନାହିଁ କହିବେ କି ବର୍ତ୍ତମାନ ଯିବି । ତୁମକୁ ଆମେ କୌଣସି କଷ୍ଟ ଦେଉନାହିଁ । ଓଲଟି ଦରକାର ବେଳେ ସାହାଯ୍ୟ କରିବୁ ।

କେମିତି କରିବ ? ଦାଦା ପଚାରିଲେ ।

ଆଖି ବୁଜ ।

ଦାଦା ଡରିଗଲେ ।

ତମେ ଡରିବ ଯଦି ମୁଁ ତୁମ ଘରକୁ ଆସିବି ନାହିଁ ।

ବୁଝି ବୁଜୁଛି ।

ଦାଦା ଆଖି ବୁଜିଲେ । ସାଙ୍ଗେ ସାଙ୍ଗେ ଭୂତ କହିଲା ।

ଏଥର ଖୋଲ ।

ଦାଦା ଆଖି ଖୋଲିଲେ ।

କେମିତି ଲାଗିଲା ?

କେଉଁ ବିଷୟରେ ?

ତମେ ତମ ଘର ପାଖରେ ଆସି ପହଞ୍ଚିଲଣି ।

କ'ଣ କହୁଛ ?

ଏଇ ସେପଟେ ଦେଖ ତମ ସ୍ତ୍ରୀ ଦୁଆର ମୁହଁରେ ଠିଆ ହୋଇଛନ୍ତି ।

ଦାଦାଙ୍କୁ ଖୁବ୍ ମଜା ଲାଗିଲା ।

ଏଥିଯୋ କେବେ ଯଦି ଅଳ ଆସିବ ମତେ କହିବ ।

କ'ଣ ମତେ ମାରିବ ?

ମାରିବି ! ମାନେ ?

ସମସ୍ତଙ୍କ ଆଗରେ ଏମିତି ଯଦି କିଛି କହିବ ତେବେ ଏ ବଲ୍ଲଭଙ୍କର ଅଧା ଲୋକ ହାର୍ଟଫେଲ୍‌ରେ ମରିଯିବେ ।

ହେଲା ଏକଥା କେବଳ ଆମ ଦୁହିଁଙ୍କ ଭିତରେ ।

ଚାଲିବ । ତା'ହେଲେ ଆସିବି ?

ଆସ—ଦାଦା କହିଦେଲେ ।

ବର୍ଡ଼ିଶ୍ୱରରୁ ଦାଦାଙ୍କ ସ୍ତ୍ରୀ ତାଙ୍କୁ ଜୋର୍ ଜୋର୍‌ରେ ଡ଼ାକେଇ ଉଠେଇଲେ । "ଭିତରକୁ ଆସ"

ଦାଦା ଗ୍ୟାଲେରୀରେ ଶୋଇଥିଲେ—ହଡ଼ବଡ଼େଇ ଭିତରକୁ ଆସିଲେ । ଦେଖନ୍ତି ତ କଳରୁ ପାଣି ଖାଲି ବର୍ଷୁଛି । ଗତ ତିନି ବର୍ଷରେ ଏଭଳି ଚମତ୍କାର ହୋଇ ନ ଥିଲା ।

ଦୁହେଁ ମିଶି ସବୁ ହଣ୍ଡା, ଡ୍ରମରେ ପାଣି ପୁରେଇ ରଖିଲେ । ଦାଦା ଖୁସି ମନରେ ବାହାରକୁ ଆସି ଗଦି ଉପରେ ବସିଲେ । ତାଙ୍କ କାନ ପାଖରେ ହସିବା ଶବ୍ଦ ଶୁଭିଲା ପରେ ପରେ ପ୍ରଶ୍ନ .."ପାଣି କାମ ସରିଲା ?'

ଆଁ ..ହୁଁ ..ହୁଁ ..ତିନି ବର୍ଷ ପରେ ଏ ଘରକୁ ପାଣି ଆସିଲା ; କିନ୍ତୁ ଏମିତି କିପରି ହେଲା ।

ମୁଁ ଯାଇ ଗଣପୁଲେଙ୍କ ପାଣି ପାଇପରେ ବସିଥିଲି ।

ଦାଦାଙ୍କ ପାଟି ବନ୍ଦ ।

ଗଣପୁଲେ ଭଳି ମନ୍ତ୍ରୀଙ୍କ କ'ଣ ରାଜି ହୋଇ ରହିବ । ସେଦିନ ସନ୍ଧ୍ୟାବେଳେ ପୁଣି ଥରେ ଫୁଲବରକୁ ତାଙ୍କ କଳ ଖୋଲିଲା । ତାଙ୍କୁ ମଧ୍ୟ ସ୍ୱର୍ଗ ଦେଖିଲା । କିନ୍ତୁ କିଛି ଉପେକ୍ଷା ଧରା ପଡ଼ିଲା ନାହିଁ ।

ପର ଦିନ ପୁଣି ସେହି ଘଟଣା । ଦାଦା ପାଣି ଭରି ବାହାରକୁ ଆସିଲେ ।

"ଠିକ୍ ଅଛ ତ ?"

ଠିକ୍ ତ ! କିନ୍ତୁ ପ୍ରତିଦିନ ତମକୁ ପାଇପରେ ବସିବାକୁ ପଡ଼ୁଛି । ବହୁତ କଷ୍ଟ ହେଉଥିବ ।"

"ମତେ କିଛି କଷ୍ଟ ନାହିଁ ।"

"ଏମିତି କ'ଣ ସମ୍ଭବ ?"

"ମୋ ଅଡ଼ ତିରିଶ ପିଲାଙ୍କ ଭିତରୁ ପାଞ୍ଚ ଜଣଙ୍କୁ ଗଣ ପୁଲେଙ୍କ ପାଇପରେ ବସିବାକୁ କହିଛି ।

"ଏମିତି ହେଲେ ଗଣ ପୁଲେଙ୍କୁ ଜମା ପାଣି ମିଳିବ ନାହିଁ ।"

"ତମେ କେତେ ବର୍ଷ ତଳୁ ପାଣି ବୋହି ଆଣିଲ ?"

'ତିନି ବର୍ଷ ।'

"ଏଥର ତିନି ବର୍ଷ ସେ ବୋହନ୍ତୁ । ସେତେବେଳକୁ ମୋ ପିଲାଗୁଡ଼ାକ ମଧ୍ୟ ବଡ଼ ହୋଇଥିବେ । ତାଙ୍କୁ ରହିବା ପାଇଁ ପାଇପ ଅଣ୍ଟିବ ନାହିଁ ।"

"ଏକବୋଝେ । ତମେ ମୋ ପାଇଁ ବହୁତ କଷ୍ଟ କରୁଛ ।

'ମୋର ମଧ୍ୟ ସେଥିରେ ସ୍ୱାର୍ଥ ଅଛି ।'

"କି ସ୍ୱାର୍ଥ ?"

"ଏ ଗଣପୁଲେ ମତେ ମଧ୍ୟ ଏମିତି ହଇରାଣ କରିଥିଲା । ମୋ ସ୍ୱଭାବ ମଧ୍ୟ ତୁମରି ଭଳି । ତେଣୁ ସେତେବେଳେ କିଛି କରି ପାରିଲି ନାହିଁ ।"

ସ୍ତ୍ରୀ ରାଧାଧର ଆସି ପହଞ୍ଚିଲେ । ତେଣୁ କଥା ବନ୍ଦ ହୋଇଗଲା ।

କୁଣ୍ଡରୁ ପନ ପାଣି ନାହିଁ ଦେଖିବା ମାତେ ଗଣପୁଲେ ରାଗିଯାଇ ଦାମଲେଙ୍କ କବାଟ ପିଟିଲା ।

"ଦାମଲ୍ୟା । ଶଳା ପାଇପକୁ କ'ଣ କଲୁ ।"

"ମୁଁ ଜାଣିନାହିଁ ।"

"ହଠାତ୍ ମୋ ପାଣି କେମିତି ବନ୍ଦ ହେଲା ।"

"ମୁଁ ଜାଣିନାହିଁ ।"

ଖବ ସହିଛ ତତେ ଷ୍ୟାଲେଷରୁ ତଳକୁ ଫୋପାଡ଼ି ଦେବି ।

ତୁ ଘରରେ ହାତମାର, ମୁଁ ବି ଦେଖିନେବି ।

ଦାଦାଙ୍କ ଧମକ ଶୁଣି ଗଣପୁଲେ ଦବିଗଲା । ଗୋଡ଼ ପିଟି ପିଟି ଘରେ ପଶିଲା ।

ସ୍ୱାମୀ ଏମିତି କଷ୍ଟ କହିବେ ତାଙ୍କ ସ୍ତ୍ରୀ ବିଶ୍ୱାସ କରିପାରିଲେ ନାହିଁ । ନ ହେଲେ ଗଣପୁଲେଙ୍କୁ ଦେଖିଲେ ସେ କବାଟ କିଲ କରୁଥିଲେ ।

ଆଜି ଏମିତି କେମିତି ହେଲା ?

ଗଣପୁଲେ ତା' ଘରୁ ପାଟି କରୁଥିଲା ।

"ହାରାମଜାଦା, ଶଳାର ଚର୍ବି ଚଢ଼ିଗଲାଣି । ଶୁଣି କରୁଛୁ ? ରହ ଶଳା, ମୁଁ ବି ତାଲି ପଦ ଶୁଣିଆ ନ ଡାକଛି···"

ଏ କଥା ଶୁଣି ଦାଦା ଛୁଟିଯାଇ ତା' ଦୁଆରି ମୁହଁରେ ହାକରି । "ଗଣପ୍ୟା ହ୍ୟାପ୍ ମାରିଦେଇ, ମାଇପ କାନରେ ମୁହଁ ଲୁଚେଇ ରଡ଼ି କରୁଛୁ । ହିମ୍ମତ ଅଛି ତ ବାହାରକୁ ଆ ।"

ସେତେବେଳକୁ ଭିଡ଼ ଜମି ଯାଇଥିଲା । କିନ୍ତୁ ଜନମତ ଦାଦାଙ୍କ ତରଫରେ ଥିଲା । ତେଣୁ ଗଣପୁଲେ ବିଲ୍କୁଲ ଚୁପ୍ ହୋଇଗଲା ।

ଖସ୍‌ବେଳେ ବ୍ୟାଙ୍କରେ ଲଞ୍ଚ୍ ଆଓ୍ୱାରରେ ଦାଦା ଖାଇବାକୁ ବସିଛନ୍ତି । ପଛରୁ ହସିବା ଶବ୍ଦ ଶୁଭିଲା ।

"କଣ ଏକବୋଟେ ?"

"ହଁ...ସକାଳେ ବହୁତ ହୃଷ୍ଟତ ଦେଖେଇଲ ।"

"ତମର ଆଶ୍ରା ଥିଲା ବୋଲି ।"

"ଏ ଗଣପୁଲେ ଏତେ ଛେଉରୁଆ ହୋଇଥିବ ମୁଁ ଜାଣି ନ ଥିଲି । ମତେ ଏମିତ ହଇରାଣ କରୁଥିଲା । ମୁଁ ଚୁପ୍ ଚାପ ସବୁ ସହୁଥିଲି ।" ଟିକେ ପାଟି କଲେ ଏ ଦାବଯାଏ । ଏ କଥା ସେତେବେଳେ ମୁଁ ଜାଣି ନ ଥିଲି ।

"ମୁଁ ବ କ'ଣ ଜାଣିଥିଲି ?"

"ସେ ଯଦ ଆଉ କିଛି ଗଣ୍ଡଗୋଳ କରିଥାନ୍ତା ; ତାହାହେଲେ ମୁଁ ମୋ ସୈନ୍ୟ ସହ ରେଡ଼ି ହୋଇ ବସିଥିଲି ।"

"କ'ଣ କରିଥାନ୍ତ ?"

"ଖେଷେଇ ଘର ପଟା ଉପରେ ଥିବା ପ୍ରଦ ତବା ପଛରେ ମୋ ସିପାଇଙ୍କୁ ବସେଇଥିଲି । ଡାଇନିଙ୍ଗ୍ ଟେବୁଲ ତଳେ ଦୁଇ ଜଣ ବସିଥିଲେ । ବାହାର ଘରେ ଥିବା ଗୋଡ଼ରେଜ୍ ଆଲମିରା ଉପରେ ମୋ ସ୍ତ୍ରୀ ବସିଥିଲା ।"

"ମାଇଁ ଗୁଡ୍‌ନେସ, କ'ଣ ହୋଇଥାନ୍ତା ?"

"ସେ ତମ ଦେହରେ ହାତ ମାରିଥିଲେ ସବୁ ତବାତକ ପଟାରୁ ତଳକୁ ଖସିଥାନ୍ତା । ଡାଇନିଙ୍ଗ୍ ଟେବୁଲ ବାହାର ଘରକୁ ଆସିଥାନ୍ତା, ଗୋଡ଼ରେଜ ଆଲମିରା ଖେଷେଇ ଘରେ ପଶିଥାନ୍ତା ।"

"ଏକବୋଟେ...ଗୋଡ଼ ଧରୁଛି...ମୋ ପାଇଁ ଏ ସବୁ କିଛି କର ନାହିଁ । ସମସ୍ତେ କହିବେ ମୁଁ ଗୁଣି କରିଛି । ସମସ୍ତେ ଗଣପୁଲେ ପଟ ହୋଇଯିବେ । ମତେ ଘର ଛାଡ଼ି ଯିବାକୁ ହବ ।"

'ଦାଦା ଡର ନାହିଁ, ତମ ନାଁ ପକେଇବ ନାହିଁ , କିନ୍ତୁ ତମ ପଛେ ପଛେ, ଅଛି, ଏତିକ ମନେ ରଖିଥାଅ ।"

ସେ ସ୍ୱରରେ ଦାଦାଙ୍କୁ ତାଙ୍କ ସ୍ତ୍ରୀ କହିଲେ —

"ତମେ ଅ଼ଜଠୁ ଗ୍ୟାଲେରୀରେ ଶୁଅ ନାହିଁ ।"

"କାହିଁକି ?"

ସେ ଗଣପୁଲେ ପ୍ରତି ମୋର ବିଶ୍ବାସ ନାହିଁ । ତମେ ଶୋଇବା ପରେ ଯଦି କିଛି କଲା ?"

"ଆରେ ସେ କ'ଣ କରିବ ?"

"କିନ୍ତୁ ଭିତରକୁ ଆସି ଶୋଉନ ?"

"ସେ ମାଙ୍କଡ଼କୁ ଡର ।"

"ତମର କ'ଣ ହୋଇଛି କହିଲ ? କେହି ମନ୍ତ୍ର କରିଛି, ନା ବର ପାଇଛ ?"

"କାହିଁକି ?"

"ତମ କଥା ବଦଳିଗଲାଣି, ଭାଷା ବଦଳି ଗଲାଣି । ମତେ ଡର ଲାଗୁଛି ।"

"ତମ ମୁଣ୍ଡ ଖରାପ ହେଲାଣି ? ପୁରୁଷ ଏମିତି ହବା ଦରକାର । ଦି ହାତ ଦବ ତ, ଦି' ହାତ ଖାଇବାକୁ ତୟାର ଦରକାର ।

"ଏହି କଥା ତ ମୁଁ ବାହାହବା ଦିନଠୁଁ କହିଆସୁଛି । କହିଲେ ଚିଡ଼ୁଥିଲ । ଘର ଘର ଦିନ କଥା କହୁ ନ ଥିଲ ।"

"କେବେ ? କେବେ ?"

"ମନେ ପଡ଼ୁଛି, ଥରେ ଆମେ ଯାତ୍ରା ଦେଖି ଯାଇଥିଲୁ । ସେଠି ଲଫଙ୍ଗା-ଟୋକା ଦି'ଜଣ କମେଣ୍ଟ କଲେ ବୋଲି ମତେ ଧରି ଗୁଳାଥରେ ତମେ ଘରକୁ ପଳେଇ ଆସିଥିଲ ।"

"ସେଠୁ ?"

" ଆଜି କିନ୍ତୁ ଗଣପୁଲେ ସାମନାରେ ଛାତି ଦେଖେଇ ଠିଆ ହୋଇଥିଲ ।"

"ପରିସ୍ଥିତି ଅନୁସାରେ ମଣିଷ ବଦଳି ଯାଏ ।"

"କିନ୍ତୁ ସେତେବେଳେ ବେଶି ଯବାନ୍ ଥିଲ ।"

"ଛାଡ଼ ସେ କଥା । ତୁ ଯେମିତି ଚାହୁଥିଲୁ ମୁଁ ସେମିତି ହୋଇଛି ତ ?"

"ଏ ବୟସରେ ମରଦପଣିଆ ଦେଖେଇ ଲାଭ କ'ଣ ?"

"ବୁଝିଲି, ବୁଝିଲି,—ବହୁତ କହିଲୁଣି । ତମ ମାଇପ ଜାତିର ଏହି ଗୁଣଟା ଖରାପ । ଯାହା ଅଛି ସେଥିରେ ଶାନ୍ତି ନାହିଁ ।"

"ମୋ ଧନ, ଭିତରକୁ ଆସି ଶୁଅ ।"

"ନାଁ । ଆଜିଠୁ ଏଇଠି ବାହାରେ ଶୋଇବି ଓ କବାଟ ମେଲାରଖି ଶୋଇବି । ମୁଁ ବି ଦେଖିବି କିଏ କ'ଣ କରୁଛି ?" ସେହି ଦିନଠୁଁ ଦାଦାଙ୍କ ଘରର କବାଟ ରାତିରେ ମଧ୍ୟ ମେଲା ରହିଲା ।

ଦାଦା ଧାମ୍‌ନଗର ବଦଳିଗଲେ । ଏହି କଥା ସମସ୍ତେ ଅନୁଭବ କଲେ ।

× × × × × ×

ଦିନେ ତାଙ୍କ ସ୍ତ୍ରୀ କହିଲେ—"ଅଜକାଲି ତୁମର ଘର ପ୍ରତି ଟିକେ ହେଲେ ଖିଆଲ ନାହିଁ ।"

"କାହିଁକି ? କ'ଣ ହେଲା ?"

"ତମେ କେବେ ନଜରି ଦେଖିଛ—ସିଲିଙ୍ଗଫ୍ୟାନ, ତାଳା ମାଣ୍ଡୁ ସବୁ କେମିତି ଅଇନା ଭଳି ସଫା ରହୁଛି । ଟିକେ ହେଲେ ଧୂଳିମଳି ବୁଡ଼ିଆଣି ଜାଲି ବି ଘରେ ଦେଖାଯାଉନି । ପଙ୍ଖା ନ ଖୋଲି, ଅଲ୍ଲୁଅ ନ ଝାଡ଼ି ମଧ୍ୟ ସବୁ କେମିତି ସଫା ରହୁଛି । ସବୁ କିଛି ଆଶ୍ଚର୍ଯ୍ୟ ଜନକ ।"

ଦାଦା ଡରି ଗଲେ । କ'ଣ କହିଥାନ୍ତେ ? ଏସବୁ ଜାଗାରେ ଭୂତ ବସାକରି ରହିଛନ୍ତି ?

ତାଙ୍କ ସ୍ତ୍ରୀ କହିଲେ—ତମେ ଆଜିକାଲି କିଛି ଗୋଟେ ମୋ ପାଖରୁ ଲୁଚଉଛ । ତମେ ସତରେ ବହୁତ ବଦଳି ଗଲଣି । ଦାଦାଙ୍କ ପାଖରେ କୌଣସି ଉତ୍ତର ନ ଥିଲା ।

'କାଲିଠୁ ମାସକପାଇଁ ଘରକୁ ଫେରିବାକୁ ଡେରିହେବ ।" ଦାଦା ରାତିରେ ଖାଉ ଖାଉ କହିଲେ ।

"କାହିଁକି ?"

"କ୍ୟାଶିୟର ଜଣକ ମାସେ ଛୁଟିରେ ଯାଇଛି ।"

"ତା' ଲାଗି ବଦଳି ବ୍ୟବସ୍ଥା କ'ଣ ହୋଇନି ?"

"ଷ୍ଟାଫ କମ । ଅବଶ୍ୟ ସମସ୍ତେ ସାହାଯ୍ୟ କରିବେ । ତଥାପି ସବୁ ପ୍ରେସର ମୋ ଉପରେ ପଡ଼ିବ ।"

"ତା' ମାନେ ମାସଜାକ ଘରକଥା ତୁମକୁ କହି ହବନି ।"

"ରେଜି କ୍ୟାସ ଗଣିବା, ହିସାବ କିତାବ କରିବା କ'ଣ ଏତେ ସହଜ । ଯିଏ କରୁଛି ସେ ଜାଣିଛି ।"

ପରଦିନ ଦୁଇଟାରେ ବ୍ୟାଙ୍କ ବନ୍ଦ ହେଲା । ଏଥର କ୍ୟାସଗଣି ହିସାବ କିତାବ କରିବାକୁ ହେବ । ଦାଦା ଭାବୁଛନ୍ତି । ଏତିକବେଳେ ଭୀନ ପାଖରେ ଶୁଭିଗଲା ।

ଶହେ ଟଙ୍କିଆ ଦୁଇହଜାର ଦଶ, ପଚିଶର ଛଅହଜାର ପାଞ୍ଚଶହ ହେଉଛି । କୋଡ଼ିଏର ତିନିହଜାର ଦୁଇଶହ ଅଠର, ଦଶର ଆଠ ହଜାର ଆଠଶହ ହେଉଛି. ପାଞ୍ଚର ତିନିହଜାର ଏକତ୍ରିଶ, ଦୁଇର ଦୁଇହଜାର ପାଞ୍ଚ'ଓ ଏକର ହଜାରେ ତିରିଶ ।

"ମାନେ ଏକଚୋଟେ ତମେ··· ?"

"କ୍ୟାସ୍ ଗଣି ରେଡ଼ି କରି ରଖିଛୁ । ଯାହା କହିଲି କେବଳ ଲେଖିଦିଅ ଫାଇନାଲ ମାର ଓ ଆରାମ କର ।"

ଦଶ ମିନିଟରେ ଦାଦାଙ୍କ ହିସାବ କିତାବ ଖତମ୍ ।

ସମସ୍ତେ ଦାଦାଙ୍କୁ ଅଶ୍ଚର୍ଯ୍ୟରେ ଅନେଇ ରହିଲେ ।

ମାସର ବାକିସ ଦିନ ବିତିଗଲା । ଦିନେ ହେଲେ ଦାଦାଙ୍କ' ହିସାବରେ ଭୁଲ୍ ନାହିଁ । ଦଶ ମିନିଟରେ ଦାଦାଙ୍କ ଷ୍ଟେଟମେଣ୍ଟ ଟେବୁଲ ଉପରେ ରେଡ଼ି ।

ଏ ସବୁ କେମିତି ହଉଛି ।

ଦାଦାଙ୍କୁ ଯେତେ ପଚାରିଲେ ବି ସେ ଚୁପ୍ ।

ଶେଷକୁ, ସୁକେଶଙ୍କର ଆଉ ସମ୍ଭାଳି ପାରିଲେ ନାହିଁ । ସେ ଦାଦାଙ୍କୁ ଉଠେଇ ବସେଇ ଦେଲେ ନାହିଁ । ସେ ଦିନ ସନ୍ଧ୍ୟାରେ ଦାଦାଙ୍କୁ ସମୁଦ୍ର କୂଳକୁ ଟାଣି ନେଲେ । ଦାଦା ମଧ୍ୟ ନିଜକୁ ରୋକି ପାରିଲେ ନାହିଁ । ସୁକେଶଙ୍କରଙ୍କୁ ସବୁ କଥା କହିଦେଲେ । ଦାଦାଙ୍କ କଥା ଶୁଣି ସୁକେଶଙ୍କର ମଧ୍ୟ ଚୁପ୍ ।

ଦାଦା ପଚାରିଲେ—"ତୁମକୁ ଏ ସବୁ ମିଛ ଲାଗୁଥିବ ।"

"ମିଛ ନୁହଁ । ଚମତ୍କାର !"

"ଚମତ୍କାର ?"

"ଆରେ ଦାଦା, ଯେତେ ହେଲେ ବି ଭୂତ ସେ ଭୂତ । ମଣିଷ ରାଗିଗଲେ ବେଶି କିଛି ନୋକସାନ ହୁଏନା । କିନ୍ତୁ ଭୂତ ଯଦି ରାଗିବ ? ତା ଭରସା କିଏ ଦବ ? କରସିନ ଠାରୁ ଡାଲଡା ପର୍ଯ୍ୟନ୍ତ ମିଳୁ ନ ଥିବା ଜିନିଷମାନ ସେ ଅତି ସହଜରେ ତୁମକୁ ଦଉଛି ।"

"କିଛି ବିପତ୍ତି ହେବ କି ?"

"ଦାଦା ଯେଉଁ ଶକ୍ତି ବିରୁଦ୍ଧରେ ଆମେ କିଛି କରି ପାରୁନା ; ସେ ଶକ୍ତି ଯଦି ପ୍ରକୃତରେ ଆମ ବିରୁଦ୍ଧରେ ଯାଏ ? ତୁମକୁ ସାହାଯ୍ୟ କରିବାକୁ ଯାଇ ଏ ଭୂତ ଯଦି ଅନ୍ୟକୁ ହଇରାଣ କରେ । ତା' ହେଲେ ?

"ମାନେ ?"

"ଲାଇନରେ ଠିଆ ନ ରହି ସିନେମା ଟିକେଟ ଡମେଟ୍ରୋଲୋମିଠ ପାଇଲ ? ସେ ମ୍ୟାନେଜରଙ୍କୁ ଡରେଇ ଧମକେଇ ଛ ? ତମେ ତ ଗଣେଶପ୍ରଣାଲଙ୍କ ଘରେ ସବୁ ସତକୁ ସତ ସେ କହିବା ମୁତାବକ କରିଥାନ୍ତା ?"

"ମୁଁ ଏସବୁ ଛାଡ଼ିବାକୁ ବାଧ୍ୟ ହୋଇଥାନ୍ତି ।"

"ତେଣୁ ଏକବୋଟରେ କେବେ ମଛଭ୍ରମ ହବ ଜନ୍ମ ହେବନ ।"

ଦାଦା ଚମ୍ ହୋଇ ଗୁମ୍ ମାରି ବସି ରହିଲେ ।

"ମଣ୍ଡୁନ୍ଧ ଭୟଙ୍କର କଥା ଜାଣିଛ ? ତୁମ ଜୀବନରେ ତୁମର ନିଜସ୍ୱ ବୋଲି ଆଉ କିଛି ନାହିଁ । ଏପରିକି ତମେ ସ୍ୱାମୀ ସ୍ତ୍ରୀ, ତମ ଦୁହିଁଙ୍କର ଏକାନ୍ତ ସମୟରେ ମଧ୍ୟ ଏ ଭୂତମାନେ ତୁମ ପାଖରେ ବସି ସବୁ ଦେଖୁଥିବେ ।"

ଏହି କଥାଟି ଦାଦାଙ୍କୁ ଜଡ଼ କରିଦେଲା । ଏ ବିଷୟରେ ସେ ଆଜ ପର୍ଯ୍ୟନ୍ତ କେବେ ହେଲେ ଭାବି ନ ଥିଲେ ।

କିଛି ସମୟ ପରେ ଗ୍ରୀଫେକର ପଚାରିଲେ—

"ତାକୁ କହିଲେ ସେ ଜାଗା ଛାଡ଼ି ଯିବ ?"

"ଅସମ୍ଭବ !"

"ତା' ହେଲେ ତମେ ଛାଡ଼ ।"

"କୁଆଡ଼େ ଯିବ ?"

"କିଛି ଦିନ ପାଇଁ ବଦଳି ମାଗ ।"

"ଦେଖେ, କିଛି ଗୋଟେ ନିଷ୍ପତ୍ତି କରିବାକୁ ହବ ; କିନ୍ତୁ ମୁଁ ଯାହା ସବୁ କହିଲି ଆଉ କେହି ଯେପରି ନ ଜାଣନ୍ତି ।"

"Don't Worry !"

ସେହି ରାତିରେ ଦାଦା ଖାଉଥିବା ସମୟରେ ତାଙ୍କ ସ୍ତ୍ରୀ କହିଲେ—"ଆଜ ଗୋଟେ ଆଚମ୍ବିତ ଘଟଣା ହେଲା ।"

"କ'ଣ ହେଲା ?"

"ସୁରେଶ ମାଣ୍ଡୁ ଉପରେ ଚଢ଼ିଥିଲା ।"

"କାହିଁକି ?"

"ପାଣି ଗରମ କରିବା ପାଇଁ ବଡ଼ ଡେକଚିଟିଏ ମୋର ଦରକାର ଥିଲା । ତେଣୁ ତାକୁ ଚଢ଼େଇଲି ।"

"କେତେଥର କହିଛି, ଦଶ ବର୍ଷର ପିଲାଟା, ତାକୁ ଏସବୁ କାମ କରିବ ନାହିଁ ।"

"ତୁମେ ଶୁଣିବ ନା ନାହିଁ ମୁଁ କ'ଣ କହୁଛି ?"

"କୁହ !"

"ସୁରେଶ ଟେବୁଲଟିକୁ ଉପରେ ଆଉ ମୋ ହାତକୁ ବଢ଼େଇଲା । ମୁଁ ଟେକଟ ଧରୁଛ, କେମିତି କେଜାଣି ତା' ଗୋଡ ଖସିଗଲା । ସେ ସିଧା ତଳକୁ ଖସି ପଡ଼ୁଥାନ୍ତା ; କିନ୍ତୁ ଅଧା ବାଟରୁ ପୁଣି ଥରେ ଉପରକୁ ଉଠିଗଲା । ମୁଁ ତ ସେ ପଡ଼ିଯିବ ଏହି ଡରରେ ଅଧମରା ହୋଇ ତଳେ ବସିପଡ଼ିଲି ; କିନ୍ତୁ ତାର କିଛି ହେଲନାହିଁ । ପରେ ତାକୁ ପଚ୍ଛରିବାରୁ କହିଲା, ତଳ ଗୁଡ଼ାକ ମିଶି ତାକୁ ଉପରକୁ ଟେକିଦେଲେ ।"

"ସେ ଏ କଥା କହିଲା ।

"ହଁ, ସେଡେଥର ପଚ୍ଛରିଲେ ସେହି ଗୋଟିଏ କଥା ।"

"ତାକେ କଥା, ତାକୁ ସେମିତି ଲଟିଥିବ ।"

"ଲଗିଥିବ କେମିତି । ଅଧା ତଳକୁ ଖସି ପୁଣି କେହି ଉପରକୁ କେମିତି ଯିବ ?"

"ତୁମେ କ'ଣ କହିବାକୁ ଚାହୁଁଛ ?"

"ମୁଁ କିଛି କହିଲେ ତମେ ଚୁପ୍ ହୋଇ ବସୁଛ ।"

"କୁହ ତୁମେ ବ କୁହ ।"

"ମତେ ଆଜିକାଲି ଏ ଘରେ ଓ ତୁମ ଭିତରେ ବହୁତ ଫରକ ହେଲା ଭଳି ଲାଗିଲଣି ।"

"ଭଲ ନା ମନ୍ଦ ।"

"ଭଲ ।"

"ତା' ହେଲେ କିଛି କୁହନା ।"

ସ୍ତ୍ରୀକୁ ସିନା ଚୁପ କରିଦେଲେ : କିନ୍ତୁ ଦାଦା ମନକୁ ମନ କିଛି ଗୋଟେ ସ୍ଥିର କରି ବଦଳା ପାଇଁ ଲାଗିଗଲେ ।"

କାନପୁର ନାଁ ଶୁଣି ଦାଦାଙ୍କ ସ୍ତ୍ରୀ ଅତି ବ୍ୟସ୍ତ ହୋଇ ପଡ଼ିଲେ । କିନ୍ତୁ ଦାଦା ଏକଦମ ଖୁସ୍ ଥିଲେ । ବ୍ୟାଙ୍କ ତରଫରୁ କ୍ୱାର୍ଟର । ପ୍ରମୋଶନ, ସବୁ କିଛି । ଚେତ୍ୟୁ ଆଉ ଚିନ୍ତା ନ ଥିଲା ।

ଦାଦା ବସ୍ତାନି ବାନ୍ଧି ବାହାରିଲେ । ପରିଚିତ ବନ୍ଧୁମାନେ ବିଦାୟ ଦେଲେ । ଘଣ୍ଟୁଲେ ମଧ୍ୟ ଖୁସ୍ ହୋଇ ଦାଦାଙ୍କୁ ବିଦାୟ ଦବାପାଇଁ ଷ୍ଟେସନ ଆସିଥିଲେ ।

ଦାଦା ଜିନଷ ସବୁ ଓଜନ କରିବାପାଇଁ ଓଜନ ଘରକୁ ଆସିଲେ । ସେ ପଟେ ତାଙ୍କ ସ୍ତ୍ରୀ ଠିଆ ହୋଇଥାନ୍ତି । ଏହି ସମୟରେ ଦାଦାଙ୍କ କାନ ପାଖରେ ଶବ୍ଦ ଶୁଭିଲା ।

"କିଏ, ଏକବୋଟେ ?"

"ହଁ ଦାଦା ! ଏ ସବୁ କ'ଣ- ଭଲ୍ କଲ । ମତେ କହୁଥିଲେ ମୁଁ ବଦଳ କ୍ୟାନସଲ୍ କରି ଦେଇଥାନ୍ତି ।"

"କିଛିଦିନ ପରେ ପୁଣି ମୁଁ ଫେରି ଆସିବ ନାହିଁ ?"

ସେଇଠିକ ବେଳେ ଦାଦାଙ୍କ ସ୍ତ୍ରୀ ତାହାଙ୍କୁ କହୁଥିଲେ—

"ବଦଳି ହେଲା ଯେ କାନ୍ପୁର ଭଲ ସହରଟି । ଏତେ ବୃଷ ବାଟ । ସେଠି ନା ଚଣ୍ଡା ନା ଜଣା । କେମିତି ଚଳିବ ସେଇ ଚିନ୍ତା ମତେ ଘାରୁଛି । ଏଠି କିଛି କଷ୍ଟ ନଥିଲା । ପାଣି ମଧ୍ୟ ଠିକ୍ ଗ୍ଲାସ୍‌ରେ ।

ଜନସ୍ମରଣ ଯଥା ସ୍ଥାନରେ ରହିଲା । ଦୁର୍ଘଟଣ ଖୁଲିଥିଲା । କିଛି ଅପୂର୍ବ କହି ଦାଦା ବାଥରୁମ ଆଡ଼କୁ ଗଲେ ।

ପୁଣି ସେଇ ଶବ୍ଦ ଶୁଭିଲା ।

"ଆରେ ମୁଁ ଭାବିଲି ତମେ ଗଲ ବୋଲି ?"

"ଯାଇଥିଲି । ଏଇତ ଫେରୁଛି ।"

"ଅଧଘଣ୍ଟା ଭିତରେ ଫେରି ଆସିଲ ? ତମର ଭଲ । ଇଚ୍ଛା ହେଲା, ମନ ଯୁଆଡ଼େ ଗ୍ରହିଲା ସେଠି ଯାଇ ପାରୁଛ । ଅଧ ଘଣ୍ଟା କୁଆଡ଼େ ଗଲ ?"

"କାନପୁର ଯାଇ ଆସିଲି ।"

"କାନପୁର ! କାହିଁକି ?"

"ତୁମ ସ୍ତ୍ରୀଙ୍କ କଥା ଶୁଣିଲି । ମନରେ ଦୁଃଖ ହେଲା । ତେଣୁ ବସ୍ତିଲି । ଆମ ଭିତରୁ କେହି ଜଣାଶୁଣା ସେଠି ଅଛନ୍ତି କି ନାହିଁ ଦେଖିଆସେ ।"

"କ'ଣ କହୁଛ ? ଦାଦାଙ୍କ ପାଟି ଖଣ୍ଡ ବାଜୁଥିଲା"

"ତମେ ମତେ କ'ଣ ଭାବିଲ କି ? ବିଲ୍‌କୁଲ୍ ଚିନ୍ତା କର ନାହିଁ । ତୁମ ଭାଗ୍ୟ ଜୋର୍‌ଦାର ଅଛି ।"

ଦାଦାଙ୍କର ଏଥର ପେଲ ଉଠିଲା ।

ମୋ ମାଉସୀ ପୁଅ ଭାଇ ସେଠି ଅଛି । ତାକୁ କହି ଆସିଲି । ତମ ଘରର ଭେଣ୍ଟିଲେଟର ଖୋଲି ତାକୁ ପୂରେଇ ଦେଇ ଆସିଛି । ତମେ ପହଞ୍ଚିଲା ବେଳକୁ ଘରଟି ଆଇନା ଭଳି ସଫା ହୋଇ ରହିଥିବ ।

ଗାଡ଼ି ଗ୍ରହିଲା । ଦାଦାଙ୍କ ଆଖିରୁ ଲୁହ ଝରୁଥିଲା । ସମସ୍ତେ କହୁଥିଲେ । ବଦଳି ହୋଇଛି ବୋଲି ଖୁସି ହୋଇଥିବା ଦାଦା , ଗଲାବେଳେ କାନ୍ଦିଲେ ।

•

# ଅବତାର

"ନାରାୟଣ ! ନାରାୟଣ !

"ସୁନ୍ଦର, ଆଜକାଲ କାହିଁ ?

"ନାରାୟଣଙ୍କୁ ଆଜ ବାର କଥା କାହିଁକି ମନେପଡ଼ିଲା ?"

"ଖାଲି ବାର ନୁହେଁ, ତାରିଖ, ମାସ, ବର୍ଷଯାକର ଛୁଟି କେତେ, ବ୍ୟାଙ୍କ୍ ହଲିଡେ କେତେ; ରବିବାରକୁ ଲଗେଇ କେତେଟା ଛୁଟି, ଡ୍ରାଇ ଡେ, ଡ୍ରାଇଡ୍ରାଇଭ୍ ଡେ କେତେ, କ୍ୟାଜୁଆଲ, ସିକ୍‌ଲିଭ୍ ଏମିତି ସବୁ ଦରକାର ।

"ମର୍ତ୍ତ୍ୟର ମାନବମାନେ ଏଭଳି ଯନ୍ତ୍ରାରେ ପଡ଼ିଛନ୍ତି, ଆପଣ କାହିଁକି ?"

"ସ୍ୱୟଂ ଅବତାର ନେବ ।"

"ଏତେ ଶୀଘ୍ର ।"

"ପୁରାଣ ଶାସ୍ତ୍ରରେ ଅବତାର, ବର୍ତ୍ତମାନର ଗ୍ରନ୍ଥ କହିବାକୁ ହେବ ।'

"କାହୁଁ କାହିଁକି ?"

"ସ୍ୱୟଂ ଯାଇ ଦେଖି ଆସିବ ।"

"ହଠାତ୍ ଜରୁରୀ ପଡ଼ିଲା କାହିଁକି ?"

"ମୁନିବର ଏହାର ଦୁଇଟି କାରଣ "

"ଶେଷଶାୟୀ ମୋ ପ୍ରତି କୃପାବନ୍ତ ହୋଇ କୁହନ୍ତୁ ।"

"ଏବେ ତ ମୁଁ ଟେଣ୍ଡିକ୍ ବୋର୍ ହୋଇ ଗଲିଣି"

"କି କାରଣ ?"

"ଏମିତ ଏଠି ପଡ଼ିରହି ଲକ୍ଷ୍ମୀଙ୍କ ହାତରୁ ପଦସେବା କେତେ ଦିନ ନେଉଥିବ ? ଦେବତା ହେଲେ ମଧ୍ୟ ସହିବାର ସୀମା ତ ଅଛି !

"ଭଗବାନ୍ ମୁଁ ଚିନ୍ତାରେ ପଡ଼ିଲିଣି ।"

"କି ଚିନ୍ତା ?"

"ଆପଣଙ୍କ ସ୍ୱାସ୍ଥ୍ୟ !"

"କାହିଁକି ?"

"ଟେଣରଫିକ, ବୋର ଏମିତ କେତେ କ'ଣ କହୁଛନ୍ତି ।

'ବଂଶ ଣତାବ୍ଦୀରେ ଜନ୍ମ ନେବାକୁ ହେଲେ ଏହି ଭାଷା ପ୍ରୟୋଗ କରିବାକୁ ହେବ । ସମୁ୍ତ ବୁଝିବା ଦିନ ଗଲା ।'

"ତା ସହିତ ସମ୍ମତ ମଧ୍ୟ ।"

"ସେଥିପାଇଁ ଅବତାର ନେବ ବୋଲି ଭାବୁଛୁ ।"

"କିନ୍ତୁ କାହିଁକି !"

"ଆଜିକାଲି ରପୋର୍ଟସ ମିଳୁ ନାହିଁ ।'

"ଭଗବାନ-କ୍ଷମା–ଏ ଦାସର ଭୁଲ୍ ହୋଇଛି ।"

"ମୁନିବର ତୁମକୁ ସବୁବେଳେ ଅଭୟ ପ୍ରଦାନ କରିଛୁ ; କିନ୍ତୁ ଏସବୁ ଭଲ ନୁହେଁ ।···ପୃଥିବୀରୁ କେବେ ଫେରିଲେ ।"

"ଦୁଇଦିନ ହେଲଣି ।"

'ତା ହେଲେ ତୁମର ଡଇକଲି ରପୋର୍ଟ କାହିଁ ?"

"ପଠେଇ ଦେବି ।"

'ଗତ ମାସରେ ଯେମିତ ପଠେଇଲ ସେମିତ ନୁହେଁ ।'

"କାହିଁକି ? କ'ଣ ହେଲା ?"

'ଆପଣଙ୍କ ପାଖରେ କୋଡ଼ିଏଟି କେଣ୍ ଥିଲା । ସେଥିରୁ ବାରଟା ପେଣ୍ଡିଙ୍ଗ୍, ଦଶଟା ଡିସ୍ ପୋଜଡ୍ ଦେଖେଇଲ ।"

'ଭୁଲ୍ ହୋଇଗଲା ।"

"କେମିତ ହେଲା ।'

'ମୋର ନୁହେଁ, ଆପଣଙ୍କର ଭଗବାନ ?'

"ମୋର ?

'ଆଜ୍ଞା । ଆପଣ ସମସ୍ୟାଗୁଡ଼ିକ ଏମିତ ଟାଳି କରିବେ ବୋଲି ମୁଁ ଜାଣି ନ ଥିଲି ।'

'କ'ଣ କହିବାକୁ ଚାହୁଁଛ ?'

'କୌଣସି ସରକାରୀ କଚେରୀ, ମ୍ୟୁନିସିପାଲିଟିରେ ଏମିତ ସମସ୍ୟାଗୁଡ଼ିକ ଟାଳି ହୁଏନା ।'

"ତା' ହେଲେ ଏମିତ ବୋଗସ୍‌" କାମ କାହିଁକ କରୁଛନ୍ତି ।

"ଭଗବାନ, ପ୍ରତ୍ୟେକ୍ଷ କାମ ଅପେକ୍ଷା କାମ କରୁଛୁ, ଦେଖେଇବାଟା ଅଧିକ ମହତ୍ତ୍ୱପୂର୍ଣ୍ଣ ।"

"କ'ଣ କହୁଛ ମୂନବର ?"

"ଆପଣ ଅବତାର ନେବେ, ତେଣୁ କହୁଛୁ । ଭାଷା ତ ଶିଖିଲେଣି, ଏଥର ସ୍ୱାଦ............ ..

"ହଉ ହଉ, କଥା ବଦଳାଅ ନାହିଁ, ତାଙ୍କର ରିପୋର୍ଟ..."

"ମୁହେଁ ମୁହେଁ କହ ଦଉଛୁ ।"

"କୁହ ।"

"ଭେଣଦରେ ଧାନ୍ୟ ନାହିଁ । ତ୍ରପଗୃପ କହୁଛି ଅଛୁ । ଡାଲଡା ନାହିଁ; ତେଲ ନାହିଁ, କରସିନ ନାହିଁ, ଗ୍ୟାସ ନାହିଁ, ପାଣି ନାହିଁ ଓ ବଜୁଳି ମଧ୍ୟ ନାହିଁ ।"

"କ'ଣ କହୁଛନ୍ତି ମୂନ ଶ୍ରେଷ୍ଠ ?"

"ତା'ଛଡ଼ା ଭେଜାଲ ଔଷଧ, ଭେଜାଲ ଖାଦ୍ୟ, ଭେଜାଲ ସିମେଣ୍ଟ, ପ୍ରବଳ ଦରଦାମ୍ ଯୋଗୁଁ ଢାହୁ ଢାହୁ ପଡ଼ିଲଣି ।

"ତଥାପି ମୁନବର...?"

"ଅବତାରର ଜରୁରୀ ନାହିଁ । କାରଣ ଜନତା ଅତ ସନ୍ତୁଷ୍ଟ । ରହିବାକୁ ଘର ନାହିଁ, ପିନ୍ଧିବାକୁ ଲୁଗା ନାହିଁ, ପିଇବାକୁ ଟୋପେ କ୍ଷୀର ମଧ୍ୟ ମିଳୁନାହିଁ ।"

"ମାସ୍ଟ ଗୁଡ଼୍ ନେସ ।"

"ହେ ଜନତା ଜନାର୍ଦ୍ଦନ । ଏ ଭାଷା..."

"ଭାଷା କଥା ଛାଡ଼, ଏସବୁ ଅଭାବ କାହିଁକ ?

"କ୍ଷମା କରନ୍ତୁ । ମୁଁ ତ କଳିଆ ନାରଦ ନାମରେ ପ୍ରସିଦ୍ଧ ।"

"ତଥାପି କୁହ ।"

"ଡିପାର୍ଟମେଣ୍ଟାଲ ଆକସନ୍ ହେବ ନାହିଁ ତ ?"

"ଏ ପୁଣି କ'ଣ ?"

ଏହାକୁ ସରକାରୀ କର୍ମ୍ମା ଅଦାଲତ ଅନୁସନ୍ଧାନ କୁହନ୍ତି । ଉଚ୍ଚ ପଦରେ ଥିବା ବ୍ୟକ୍ତି ଯଦ ଦୋଷୀ ସାବ୍ୟସ୍ତ ହୁଏ, ତା' ହେଲେ ସେ ପ୍ରମୋସନ ପାଏ ଓ ତଳତଳିଆମାନେ—"

"ଚଳଚଳାନ୍ତି ହୁଅନ୍ତି ।"

"ନା ଦେବାଧିଦେବ, ତାଙ୍କର ଚାଲି ବଦଳି ହୁଏ । ତେଣୁ ଅଭସ୍ତ ହଅନ୍ତି ।

"ହେଲା ।"

"ଅଭାବ କିଛି ନାହିଁ । ଜନତା ସରକାର ବିରୁଦ୍ଧରେ ବିଦ୍ରୋହ ନ କରୁ, ସେଥିପାଇଁ ଆବଶ୍ୟକ ଜିନିଷମାନ ବଜାରୁ ଗାଏବ କରାଯାଉଛି ।"

'ତା' ହେଲେ କ'ଣ ହୁଏ ।"

ଗାଏବ ହେଉଥିବା ଜିନିଷମାନ ଯେନ କେନ ପ୍ରକାରେଣ କମେଇବାରେ ତାର ସମସ୍ତ ଶକ୍ତି ଖର୍ଚ୍ଚ ହୁଏ । ଜନତା ସବୁବେଳେ ଅସ୍ଥିର ରୁହେ । ଅସ୍ଥିର ଓ ଭୟଭୀତ ଜନତା ନିସ୍ତାଶୂନ୍ୟ ହୋଇପଡ଼େ ।"

"ମୁନିବର ! ଯେଉଁପରି କହୁଛ, ମୁଁ ଅବତାର ନବା ଜରୁରୀ ନାହିଁ ।"

"ବିଲକୁଲ ଜରୁରୀ ନାହିଁ ।"

"କାହିଁକି ?"

"କାରଣ ଜନତା ଅବତାର ଚାହୁଁନାହିଁ ।

ଏହା କିପରି ଜାଣିଲେ ?"

କାରଣ ଜନତା ଅତି ଶାନ୍ତ, ସ୍ଥିର, ହେବୁକଛି ମୁଣ୍ଡପାତି ସହୁନଛି । ତେଣୁ ନୋ ଗଣ୍ଡଗୋଳ, ନୋ ଖୁନ, ନୋ ଚୋରି ।

"କିନ୍ତୁ ଯମ ରିପୋର୍ଟ ଦେଇଛନ୍ତି ତାଙ୍କ କାମ ବହୁତ ବଢ଼ିଯାଇଛି ।"

ତା'ର କାରଣ ଅପମିଶ୍ରଣ, ଦବେଇ ଠାରୁ ଦାରୁ ପର୍ଯ୍ୟନ୍ତ ସବୁଥିରେ ଅପମିଶ୍ରଣ । ତେଣୁ ବିଚରା ଜନତା ମରୁଛି ; କିନ୍ତୁ ଯିଏ ଏସବୁ କରୁଛି ତାଙ୍କୁ କେହି ମାରୁ ନାହାନ୍ତି ।

"ମାନେ ଶିଶୁପାଳଙ୍କ ସଂଖ୍ୟା ବଢ଼ିବାରେ ଲାଗିଛି ।"

ଠିକ୍ କହୁଛନ୍ତି, ଶହେ ଅପରାଧର କନ୍‌ସେକ୍‌ସନ ବଢ଼ି ବଢ଼ି ହଜାର ପର୍ଯ୍ୟନ୍ତ ଗଲଣି'

"ତା' ହେଲେ ରାଜ୍ୟକର୍ତ୍ତାମାନେ···"

ମଜାରେ ଅଛନ୍ତି । ତାଙ୍କ ଭାଷଣ, ଗପ ସବୁ କିଛି ଠିକ୍ ଚାଲିଛି ।

ଭଗବାନଙ୍କ ମୁଣ୍ଡ ଘାରିଲା, ସେ ବିକଳରେ ପଚାରିଲେ "ତାହେଲେ ସାମାନ୍ୟ ମଣିଷ ବଞ୍ଚିଛି କିପରି ?"

"ସେଥି ପାଇଁ କୃପା ପ୍ରଧାନ ଯଦ ଗବେଷଣା କରିବାକୁ ଚାହୁଁଛନ୍ତି । ତାହେଲେ ଅବତାର ନେଇ ପାରନ୍ତି, ମୁଁ ତ ସବୁ ଦେଖି ଅଡ଼ୁଆ ହୋଇ ଗଲିଣି ।"

"କେଉଁଥି ପାଇଁ ?"

"ଏଭଳି ପରିସ୍ଥିତିରେ ମଧ୍ୟ ମଣିଷ ତା' ଆଶା ଛାଡ଼ି ନାହିଁ । ଏ ଅବସ୍ଥାରେ ମଧ୍ୟ ସେ ଆନନ୍ଦ ନିର୍ମାଣ କରିବା ପାଇଁ କରୁଥିବା ପ୍ରଚେଷ୍ଟା ଦେଖି ମୁଁ ଧନ୍ୟ ହୋଇଗଲି ।"

"ମୁନିବର ! କ'ଣ କହୁଛନ୍ତି ?"

"ଦେବାଧିଦେବ ମଣିଷ ମାନେ ନାନା ବାଟ ଖୋଜି ନାନା ଉପାୟ କରି... "

"କିନ୍ତୁ ସେମାନେ ମତେ କାହିଁକି ମନେ ପକାଉ ନାହାନ୍ତି ।

"ଆପଣଙ୍କ କଥା ମନେ ପକାଇବାକୁ ସମୟ କାହିଁ ? ସକାଳୁ ଉଠି ପ୍ରଥମେ ଟୋପେ ଦୁଧ ପାଇଁ କ୍ଷୀର ଆଣିବାକୁ ଦଉଡ଼ । ସେଠି ଦେଖିଲ ବେଳକୁ କ୍ଷୀର ନାହିଁ । କ୍ଷୀର ମିଳିଲେ ଚିନି ନାହିଁ । ଚିନି କାହିଁକି, ମଣିଷକୁ ପୋଡ଼ିବା ପାଇଁ ମଧ୍ୟ କାଠ ନାହିଁ । କିରୋସିନ ନାହିଁ । ଏସବୁ ନାହିଁ ନାହିଁର ଘଣ୍ଟା ଶବ୍ଦରେ, ଦେଉଳର ଘଣ୍ଟା ପିଟିବା ଏମାନେ ଭୁଲି ଗଲେଣି । ନାନା ଉପାୟରେ ଦୁର୍ଲ୍ଲଭ ଜିନିଷମାନ ଘରକୁ ଆଣିବାରେ ତାଙ୍କର ସମସ୍ତ ଶକ୍ତି ଖର୍ଚ୍ଚ ହେଉଛି । ପ୍ରଭୁ ! ଗୋକୁଳରେ ଆପଣ କ୍ଷିର ଲହୁଣୀ ଗ୍ରେହେଇବା ପାଇଁ ଯେତେ ପ୍ରକାର ଯୋଜନା କରି ନଥିବେ । ତା ଠାରୁ ବେଶୀ ଏମାନେ ନିଜକୁ ସୁଖୀ କରିବା ପାଇଁ କରୁଛନ୍ତି ।

"ଗୋଟିଏ ଉଦାହରଣ ଦେବେ ?"

"ଅବଶ୍ୟ"

"କିଏ ସେ' ସେ ପୁରୁଷୋତ୍ତମ ?"

"ତା ନା ମଧ୍ୟ ପୁରୁଷୋତ୍ତମ ।"

'ସେ କ'ଣକଲା ?'

"ଯେନ କେନ ପ୍ରକାରେଣ"

"ପୁରୁଷ ତା ସାମର୍ଥ୍ୟ ଦେଖେଇ···।"

"ନା,ନା ଭଗବାନ ଯେନ କେନ ପ୍ରକାରେଣ ପରମାନେଣ୍ଟ ହେବା ପାଇଁ"

"ମାନେ ?"

"ଅବତାର ନେଇ ଗ୍ରହଣ କଲେ ଜାଣିବେ ।"

"ପୁରୁଷୋତ୍ତମ କ'ଣ କଲା ।"

"ତାର କଥା ଅଦ୍ଭୁତ ପ୍ରଭୁ । ଶୁଣିବା ହୁଅନ୍ତୁ ।

×          ×          ×          ×          ×          ×

"ପୁରୁଷୋତ୍ତମ ଗୋଟିଏ ପ୍ରାଇଭେଟ ଅଫିସରେ ଟେମ୍ପରାରି ଜବ୍ ପାଇଲା । ସ୍ଥକର ପାଇବାର ଆଠ ଦିନ ଯାଇନି, ନିଜ ବିବାହର ନିମନ୍ତ୍ରଣ କାର୍ଡ଼ ଅଫିସରେ ବାଣ୍ଟିଲା । ଅଫିସର ସମସ୍ତ ଷ୍ଟାଫ୍ ଚଢ଼ି ଗଲେ । ସେମାନେ ପରସ୍ପରକୁ ପଚାରିଲେ—

'ଏ ପୁରୁଷୋତ୍ତମ କିଏ ?'

'ଯେତିକି ତୁମକୁ ଜଣା ସେତିକି ମତେ । ଚାକିରୀ ପରିଚୟ ହୋଇନି ନିମନ୍ତ୍ରଣ କାର୍ଡ଼ କେମିତି ବାଣ୍ଟୁଚି ?'

'ବାଣ୍ଟୁ, କ'ଣ ବିଗିଡ଼ିଗଲା ।'

'ଏଥର କଣ୍ଟ୍ରିବ୍ୟୁସନର କଷ୍ଟ ବୁଝିବ ।'

'ତୁ ନିମନ୍ତ୍ରଣ କାର୍ଡ଼ଟି ଭଲ କରି ପଢ଼ିଛୁ ।'

କାହିଁକି ?

'କଦାଚିତ । ନୋ ପ୍ରେଜେଣ୍ଟସ୍ , ଛପା ହୋଇଥିବ ।'

'ଛପା ହୋଇନି ... ମୁଁ ସେଇ କଥାଟି ଆଗ ଦେଖିଲି ।

ବିଷ୍ଣୁ ନାରଦଙ୍କୁ ହଠାତ୍ ଅଟକାଇ ପଚାରିଲେ 'ମୁନିବର; ମଣିଷମାନେ ଏ ସବୁ ମଧ୍ୟ ଦେଖୁଛନ୍ତି ।

'ଭଗବାନ ଏଥିରେ ତାଙ୍କର ଦୋଷ କ'ଣ ? ପରିସ୍ଥିତି ସବୁ କରାଉଛି ।

'ପରିସ୍ଥିତି ?'

'ଛାଡ଼ନ୍ତୁ ସେ କଥା ... ଆମ ସ୍ୱର୍ଗରେ ସେଥିରୁ ପରା ଅଛୁ ।'

'ତା'ପରେ ।'

'ଏହି ସମସ୍ତରେ ଚପରାଶି କଷ୍ଟ ଧରି ପଡ଼ିଥିଲା । ଜଣେ ଦେଲାତ ଆଉ ଜଣେ ଦେଲା ନାହିଁ । ଏମିତି କରି ଷାଠିଏ ସରୁଆ ଷ୍ଟାଫ୍ ଭିତରୁ ମାତ୍ର ସାତ ଆଠ ଜଣ କଣ୍ଟ୍ରିବ୍ୟୁସନ ଦେଲେ ; କିନ୍ତୁ ପ୍ରତ୍ୟେକ ରିସେପ୍ସନକୁ ଦିନ ଗୁରି ଜଣ ଗଲେ ।'

'ସେମାନେ ଗଲେ ଯିନା ; କିନ୍ତୁ ଯାହା ଦେଖିଲେ ସେଥିରେ ସେ ମୁହଁ ପାଲଟି ଗଲେ ।'

"ଏଭଳି କ'ଣ ଦେଖିଲେ ?'

"ପୁରୁଷୋତ୍ତମର ସ୍ତ୍ରୀକୁ ଦେଖିଲେ ।"

“କ'ଣ କହୁଛନ୍ତି?”

“ଦେବାଧି ଦେବ, ରମ୍ଭା, ଉର୍ବଶୀ, ତିଲୋତ୍ତମା, ମେନକା ଆମପାଇଁ ପୁରୁଣା । ତଥାପି ଦମୟନ୍ତୀକୁ ଦେଖି ଦେବତାମାନଙ୍କ ଅବସ୍ଥା ଯାହା ହୋଇଥିଲା···

“ଜାଣିଚୁ ।”

“ରେବତୀ ଦମୟନ୍ତୀଠାରୁ କାଣିଚୁଏ ସରସ” ହୁଁ···ହୁଁ। ଏବେ ଶିଘ୍ର ଅବତାର ନବାକୁ ବାହାରନ୍ତୁ ନାହିଁ । ତା'ପରେ କ'ଣ ହେଲା ଶୁଣନ୍ତୁ ।”

“କୁହ ।”

ରେବତୀକୁ ଦେଖି ଷ୍ଟେସନକୁ ଯାଉଥିବା ଲୋକମାନେ ଆଇସ୍କ୍ରିମ ପିନା ଖାଇଲେ, କିନ୍ତୁ ନିଦ ହଜେଇ ଫେରିଲେ; ନଜର ସଦାରକୁ ସେମାନେ ତୁଚ୍ଛ ମଣିଲେ । ଦେଖୁ ଦେଖୁ ଅଫିସରେ ସବୁ ମହଲରେ ଏ ବିଷୟରେ ଗରମା-ଗରମ ଚର୍ଚ୍ଚା ହେଲା ।’

‘ଷ୍ଟେସନ ଯାଇଥିଲ ?’

‘ହୁଁ ।’

“ତା ସ୍ତ୍ରୀ କେମିତି ।”

“ସତରେ ନିଦ ହଜନ୍ତି ।”

“କ'ଣ କହୁଛ ?”

“ତା ଆଗରେ ତମ ଆମ ସ୍ତ୍ରୀ ମାନେ······ ।”

× × × × ×

ଯାହା ଶୁଣିଲି ସତ କରେ ?

କ'ଣ ଶୁଣିଲୁ ।

“ପୁରୁଷୋତ୍ତମର ସ୍ତ୍ରୀ ମାନେ ସାକ୍ଷାତ··· ।”

ଦୟାକରି ତା କଥା ମନେ ପକାନା ।”

“କ'ଣ ହେଲା ?”

ଦେଖିଲେ ଜାଣିବୁ ।

ଏକଦମ ଖତମ କରି ଦେଲାଭଳି !

“ଆରେ ତାକୁ ଦେଖିଲି ପରେ ଜାଣିଲି, ଶଶୁର ମୋ ବେକରେ ଲୁଗା ଗଣ୍ଠି ଲଟିଏ ବାନ୍ଧିଛନ୍ତି ।

"ନାରାୟଣ, ପ୍ରତି ଟେବୁଲରେ ଏହି ଚର୍ଚ୍ଚା। ଲୋକମାନଙ୍କର କାମରେ ମନ ଲାଗୁ ନ ଥିଲା। ସବୁ ଧନଆ ଗୁହା ତ୍ରୁଷ ତାଙ୍କୁ ସାବ୍ୟସ୍ତ ଲାଗିଲା। ଯେଉଁମାନେ କର୍ଣ୍ଣ୍ଟ୍ରାୟସନ୍ ଦେଇ ନ ଥିଲେ ସେମାନେ ଭାବୁଥିଲେ ରେବତୀ ତାଙ୍କର କ ମୂଲ୍ୟମାପନ କରିଥିବ।"

"ସେଠୁ ଜଣଙ୍କ ମୁଣ୍ଡରେ ବୁଦ୍ଧି ଠୁକିଲା। ଉପାୟ ବାହାରିଲା। ଅଫିସ୍ ଷ୍ଟାଫ୍ ତରଫରୁ ପୁରୁଷୋତ୍ତମଙ୍କୁ ପାର୍ଟି ଦିଆଯିବ। ଅର୍ଥାତ୍ ରେବତୀଙ୍କୁ ମଧ୍ୟ ନିମନ୍ତ୍ରଣ କରାଯିବ। ଏଥର ସମସ୍ତେ ରେବତୀଙ୍କୁ ଭଲ ଭାବରେ ଦେଖି ପାରିବେ। ପାର୍ଟିର ଦିନଟି ସ୍ଥିର ହେଲା।

ଘଣ୍ଟାଏ ପୂର୍ବରୁ ସବୁ କାମ ବନ୍ଦ ହେଲା। ଟାଇପ ରାଇଟରଗୁଡ଼ିକ ଗୋଟିଏ କଣକୁ ଗଲେ। ଫାଇଲମାନ ହଲିଲା। ଟେବୁଲମାନ ଟଣ୍ଡାହେଲା। ପ୍ରତି ଟେବୁଲରୁ ରେବତୀଙ୍କୁ ସମସ୍ତେ ଭଲ ଭାବରେ ଦେଖିପାରିବେ, ଏଭଳି ସଜାଇ ଦିଆଗଲା।

"ବିଷ୍ଣୁ ଅସମ୍ଭାଳ ହୋଇ ନାରଦଙ୍କୁ କହିଲେ।

"ମୁନିବର, ନିଜ ମନରୁ ଫାନ୍ଦ କିଛି କହୁନ ତ?"

"ନା ଭଗବାନ। ଏ ସମସ୍ତ ଅଫିସର ମାନବ ଆପଣ କହିଥିବା ଗୀତା ପଢ଼ିନାହାନ୍ତି, ରାମାୟଣ–ମହାଭାରତ ମଧ୍ୟ ପଢ଼ିଥିବେ କି ନା ସନ୍ଦେହ; ତଥାପି ଚକ୍ରବ୍ୟୂହର ତତ୍ତ୍ୱ ଏମାନଙ୍କୁ ଜଣା। ତେଣୁ ଏମିତି ବ୍ୟୂହରଚନା କରି—

"ରେବତୀର ଶିକାର କରିବା ପାଇଁ ସ୍ଥିର କଲେ। ଏଇ କଥା ତ?"

"କେବଳ ଆଖିରେ"

"ମାନବର ଏ କି ଅଧଃ ପାତ। ଅବତାର—?"

'କ୍ଷମା ଭଗବାନ। ଆପଣ ଏ ମାନବମାନଙ୍କ ପ୍ରତି ନିର୍ଦ୍ଦୟ ହୁଅନ୍ତୁ ନାହିଁ।'

"କାହିଁକି—ଏଭଳି ଅନୈତିକ ..."

"ତଥାପି କ୍ଷମା କରନ୍ତୁ। ରାଜ୍ୟ କର୍ତ୍ତାମାନେ ତାଙ୍କୁ ଯେଉଁଭଳି ହଇରାଣ ହରକତ କରୁଛନ୍ତି, ସେଥିରୁ କ୍ଷଣିକ ଆନନ୍ଦ ପାଇଁ ଏମାନେ..."

'ତା' ବୋଲି କ'ଣ ପରସ୍ତ୍ରୀ...'

'ହଁ ଭଗବାନ...ତଥାପି ଏମାନେ ଏତେ ନିସ୍ୱ ଯେ, ଖାଲି ଦେଖ, ଦେଖ, ଦେଖିବେ। କିଛି କରିବେ ନାହିଁ।

'ସତ୍ ପାରୁନି। ଏ ସମସ୍ତଙ୍କୁ ଲକ୍ଷ୍ମୀଙ୍କ ଫଟୋ ବାଣ୍ଟି ଦିଅ'

'ଜଗତ ନାୟକ...ମୋ କଥାରେ ଆପଣ ବଡ଼ ଅଶୁଚିନ୍ତା। ମୁଁ ସବୁ ପୁରାଣରେ ବର୍ଣ୍ଣିତ କଥାଟିଏ କହିବ, ତାହା ଆପଣଙ୍କୁ ଭଲ ଲାଗିବ ନାହିଁ।

'କି କଥା ?'

'ନଳ—ଦମୟନ୍ତୀ ବିବାହରେ ଆପଣମାନେ ସମସ୍ତେ 'ନଳ'ର ଇଣ୍ଟିମେଟ୍ ହୋଇଗଲେ କାହିଁକି ? କାହିଁକି ଗଲେ ? ସ୍ୱର୍ଗରେ ଆପଣଙ୍କର କ'ଣ ଅଭାବ ଥିଲା। ଏ ବିଚରା ମାନବ ଖାଲି ନେଇ ସୁଖ ଆଶାରେ···'.

'ଠିକ୍ ଅଛ, ଠିକ୍ ଅଛ···ତୁମ କଥା କୁହ।

'ଶୁଣନ୍ତୁ।'

'ପାର୍ଟିଟା ଜମି ଉଠିଲା। ସାହେବ ମଧ୍ୟ ପାର୍ଟିରେ ହାଜର ଥିଲେ। ଯେହେତୁ ସାହେବ। ସେଥିପାଇଁ ତାଙ୍କ ସ୍ଥାନ ରେବତୀ ଓ ପୁରୁଷୋତ୍ତମ ପାଖରେ ଥିଲା, କିନ୍ତୁ ଏ ସାହେବ ସମସ୍ତଙ୍କ ସାହେବ ହୋଇଥିବାରୁ, ଗୃହେଟି ଋତୁ ଓ ଗୃହେଟି ସୁନ୍ଦରୀ ଅଧିକ ଦେଖି ଥିବାରୁ ସେ କ'ଣ ଫସିବା ଲୋକ। ସେ ପାଖ ଚଉକିକୁ ଟାଣି ଆଣି ସାମନାରେ ପକେଇ ବସିଲେ। ସାଇଡ଼ରେ ବସିଲେ ବାରମ୍ବାର ଦେଖି ହୁଏନି ଓ ବେକ୍ ବୁଲେଇ ଅନେଇବାଟା ଶୋଭା ଦଏନି। ଏ କଥା ସେ ସାହେବ ଜାଣିଥିଲେ। ତେଣୁ ସବୁଠୁ ବେଷ୍ଟ ଜାଗାଟି ସାହେବ ପାଇଲେ। ରେବତୀ ହସ ହସ ମୁହଁରେ ସମସ୍ତଙ୍କୁ ଭେଟ୍ ଥିଲା। ପ୍ରତ୍ୟେକ ମାନବ ଅର୍ଥାତ ପ୍ରତ୍ୟେକ ସ୍ୱାମୀମାନେ ଅନ୍ୟର ସ୍ତ୍ରୀ ଜଣକ ଯେତିକି ସୋଶିଆଲ୍ ହେବା ଦରକାର ବୋଲି ଭାବୁଥିଲା—ରେବତୀ ସେତିକି ସୋଶିଆଲ ଥିଲା।'

'ଏ ସୋଶିଆଲ ଶବ୍ଦର ଅର୍ଥଟା ବୁଝି ପାରିଲି ନାହିଁ ?'

'କୃଷ୍ଣାବତାରରେ ଆପଣଙ୍କୁ ଏମିତି ବହୁତ ସୋଶିଆଲ ଗୋପିମାନେ ଭେଟିଥିଲେ। ମାନେ ଆପଣ ତାଙ୍କ ସହିତ ଲୁଚକାଲି ଖେଳିଲେ। ତାଙ୍କ ଆଖି ବନ୍ଦ କଲେ। ଯମୁନା କୂଳରେ ତାଙ୍କ ବସ୍ତ୍ର ହରଣ କଲେ। ସେମାନେ ସବୁ ସହିଲେ। ଏ ସବୁ ସହିବା ମାନେ ହିଁ ସୋଶିଆଲ।'

'ବୁଝିଲି ଆଗକୁ କୁହ'

'ରେବତୀ ଏ ପାର୍ଟିରେ ସକ୍ରିୟ ଅଂଶ ଗ୍ରହଣ କରିବା ସହ ସେଥିରେ ରସ ଭରି ରଙ୍ଗ ଆଣିଲା। ସମସ୍ତଙ୍କ ଜୋକ୍ସରେ ମନ ଖୋଲି ହସିଲା। ସାହେବଙ୍କ ଗୋଟିଏ ଫାଲତୁ ଜୋକ୍‌ରେ ସେ ଟିକିଏ ନଇଁ ପଡ଼ି ସାହେବଙ୍କ ସହିତ ହ୍ୟାଣ୍ଡସେକ୍ କଲା। ସେ ସ୍ପର୍ଶରେ ସାହେବ କିତାଲରୁ ଆଡ଼ା ଦେଇ ତାକୁ ଗଲେ। ସେଠୁ ତାକୁ ହସାଇବା ପାଇଁ ଗୋଟିଏ ମୁକାବିଲା ଆରମ୍ଭ ହେଲଗଲା। ଯେଉଁମାନଙ୍କ ଜୋକ୍ ପ୍ରତି ଆଗ୍ରହ ନଥିଲା ସେମାନେ ରେବତୀର ପ୍ଲେଟକୁ ଅନେଇ ରହିଥିଲେ। ଯେଉଁ ଜିନିଷ ସରି ଯାଉଥିଲା ସାଙ୍ଗେ ସାଙ୍ଗେ ପରସି ଦିଆ ଯାଉଥିଲା।

'ଏତିକ ବେଳେ ଟେଲିଫୋନ ବାଜି ଉଠିଲା । ପୁରୁଷୋତ୍ତମ ତତ୍ପରତାର ସହ ଆଗେଇ ଯାଇ ଫୋନ ଶୁଣି ଫେରିଲା ।'

'କାହାର ଫୋନ ?' ରେବତୀ ପଚାରିଲା—

'ମାଉସୀର ବ୍ଲଡ୍ ପ୍ରେସରଟିଙ୍ଗ୍ ହୋଇଛି । ପୁରୁଷୋତ୍ତମ କହିଲା ।

'ତୁମେ ଯିବକି, ସାହେବ ପଚାରିଲେ ।'

'ଯିବ ବୋଲି ଭାବୁଛି । ସାଙ୍ଗେ ସାଙ୍ଗେ ଫେରି ଆସିବି, ରେବତୀ ଏଠି ରହୁ । ଟାକ୍ସରେ ଯାଇ ଟାକ୍ସିରେ ଫେରିବି ।

'ରେବତୀ ରହୁଛି ଶୁଣି ସମସ୍ତଙ୍କୁ ଭଲ ଲାଗିଲା ।'

'ତମେ ଏମିତି କର, ତଳେ ଡ୍ରାଇଭର ଅଛି । ମୋ ଗାଡ଼ି ନେଇ ଯାଅ ।

'ସାହେବ ଆପଣଙ୍କ କଷ୍ଟ......'

'ମୁଁ ଯାହା କହୁଛି କର...'

ନିରୁପାୟ ଭଳି ଚେହେରାକରି ପୁରୁଷୋତ୍ତମ ଗଲା । ପାର୍ଟିର ବାତାବରଣ ହଠାତ୍ ବଦଳି ଗଲା । ସମସ୍ତେ ଟିକେ ଫ୍ରି ବୋଧ କଲେ । ଘରେ କେଁ କେଁ ହୋଇ ବୁଲୁଥିବା ସିଲିଙ୍ଗ୍ ଫ୍ୟାନର ଆବାଜ ବନ୍ଦ ହୋଇ କେବଳ ପବନ ବାଜିଲେ ଯେମିତି ହାଲୁକା ଲାଗେ ସମସ୍ତେ ସେମିତି ବୋଧ କଲେ ।

'ମୁନିବର—ଆପଣ ଆଜିକାଲି ବହୁତ ମଡ଼ର୍ଣ୍ଣ ଶବ୍ଦ ପ୍ରୟୋଗ କଲେଣି ।

'ଏ ପୁରୁଷୋତ୍ତମର ସମ୍ପୂର୍ଣ୍ଣ କାହାଣୀଟି ଆପଣଙ୍କ ପାଖରେ ସାଦର କରିବା ପାଇଁ ଧର୍ମରେ ବହୁତ ଦିନ ରହିଗଲି । ଏ ପରିଣାମ ତା'ର ।'

'ଠିକ୍ ଅଛି, ରେବତୀ କଥା କୁହ ।'

ସାଙ୍ଗେ ସାଙ୍ଗେ ଫେରି ଆସୁଛି କହି ଘଣ୍ଟାଏ ବିତିଗଲା । ପୁରୁଷୋତ୍ତମ ଫେରିଲା ନାହିଁ । ସେଠୁ ଯେଉଁମାନେ ଦୂର ବାଟରୁ ଆସିଥିଲେ । ସେମାନେ ଜଣ ଜଣ କରି ଖସିଲେ, ପାଖ ବାଲା ଦଶ ପନ୍ଦର ମିନିଟ୍ ଅପେକ୍ଷା କରି ଖସିବା ଆରମ୍ଭ କଲେ । ଶେଷକୁ ସାହେବ ଓ ରେବତୀ ରହିଗଲେ । କାରଣ ସାହେବଙ୍କ ଗାଡ଼ି ଫେରି ନ ଥିଲା ।

ସାହେବ ମଧ୍ୟ କେତେ ସମୟ ଅପେକ୍ଷା କରନ୍ତେ ? ଶେଷକୁ ଟ୍ୟାକ୍ସିରେ ରେବତୀକୁ ଧରି ତା ଘରେ ତାକୁ ଛାଡ଼ିଲେ ।

ସାହେବ ଯିବାର କିଛି ସମୟ ପରେ ପୁରୁଷୋତ୍ତମ ଫେରିଲା ।

'ଏତେ ସମୟ କୁଆଡ଼େ ରହିଲ ?'

'ମାଉସୀଙ୍କୁ ହସ୍‌ପିଟାଲ ନେବାକୁ ପଡ଼ିଲା ।'

'ତାଙ୍କ ଦେହ କ'ଣ ବେଶୀ ଖରାପ ।'

'ମୁଁ କେମିତି ଜାଣିଲି ?'

'ତୁମ ମାଉସୀ ପରା ?'

'ମୁଁ କେବେ କହିଲି ମୋ ମାଉସୀ ? ସେ ମୋ ସାଙ୍ଗର ମାଉସୀ ! ହସ୍‌ପିଟାଲରେ ମାଉସୀଙ୍କୁ ଛାଡ଼ି ଡ୍ରାଇଭରକୁ ନେଇ ମାର୍କେଟ ଗଲି । ସବୁ କିଣି ଏଇତ ଫେରୁଛି ।'

'ତଥାପି ତୁମେ ଆସିଥିଲେ ଭଲ ହୋଇଥାନ୍ତା'—

'ମୁଁ ଆସିଥିଲେ ସାହେବ କ'ଣ ତତେ ଏଠି ଟ୍ୟାକ୍‌ସିରେ ଆଣି ଛାଡ଼ିଥାନ୍ତା । ଆମକୁ ବସରେ, ଧକର ଚକର ହୋଇ ଆସିବାକୁ ପଡ଼ିଥାନ୍ତା ।'

'ପାର୍ଟିରେ ପୁରୁଷୋତ୍ତମର ଅଫିସରେ ସ୍ଥିତି ମଜ୍‌ବୁତ ହୋଇଗଲା । ଏତେ ସୁନ୍ଦର ସ୍ତ୍ରୀ ପାଇଥିବାରୁ ସମସ୍ତେ ତା'ର ଅଭିନନ୍ଦନ କଲେ ।'

କିଛି ଦିନ ପରେ—ହଠାତ୍‌······

'ଡାକ୍ତର କ'ଣ କହୁଛନ୍ତି ।'

'କ'ଣ କହିବେ ? 'କିଛି ଜାଣି ପାରୁନାହାନ୍ତି ।'

'ସେଠୁ କିଏ କହିଲା ତମେ ଆମ ଡାକ୍ତର ଅମୁକ ଅମୁକ ସ୍ପେଶାଲିଷ୍ଟ ପାଖକୁ ଯାଅ । କିଏ କହିଲା ମୋ ମାମୁଁ ବମ୍ବେ ହାସପାତାଳରେ ବଡ଼ ଡାକ୍ତର, ତାଙ୍କ ପାଖକୁ ଯାଅ । କିନ୍ତୁ ଦୁଇ ଦିନ ଭିତରେ ଜ୍ୱର ଯେମିତି ଶହେ ପାଖକୁ ଉଠିଥିଲା । ସେମିତି ଗୁଳି ବାଜିଲା ଭଳି ନର୍ମାଲ୍ ହୋଇଗଲା ।

ସମସ୍ତେ କହିଲେ ଜ୍ୱର ଏମିତି ଭଲ ହବା ଭଲ ନୁହେଁ । ମଝିରେ ଦୁଇଦିନ ଗଲା । ସ୍ୱରଅଚେତ୍ ପ୍ରଖର ହୋଇଗଲା ରେବତୀର ମସ୍ତିଷ୍କ ଭ୍ରମ ହୋଇଛି ।

ପୁଣି ଟ୍ରିଟ୍‌ମେଣ୍ଟ ଷ୍ଟାର୍ଟ ହୋଇଗଲା ।

ସାହେବଙ୍କ ଡାକରା ପାଇ ପୁରୁଷୋତ୍ତମ ତାଙ୍କ ବେଡ଼ନକୁ ଗଲା ।

'ସାହେବ ! ଲାଗୁଛି ମୁଁ ପାଗଳ ହେଇଯିବି ।'

'ଦେଖ, ସଂସାର ମାନେ ଏସବୁ ସହିବାକୁ ହବ । ମନ ଶାନ୍ତ ରଖ ।'

'ମୁଁ ବୁଝୁଛି, ତଥାପି······'

'ବର୍ତ୍ତମାନ କେମିତି ଅଛନ୍ତି ।'

'ସବୁ କିଛି ବହୁତ ଷ୍ଟ୍ରେଞ୍ଜ ।'

'ଏମିତ ?'

'ଆପଣ ବିଶ୍ବାସ କରିବେ ନାହିଁ—ଏଭଳି ଚମତ୍କାର ।'

'ମାନେ ?'

'ରେବତୀ ଗତ ଜନ୍ମର ସବୁ କଥା କହୁଛି ।'

'କ'ଣ କହୁଛନ୍ତି ?'

ଯାହା ସତ ତାହାହିଁ କହୁଛି ।

'କେମିତ ଜାଣିଲେ ।'

'ଆମେ ସାଇକିଆଟ୍ରିଷ୍ଟ ପାଖକୁ ଯାଇଥିଲୁ । ରେବତୀ ତାଙ୍କ ଘରର ସମସ୍ତ କଥା କହିବା ଆରମ୍ଭ କଲା । ଡାକ୍ତର ବାବୁ ପ୍ରଶ୍ନ ପଚାରିବାକୁ ଭୁଲିଗଲେ । ତା ପ୍ରଶ୍ନର ଉତ୍ତର ଦେଲେ ।'

'ଆଶ୍ଚର୍ଯ୍ୟ !'

'ଆପଣ ଆଶ୍ଚର୍ଯ୍ୟ କହୁଛନ୍ତି । ମୋ ନିଦ ଉଡ଼ିଗଲାଣି, ମୋ ସଂସାର ସରିଗଲା । ସାର୍ ।'

'ଏମିତ ଧୈର୍ଯ୍ୟହରା ହୁଅନା

ସାହେବ କେମିତ କହିବ ?

• 'କ'ଣ ହେଲା ।'

ରେବତୀ ଆଉ ଏ ଜନ୍ମ କଥା କହୁନାହିଁ, ସବୁ ଗତ ଜନ୍ମ କଥା । ମୋତେ ତା' ଦେହରେ ହାତ ମାରିବାକୁ ଦଉନାହିଁ ··

'ତମ ଉପରେ ରାଗ କାହିଁକି ।'

'ଗତ ଜନ୍ମରେ ମୁଁ ତା' ଭାଇ ଥିଲି କହୁଛି ।'

ଦୁଇ ଦିନ ପରେ ସାହେବଙ୍କ ଗାଡ଼ି ପୁରୁଷୋତ୍ତମ ଘରେ ଲାଗିଲା । ସାହେବ ତା ଘରେ ପଶିବା ମାତ୍ରେ···

'ସୁରେଶ ତମେ ଆସିଲ ।'

'ରେବତୀ ଏମିତ କ'ଣ କହୁଛୁ । ଏ ପରା ମୋ ସାହେବ । ଭୁଲିଗଲୁ ?'

'ଜଗା ····ସେ ତୋ ସାହେବ ହୋଇଥିବେ । ମୋର କିନ୍ତୁ ସୁରେଶ, କହି ସାହେବଙ୍କ ହାତ ଧରି ତାଙ୍କୁ ଘର ଭିତରକୁ ଟାଣି ନେଲା । ତାଙ୍କୁ ପଲଙ୍କରେ

ବସେଇ ତାଙ୍କ ଆଡ଼କୁ ଅନେଇ ରହିଲା । ଦେଖୁ ଦେଖୁ କାନ୍ଦିବା ଆରମ୍ଭ କଲା । ସାହେବଙ୍କ କାନ୍ଧରେ ମୁଣ୍ଡ ରଖି କାନ୍ଦିଲା ।

'ସାହେବ ଏସବୁ କ'ଣ କରିବେ ଜାଣିପାରୁ ନ ଥିଲେ । ତଥାପି କହିଲେ ମିସେସ୍ ରେବତୀ ?

'କିଏ ରେବତୀ ? ମୁଁ ? ରେବତୀ ଚତ୍କାର କରି ଉଠିଲା···ସୁରେଶ ! ତୁମେ ମତେ ପର କରିଦେଲ ? ତୁମେ ଚିହ୍ନିପାରୁନ, ମୁଁ···ତୁମ ମାଧୁରୀ ।'

'ରେବତୀ କେବଳ ତା ହି ଗତଜନ୍ମ କଥା ଜାଣିପାରୁଛି । ସେ କେମିତି ଜାଣିବେ ?'

'ଆଇ ଆମ ସରି । ରେବତୀ ଶାନ୍ତ ହୋଇ କହିଲା ।'

'ହଉ ତୁମେ ଶିଘ୍ର ଭଲ ହୋଇଯାଅ ।'

'ମୁଁ ଭଲ ଅଛି, ତମ ମିନାଅପା କେମିତି ଅଛନ୍ତି ?'

ସାହେବ ଚମକିଗଲେ··· ପୁରୁଷୋତ୍ତମ କହିଲା ।

'ସେ ସବୁ ଜାଣି ପାରୁଛି ।'

'ତାଙ୍କ ଶ୍ୱାସ ରୋଗ ଏମିତି ଭଲ ହବ ନାହିଁ । ଗତ ଜନ୍ମରୁ ତାଙ୍କୁ ଲାଗିଛି । ତୁମ ପୁଅକୁ ତାଙ୍କ ପାଖକୁ ଛାଡ଼ନାହିଁ । ତାଙ୍କ ଥାଳରେ ବସି ଖାଇବାକୁ ମନାକର ।

ରେବତୀ ଏସବୁ କେମିତି ଜାଣିଲା, ଏହି କଥା ସାହେବ ଭାବୁଛନ୍ତି—ରେବତୀ ପୁଣି କହିଲା ।

'ସୁରେଶ ଗତ ଜନ୍ମରେ ତୁ ମୋର ହେଲୁ ନାହିଁ । ଏ ଜନ୍ମରେ ।'

'ରେବତୀ—ହୋସ ରଖି କଥା କହ ।'

'ମୋର ଭୁଲ୍ ହେଲା ହଉ ତମେ ବସି ତମ ସାହେବଙ୍କ ସହିତ କଥା ହୁଅ--ମୁଁ ସାହେବଙ୍କ ପାଇଁ ସନ୍ଦେସ ମଗାଉଛି । ସାହେବଙ୍କୁ ସନ୍ଦେସ ବହୁତ ଭଲ ଲାଗେ । ସୁରେଶ ମଧ ସନ୍ଦେଶ ଭଲ ପାଉଥିଲା ।'

'ସାହେବଙ୍କ ମୁଣ୍ଡ ବୁଲେଇବା ଆରମ୍ଭ କଲା । ସେ ରେବତୀକୁ ବଲ ବଲ ହୋଇ ଅନେଇ ରହିଲେ ······।

'ତୁମେ ଗତ ଜନ୍ମରେ ଯେମିତି ଥିଲ ସେମିତି ଅଛ । ଏମିତି କ'ଣ ଦେଖୁଛ ? ଘରେ ଯେଉଁ ସିତାର ଥିଲା ତାକୁ ଦୁବବର୍ଷ ତଳେ ବିକିଦେଲ ?'

'ସାହେବ ଏଥର ଏଠୁ ପଳେଇ ଯିବାକୁ ବାହାରିଲେ ।'

'ରେବତୀ କିନ୍ତୁ ତାଙ୍କୁ ଛାଡ଼ିବାକୁ ନାରାଜ ।'
ଗତ ଜନ୍ମରେ ତମେ ଏମିତି ଗୀତ ଶିଙ୍ଘ ଶିଖି ଅଧାରୁ ଛାଡ଼ିଥିଲ ।'

ସାହେବ ଉଠି ବିଦାୟ ମାଗିଲେ ।

'ଭୁଲି ଯିବେନି ତ ?'

'ଭୁଲିଯିବି—କେମିତି ଭୁଲିଯିବି ?'

'ଆଉ ଅଲଗିନ'···

କାହିଁକି ?

'ସେ ନୂଆ ଗୃହକର୍ତ୍ତା ପାଇଯିବେ । ତାହା ମଧ୍ୟ ପରମାନେଣ୍ଟ; ସାହେବ କିଛି କହିବେ ପୁରୁଷୋତ୍ତମ ସେଠି ନଥିବାର ଦେଖି ରେବତୀ କହିଲା ।'

'ସୁରେଶ ଗତ ଜନ୍ମରେ ଆମର ମିଳନ ହୋଇ ପାରିଲା ନାହିଁ । ଏ ଜନ୍ମ ମଧ୍ୟ ଗଲା କିନ୍ତୁ ଏମିତି ଭେଟୁଥିବା—ସମସ୍ତଙ୍କ ଅଜାଣତରେ--'

'ତାହା କ'ଣ ସମ୍ଭବ ?'

'ସମ୍ଭବ କରିବାକୁ ହେବ । ମୁଁ ରାଧାଙ୍କ ଭଳି ମୋ କୃଷ୍ଣର ବାଟ ଚାହିଁ ବସିଥିବି ।'

'ମୁନିବର କାଇଣ୍ଡିଲି ଷ୍ଟପ୍ ଇଟ୍ ।'

'କାହିଁକି ଦେବାଧିଦେବ ?'

'ଏ ମାନବ ତାଙ୍କ ବଜାରୀ ଜାମାରୁର ପ୍ରେମକୁ ରାଧା କୃଷ୍ଣଙ୍କର ପବିତ୍ର ପ୍ରେମ କହୁଛନ୍ତି ।'

'ହଁ ନାରାୟଣ ।'

'କିନ୍ତୁ କାହିଁକି ?'

'ପ୍ରତ୍ୟେକ ପୁରୁଷ ଓ ପ୍ରତ୍ୟେକ ସ୍ତ୍ରୀ ନିଜ ପ୍ରେମକୁ ପବିତ୍ର ମନେ କରେ, ନିଜର ଅଫେୟାର, ପରର ଲଫଡ଼ା ।

'କିନ୍ତୁ······।'

'ଭଗବାନ୍ ! ପବିତ୍ର ହେଉ ନ ହେଲେ ଆଉ କିଛି । ଏ ଆଦର୍ଶ କିନ୍ତୁ ଆପଣ ହିଁ ଦେଖେଇଛନ୍ତି ।'—ତାଙ୍କୁ ଏବାଟ ଦେଖେଇଲେ···ଏଥର କହୁଛନ୍ତି···।

'ମୁନି ଶ୍ରେଷ୍ଠ——ରାମ ସୀତାଙ୍କର ଆଦର୍ଶ ମଧ୍ୟ ମୁଁ ହିଁ ତାଙ୍କ ସମ୍ମୁଖରେ ରଖିଥିଲି ।'

'ଭଗବାନ କ୍ଷମା କରନ୍ତୁ । କିନ୍ତୁ ଯାହା ସହଜ ତାର ଅନୁକରଣ ହୁଏ । ପଞ୍ଚ ଇନ୍ଦ୍ରିୟ ଦ୍ୱାରା ଯାହାକୁ ଜୟ କରି ହୁଏ ତାହା ସହଜ । ଯେଉଁଠି ମନ ସଞ୍ଚମର ପ୍ରଶ୍ନ ଉଠେ , ସେ ସବୁ କଷ୍ଟ ସାଧ୍ୟ । ତେଣୁ ତାକୁ ଛାଡ଼ିଦେଲେ । ଯେଉଁ ବିଜ୍ୟର ଅନୁଶାସନରେ, ଏ ମାନେ ବର୍ତ୍ତମାନ ଅଛନ୍ତି ଓ ଯେଉଁ ଅନ୍ନ ଗ୍ରହଣ କରୁଛନ୍ତି ; ସେଥିରେ ମନକୁ ଅନ୍ତଃଆର ଭିତରେ ରଖିବା କଷ୍ଟକର ।

'ଠିକ୍ ଅଛ, ସେଠୁ······"

'କି'ଣ କହିବ !'

'ପୁରୁଷୋତ୍ତମ ବ୍ଲକସ ଛାଡ଼ିଲା ।

'ହଁ।'

'କାହିଁକି ?'

'କହୁଛି !'

'ତିନି ଚାରିଦିନ ପରେ ସାହେବ ପୁରୁଷୋତ୍ତମଙ୍କୁ ରେବତୀ କଥା ପଚାରିଲେ ।

'ସାହେବ—ମୁଁ ଆଉ ସହି ପାରିବ ନାହିଁ ।

'ତୁମ ସଂସାରର ଏ ଅବସ୍ଥା ଦେଖି ମୁଁ ଅତି ଦୁଃଖିତ ।'

କାହାକୁ ଘରକୁ ଡାକି ପାରୁନି କାରଣ ତାଙ୍କ ଗତ ଜନ୍ମର ଓ ଏ ଜନ୍ମର କିଛି ନା କିଛି ସେ କହୁଛି । ମତେ ଯେତେ ଏକାନ୍ତ ମିଳିବ, ସେତେ ଭଲ ବୋଲି ଭାବୁଛି । ଅନ୍ୟମାନଙ୍କର ସହାନୁଭୂତି ଦୃଷ୍ଟିକୁ ମୁଁ ଆଉ ସହି ପାରୁନି ।'

ପୁରୁଷୋତ୍ତମ ଏକଥା କହିବାର ସପ୍ତାହେ ପରେ ସାହେବ ତାଙ୍କୁ ସ୍ପେସିଆଲ ବେତନ ଦେଇ, ତାକୁ ପରମାନେଣ୍ଟ କଲେ ।

'ମୁନବର, ଏସବୁ ଏତେ ଶିଘ୍ର··· ··?'

'ପୁରୁଷୋତ୍ତମ ଯଦି ଏ ବ୍ଲକସ ଛାଡ଼ି ଅନ୍ୟ ଜାଗାରେ ବ୍ଲକସ କରିଥାନ୍ତା । ତା'ହେଲେ ସେ କେବେ ଆସୁଛି । କେବେ ଯାଉଛି, ଛୁଟିରେ ରହି ଘରେ ବସୁଛି । ଏସବୁ ସାହେବ କେମିତି ଜାଣି ପାରିଥାନ୍ତେ । ସେଥିପାଇଁ ପରମାନେଣ୍ଟ କରାଗଲା ।'

'ବାଃ······ସୁନ୍ଦର······ତା'ପରେ !'

'ପୁରୁଷୋତ୍ତମ ଷ୍ଟୋରରେ ଆଉ ବେଶି କିଛି ନାହିଁ ।'

'ଏତିକରେ ସରିଗଲା ।'

'ସରିଗଲା ମାନେ ଏହି ମାର୍ଗ ଅବଲମ୍ବନ କରି ପୁରୁଷୋତ୍ତମ ତା' ଘର ମାଲିକଙ୍କୁ ଠକେଇଲା । ପାଣି କଳ ଘରକୁ ଅଣିଲା··ଇତ୍ୟାଦି ··ଇତ୍ୟାଦି···

'ମୁଁ ବୁଝିଲି ନାହିଁ ମୂନବର, ଏ ମାର୍ଗମାନେ ···'

'ଦେବାଧି ଦେବ, କର···ମସ୍ତିଷ୍କ ଭ୍ରମ ··ଗତ ଜନ୍ମର ମନେପଡ଼ିବା କଥା ସବୁ ମିଛ ।

'କ'ଣ କହୁଛନ୍ତି ?'

'ତୁହେଁ ମିଶି ଏ ସବୁ ଡ୍ରାମା କଲେ । ଘର ମାଲିକ, ସାହେବ—ପୁରୁଷୋତ୍ତମ ଘରେ ନ ଥିବା ସମୟରେ କିଛି ଦିନ ଗଲେ । ରେବତୀ ତାଙ୍କୁ କେବଳ ହସ ଖୁସି ଗପରେ ଝୁଲେଇ ରଖିଲା । ହାତକୁଆଁ ଦରିଦ୍ର ଦେଖି ତୁହେଁ ବିରକ୍ତ ହୋଇ ଆଉ ଆସିଲେ ନାହିଁ । ଏଭଳି ସ୍ବଭରେ ପୁରୁଷୋତ୍ତମ ଆଜି ସବୁଠୁ ସୁଖରେ ଅଛି । କାରଣ ସୁନ୍ଦର ସ୍ତ୍ରୀ, ରହିବା ପାଇଁ ବଢ଼ିଆ ଜାଗା । ଅଫିସରେ Cabin ଓ ପରମାନେଣ୍ଟ ପୋଷ୍ଟ, ଆଉ କ'ଣ ଦରକାର ।'

'ମୂନବର ମୋ ମନ ଉଦାସ ହୋଇଗଲା । ଏ ସବୁ ଶୁଣି···

'କାହିଁକି ?'

'ନିଜ ଧର୍ମ ପତ୍ନୀକୁ ମଣିଷ ଏଭଳି ବ୍ୟବହାର କରି ସୁଖ ଐଶ୍ବର୍ଯ୍ୟ ପ୍ରାପ୍ତ କରୁଛି ଦେଖି । ଏ ସବୁଥିରେ ପୁରୁଷ କାହିଁ । ବାହୁବଳ କାହିଁ ? ବୁକୁର ଆବେଗ କାହିଁ ? ରାମ ଅବତାରରେ ମୁଁ ଅଯଥା ସୀତାଙ୍କୁ ତ୍ୟାଗ କଲି ବୋଲି ଲୋକେ କହୁଛନ୍ତି । କିନ୍ତୁ ମୂନବର, ସେତେବେଳେ ବ୍ରତନିଷ୍ଠ ଓ କର୍ତ୍ତବ୍ୟ କଠୋର ରହିଲେ ହିଁ ରାମ ରାଜ୍ୟ ସୃଷ୍ଟି ହୁଏ ଓ ସ୍ତ୍ରୀ ଦେବତା ଭଳି ପୂଜାପାଏ । କିନ୍ତୁ ବର୍ତ୍ତମାନ ସ୍ତ୍ରୀକୁ ସାଧନ କରି ଲୋକେ ନିଜର ସାଧ୍ୟ ସାଧୁଛନ୍ତି । କାହିଁକି ?

'ଯଥା ରାଜା ତଥା ପ୍ରଜା । ଭଗବାନ—ଯେଉଁ ରାଜ୍ୟର ମନ୍ତ୍ରୀ, ଅମଲଦାର, ଖାସଦାର ଅପେୟ ପାନ କରନ୍ତି , ପରଦାର ଗମନ କରନ୍ତି, ସେ ରାଜ୍ୟରେ ଆଉ କ'ଣ ହୋଇପାରେ ?'

'ନା ସହି ହେଉନି—ମତେ ଅବତାର ନବାକୁ ହବ ।'

'ସେଠୁ କ'ଣ କରିବେ ?'

'ପୁନଶ୍ଚ ନିଜ ଈଶ୍ବରୀ ଶକ୍ତିର ଚମତ୍କାରରେ ସମସ୍ତଙ୍କ ଆଖିରେ ଅଞ୍ଜନ ଭରିଦେବି । ସତ୍ୟଂ-ଶିବଂ-ସୁନ୍ଦରଂ ର ଆଦେଶ······ଏ କ'ଣ ମୂନବରର ଆପଣ ହସୁଛନ୍ତି ?'

ହସିବି ନାହିଁ ତ ଆଉ କ'ଣ କରିବି ? ଯେଉଁ ରାଜ୍ୟରେ ଟଙ୍କା ହିଁ ସତ୍ୟ; ସତ୍ତା ହିଁ ଶିବ ଓ ସ୍ତ୍ରୀ ଦେହ ହିଁ ସୁନ୍ଦର ସେଠି ଆପଣ ଆଉ କି ଚମତ୍କାର ଦେଖାଇବେ ? ତାଙ୍କ ଚମତ୍କାର ଦେଖି ଆପଣଙ୍କ ଆଖି ଖୋସି ହୋଇଯିବ ।

'ତଥାପି ମୋତେ ଅବତାର ନବାକୁ ହେବ ।'

'ତା'ହେଲେ ନେବେ । ମୁଁ ଅଧିକ କ'ଣ କହିବି ।'

'ଏଥର ଠିକ୍ ବାଟକୁ ଆସୁଛନ୍ତି । ନାରାୟଣଙ୍କୁ ବିଶ୍ୱାସ କର ମଣିଷକୁ ନୁହଁ ।

'କ୍ଷମା ପ୍ରଭୁ ?'

'କେଉଁଥି ପାଇଁ ?'

'ଆପଣଙ୍କ ଚେତନା ଜାଗ୍ରତ ପାଇଁ ମତେ ଏତେ ବିସ୍ତାର ପୂର୍ବକ ସବୁ କହିବାକୁ ପଡ଼ିଲା । ଅବତାର କେଉଁଠି ନେବେ ?'

'ଗୋକୁଳ, ମଥୁରା, ଇନ୍ଦ୍ରପ୍ରସ୍ଥ, ନା ଦ୍ୱାରକା……'

'ମୁଁ ……ଅବତାର ନେବି, ସେ ସ୍ଥାନଟି ତୀର୍ଥସ୍ଥାନ ହୋଇଯିବ । ଏ ପୁରୁଣା ସହର ଗୁଡ଼ିକ ବାଦ ଦିଅ ।'

ତା' ହେଲେ ?

'ପୁରୁଷୋତ୍ତମର ରେସିଡେନସିଆଲ ଆଡ୍ରେସ ଟା ଦେଲେ ।'



# ଧୋକା

ଅନୁ ! ଆମେ ଦୁହେଁ କ୍ଷମା ମାଗୁଛୁ ; କିନ୍ତୁ ତୁ ଚୁପହୋଇ ବସନା କିଛି କହ ।

ମୁଁ ଏତିକ କହିବା ପରେ ମଧ୍ୟ ଅନୁ ଚୁପ୍ ହୋଇ ବସିଥିଲା ।

ମୁଁ ମୁକ୍ତାକୁ ଚାହିଁଲି । ସେ ମଧ୍ୟ ମତେ ଚାହିଁଲା ।

କିନ୍ତୁ କ'ଣ କରିବୁ, ଆମେ ଦୁହେଁ ବୁଝିପାରୁ ନଥିଲୁ ।

ଦିନ କଥା ହୋଇଥିଲେ ଆମେ ଦୁହେଁ ପନ୍ଦରମିନଟ୍ ଭିତରେ ଗଣ୍ଡିଲି ବାନ୍ଧି ସେଠୁ ଖସିଥାନ୍ତୁ ।

କିନ୍ତୁ ରାତି ଏଗାରଟାରେ କୁଆଡ଼େ ଯିବୁ ?

ଅନୁର ଖାଇବା ସରିଗଲା ।

କିନ୍ତୁ ହାତ ନ ଧୋଇ ସେ ସେମିତି ବସି ରହିଥିଲା ।

ଅନୁ ! ମୁକ୍ତା କହିବା ଆରମ୍ଭ କଲା ; କିନ୍ତୁ ଅନୁ ତାକୁ ଚାହିଁ କହିଲା ।

'ତମେ ସେ ଟଙ୍କିଆ ନୋଟଟା ନ ଦେଇ ଥିଲେ ଭଲ ହୋଇଥାନ୍ତା । ତା' ସ୍ୱରରେ ଥିବା ବିରକ୍ତିର ଭାବ ଆମ ହୃଦୟକୁ ଜାଳିଦେଲା ।'

ଅନୁ ଉଠି ହାତ ଧୋଇବାକୁ ଗଲା ।

ହୋଇଥିବା ଭୁଲଟି ସୁଧାରି ନ ହେଲା ଭଳି ଥିଲା—

ତେଣୁ ସେ ବିଷୟରେ ବେଶୀ କିଛି କହି ଲାଭ ନଥିଲା ।

କିନ୍ତୁ ସକାଳ ହେବା ପର୍ଯ୍ୟନ୍ତ ଛଅ ସାତଘଣ୍ଟା କେମିତି ଅନୁ ଘରେ କଟେଇବୁ ସେହି ଚିନ୍ତାରେ ଅମେ ଥିଲୁ ।

ସକାଳେ ଗଲାବେଳେ ବି ଅମେ ବେଶି କିଛି କ'ଣ କରିଥାନ୍ତୁ କେବଳ ଶହେଥର ଆମର ଭୁଲ୍ ହେଲା କହି ତା' ଘର ଛାଡ଼ିଥାନ୍ତୁ ।

ଇଟ୍ ଓ୍ୱାଜ ଯଷ୍ଟ ଏ ପ୍ରୋବ୍ଲେମ୍ ।

ପ୍ରୋବ୍ଲେମ୍ ଓ ବ୍ଲେମ୍ ମଧ୍ୟ ।

ସକାଳେ ଯେତେବେଳେ ଆମେ ଅନୁ ଘରେ ଆସି ପହଞ୍ଚିଥିଲୁ । ସେହି ରାତିରେ ଏମିତି କିଛି ପ୍ରୋବ୍ଲେମ୍ ହବ, ଏକଥା ଅମେ ସ୍ୱପ୍ନରେ ମଧ୍ୟ ଭାବିନଥିଲୁ ।

କଥାଟି ଥିଲି କେବଳ ଟର୍କିକଥା ନୋଟ୍ ଓ ସେଥିପାଇଁ ଅନୁ ଏମିତ କହୁ କହିବ ?

ଏତେ ବର୍ଷର ସ୍ନେହ ଭୁଲି ଅ.ମର ଅପମାନ କରିବ ?

ସମ୍ଭବ ହୋଇପାରେ ?

କାରଣ ସେ ଅନୁ, ଏକଥା ଆମେ ଭୁଲିଗଲୁ । ତା'ର ଏହି ଅଜବ ସ୍ୱଭାବ ଆମେ ଭୁଲି ଯାଇଥିଲୁ । ଏଥିରେ ଅନୁର ଭୁଲ୍ କ'ଣ ?

ତା'ର ଏହି ଅଜବ ସ୍ୱଭାବ ଦେଖିବାକୁ ଗଲେ ମତେ ପସନ୍ଦ ଥିଲା । ପ୍ରଥମରୁ, ଅର୍ଥାତ ବି.ଏ ପାସ୍ କରି ନନାଙ୍କୁ କହି ଘର ଛାଡ଼ିଲା ସେହି ଦିନଠୁ !

ସେ ଘର ଛାଡ଼ି ଗଲା, ଏ କଥା ତା ନନାଙ୍କ ଠାରୁ ଶୁଣିଲି ।

ତାଙ୍କ ଘରକୁ ଯାଇଥିଲି, ଅନୁକୁ ଦେଖିଲି ନାହିଁ । ତେଣୁ ପଚାରିଲି 'ନନା ! ଅନୁ ଦେଖା ଯାଉନି'

ଅନୁ ଘର ଛାଡ଼ି ଗଲା ।

ଘର ଛାଡ଼ିଲା ?

ପାଞ୍ଚବର୍ଷ ପାଇଁ ।

ମୁଁ ବୁଝିଲି ନାହିଁ ?

ମାନେ—ପ୍ରାଚ୍ୟେ ରୁ ଷୋଡ଼ଷେ ବର୍ଷେ···ଏ ନିୟମଟା କେବଳ ପୁଅ ପାଇଁ । ଆମେ ସମ୍ଭ୍ରାନ୍ତ । ଝିଅମାନଙ୍କ ପାଇଁ ସେହି ନ୍ୟାୟ ହେବା ଦରକାର ।

ସେ ସବୁ ବୁଝିଲି ; କନ୍ଦୁ ଘର କାହିଁକି ଛାଡ଼ିଲା ?

ମାତ୍ର ପାଞ୍ଚବର୍ଷ ପାଇଁ ।

କନ୍ଦୁ କାହିଁକି ?

ପାଞ୍ଚ ବର୍ଷ ପାଇଁ ଘର ଛାଡ଼ି ଯାଇଛୁ । କନ୍ଦୁ ତା ପାଇଁ ନୁହେଁ, ମୋ ପାଇଁ ।

ଅନୁ ଏ କଥା କହିଲା

ମୁଁ ଖରାପ ନ ଭାବେ ବୋଲି ।

ବୁଝିଲି—ମୁଁ ଅନ୍ଦାଜ କରି କହିଲି ।

ନନା କହିଲେ —'କନ୍ଦୁ ତା' କଥା ମଧ୍ୟ ମୋ ମନକୁ ପାଇଲା ।'

କ'ଣ ମନକୁ ପାଇଲା—,

ଅନୁ କହିଲା—ମୁଁ ଝିଅ ଜନମ ପାଇଛି । ତେଣୁ ବିବାହ ପରେ ବି ଏ ଘର ଛାଡ଼ି ପାରିବି । ମୁଁ ବାହା ବି ହେବି ନାହିଁ ଏଭଳି କିଛି ପଣ ମୁଁ କରି ନାହିଁ । କିନ୍ତୁ ବିବାହ ପୂର୍ବରୁ ପାଞ୍ଚ ବର୍ଷ ମୁଁ ମୋ ନିଜସ୍ୱ ଜୀବନ ବଂଚିବାକୁ ଚାହୁଁଛି ।

ମାନେ କେମିତି ?

ଏ କଥା ମଧ୍ୟ ମୁଁ ତାକୁ ପଚାରିଲି—ସେ କହିଲା ନନା—ପାଞ୍ଚ ବର୍ଷ ମୁଁ ମୋର, ମାନେ କେବଳ ମୋର ନିଜର ରହିବାକୁ ଚାହୁଁଛି । ସେ ବର୍ଷ ସହିତ କାହାରି ସମ୍ବନ୍ଧ ନଥିବ । ତା'ର କୌଣସି ହିସାବ ଯେମିତି ମତେ କେହି ନ ମାଗେ । ତୁମେ ମଧ୍ୟ ପାଞ୍ଚ ବର୍ଷ, ମୁଁ ଏକୁଟିଆ ରହିବି ।

ମାନେ ଏକ୍‌ଲା ରହିକି କ'ଣ କରିବ ?

ତାରି ଭଷାରେ କହିଲେ—କାହା ନା କାହାରି ଅନୁ ସଙ୍ଗରେ ରହିବାର ଅଭ୍ୟାସ ପ୍ରତ୍ୟେକ ବ୍ୟକ୍ତି ପରମ୍ପରା ଅନୁସାରେ କରେ । ନିଜର ବ୍ୟକ୍ତିତ୍ୱ ନିଜେ ସୃଷ୍ଟି କରେ ନାହିଁ । ଅନ୍ୟ ଏକ ବ୍ୟକ୍ତିର ପ୍ରଭାବ ସେଥିରେ ଥାଏ । ତା' ବିଚାର ଶକ୍ତିରେ ସେ ବ୍ୟକ୍ତିର ଛାଇ ପଡ଼ିଥାଏ । ଜନ୍ମଦାତା କୌଣସି ଏକ ନିର୍ଦ୍ଦିଷ୍ଟ ବ୍ୟକ୍ତିକୁ ଭଲ ପାଆନ୍ତି, ତେଣୁ ପିଲାମାନେ ମଧ୍ୟ ସେ ବ୍ୟକ୍ତିକୁ ଭଲ ପାଆନ୍ତି । ଯିଏ ଜନ୍ମଦାତାଙ୍କ ଶତ୍ରୁ, ସେ ପିଲାଙ୍କର ଶତ୍ରୁ । ଅର୍ଥାତ୍ ନିଜର ଏକ ସ୍ୱତନ୍ତ୍ର ମସ୍ତିଷ୍କ ନେଇ ଜନ୍ମ ହୋଇଥିବା ଜୀବଟିଏ ଯେଉଁ ମୁହୂର୍ତ୍ତରେ ଅନ୍ୟର ଶୁଣେ, ସେହି ମୁହୂର୍ତ୍ତରେ ସେ ନିଜର ଅସ୍ତିତ୍ୱ, ଦୁନିଆକୁ ଦେଖିବା ପାଇଁ ପ୍ରକୃତି ଦେଇଥିବା ସ୍ୱତନ୍ତ୍ର ଦୃଷ୍ଟିକୁ ସେ ହରାଇ ବସେ । ସେଥିପାଇଁ ପାଞ୍ଚ ବର୍ଷ ମୁଁ ଏକୁଟିଆ ରହିବାକୁ ଚାହୁଁଛି । ମୋ ନିଜର ବିଚାରଧାରା ଓ ତୁମ ବିଚାରଧାରାର, ତା' ଉପରେ ପଡ଼ିଥିବା ପ୍ରଭାବ ଭିତରେ ଦୂରତ୍ୱ କେତେ, ତାହା ମୁଁ ପରଖିବାକୁ ଚାହୁଁଛି । ମୁଁ ଚୁପ୍ ହୋଇ ଶୁଣୁଥିଲି । ନନା ଆଗକୁ କହିଲେ ।

ଏଠୁ ଯିବା ପୂର୍ବରୁ ସେ ବହୁତ କିଛି କହିଲା । ବଡ଼ ପାହିବା ପର୍ଯ୍ୟନ୍ତ ସେ କହୁଥିଲା । ଆଜି ପର୍ଯ୍ୟନ୍ତ କୌଣସି ଖରାପ କଥା ତମେ ମୋତେ ଶିଖେଇ ନାହିଁ । ଯାହା କିଛି ଭଲ ସବୁ ମତେ ଦେଲ । କିନ୍ତୁ ତୁମକୁ ଭଲ ଲାଗୁଥିବା କଥା ଓ ମତେ ଭଲ ଲାଗୁଥିବା କଥା ଏହା ଭିତରେ ପାର୍ଥକ୍ୟ ନିଶ୍ଚୟ ଥିବ ।

ମୁଁ ହଁ କହିଲି ।

ସେ କହିଲା, 'ତେଣୁ ସେ ପାର୍ଥକ୍ୟ ପାଇଁ ଦୁଃଖ କରିବାର କାରଣ ନାହିଁ । ଦେଖାର ଆର ଟ୍ରେନିସ ଫଙ୍ଗ୍‌ସନଙ୍ଗ୍ ଇନ୍‌ଡିପେଣ୍ଡାଣ୍ଟଲି । ତେଣୁ ଦ୍ୱୈତର ସୃଷ୍ଟି । ସେଥିରୁ ଦୁଃଖ । ତେଣୁ ଏ ଦୁନିଆକୁ ମୁଁ ମୋ ଚଷମାରୁ ଦେଖିବାକୁ

ଲୁହୁଛୁ । ପ୍ରତ୍ୟେକ ବସ୍ତୁର, ଘଟଣାର, ବ୍ୟକ୍ତିର ମୂଲ୍ୟାଙ୍କନ ମୁଁ ମୋ ସ୍ୱତନ୍ତ୍ର ଦୃଷ୍ଟିକୋଣରୁ କରିବାକୁ ଚାହୁଁଛି । ତାହା ମଧ୍ୟ ବିବାହ ପୂର୍ବରୁ ।

ଅନୁ ବିବାହ କରିବାକୁ ଚାହୁଁଛି ?

ଖାଲି ଚାହୁଁନାହିଁ । ସେ ଚାହୁଁଛି ନିଜର ପ୍ରଚାର କରିବ । ସେଥିରେ କପଟ ପରିପୂର୍ଣ୍ଣତା ଆସିବ, ତାହା ହିଁ ତାର ଲକ୍ଷ୍ୟ । କିନ୍ତୁ ତା' ପୂର୍ବରୁ ସେ ଏ ଦୁନିଆକୁ ଦେଖିବାକୁ ଚାହୁଁଛି । ନିଜର ଅନୁଭୂତି ମାନ ଏକତ୍ର କରିବାକୁ ଚାହୁଁଛି । ସମାଜରେ ନ ମିଶିଲେ ସମାଜ ଜାଣି ହୁଏନା ଓ ବ୍ୟକ୍ତିର ପରିଚୟ ମଧ୍ୟ ମିଳେ ନାହିଁ । ଏକ ବିଶାଳ ଅର୍ଥରେ ସମାଜ ଏକ ବ୍ୟକ୍ତି ଓ ବ୍ୟକ୍ତି ଘଟକ ରୂପେ ଏକ ସମାଜ । ଏଭଳି କିଏ ଜଣେ ସାଧୁ ମହାରାଜ କହୁଥିବା କଥା ସେ କହୁଥିଲା । ପୁଣି କହେ, ଏହା କିନ୍ତୁ ତାଙ୍କର ମତାମତ । ସେଥିରେ କେତେଦୂର ସତ୍ୟତା ଅଛି ମୁଁ ତାହା ଖୋଜିବି ।

ମାନେ ଏକ୍ସ୍‌ପ୍ଲୋର୍ କ'ଣ କରିବ !

ଚାକିରି ।

କି ଚାକିରି ?

ପ୍ରଥମେ ନର୍ସିଙ୍ଗ କୋର୍ସ କରିବ । ତା'ପରେ ନର୍ସ ହେବ ।

ନର୍ସ !

ହଁ ।

ନର୍ସ କାହିଁକି ?

ଦୁଇ ଦିନ ତଳେ ସେ ପଠେଇଥିବା ଚିଠିରେ ଲେଖିଛି ।

ସେ ଚିଠି କାହିଁ······?

ନନା ମତେ ସେ ଚିଠି ଦେଲେ । ସେଥିରେ ଦୁଇଟା ବାକ୍ୟ ଅତି ସୁନ୍ଦର ଥିଲା ।

ନର୍ସିଙ୍ଗର ପେଶା ସେ କାହିଁକି ଗ୍ରହଣ କଲା—କହିବାକୁ ଯାଇ ସେ ଲେଖିଥିଲା——

ନନା—

ହାସ୍‌ପିଟାଲ ଓ ରୋଗୀ ଏହା ଏପରି ଏକ ବିଶ୍ୱ ଯେଉଁଠି ସୁଖ ଓ ଦୁଃଖର ପ୍ରକୃତ ସ୍ୱରୂପ ଦେଖିବାକୁ ମିଳେ । ସେଥିରେ ଅପମିଶ୍ରଣ ନାହିଁ । ଅନ୍ୟତ୍ର ଓ ଜୀବନରେ ଘଟୁଥିବା ନାନା ଅବାନ୍ତର କଥାରେ ଥିବା ସୁଖ ଦୁଃଖଗୁଡ଼ିକ ତା'

ଆଗରେ ଫିକା ପଡ଼ିଯାନ୍ତି । ପୋଷାକ ଉପରେ ଛୁଆ ହୋଇଥିବା ଅତର ଓ ଫୁଲର ଗର୍ଭରୁ ଆସୁଥିବା ସୁଗନ୍ଧ ମଧ୍ୟରେ ଯେଉଁ ପାର୍ଥକ୍ୟ କିମ୍ବା ସୂର୍ଯ୍ୟ କିରଣରେ ଉତ୍ତପ୍ତ ଜମି ଓ ଆଗ୍ନେୟଗିରିର ଉଦ୍‌ଗିରଣରେ ଯେଉଁ ପାର୍ଥକ୍ୟ, ସେତିକି ପାର୍ଥକ୍ୟ ଏଠାରେ ଥିବା ସୁଖ ଦୁଃଖ ଓ ବାହାର ସୁଖ ଦୁଃଖରେ ଅଛି । ଏଠି ଭେଟୁଥିବା ସୁଖ, ଆନନ୍ଦ, ଫୁଲରୁ ଅସେ ଓ ଦୁଃଖ ଆଗ୍ନେୟଗିରି ଭଳି ଥାଏ । ରୋଗୀମାନଙ୍କୁ ଆମେ ଅବ୍‌ଜର୍ଭେସନ ଦେଉ, ତାହା ଯେତିକି ଶୁଦ୍ଧ ସେତିକି ଶୁଦ୍ଧ, ସୁଖ ଦୁଃଖର ଅନୁଭୂତି ଏଠି ମୁଁ ପାଉଛି । ଏ ସୁଖ ଦୁଃଖ ସହିତ ମୋର ପରିଚୟ ହୋଇଗଲେ । ସଂସାର ଆଉ ଚଳି ଉପରେ ହାଣ୍ଡିଭଳି ଲାଗିବ ନାହିଁ ।

ହାସପିଟାଲରେ ଅନୁ ତାର ଅସ୍ଥାନ ଦୃଢ଼ କଲା । ହାସପିଟାଲ ସାମାନାରେ ଥିବା ଗଳିରେ ଏକ ତିନି ମହଲା କୋଠାଘରେ ଘରଟିଏ ନେଇ ତାକୁ ସଜେଇଲା ।

ସବୁବେଳେ ହସ ହସ ମୁହଁ । କାହାରି ସହିତ ଅମେଳ ନାହିଁ । ଅଯଥା ଗପସପ, ଥଟ୍ଟା ତାମସାରେ ସମୟର ଦୁରୁପଯୋଗ ନାହିଁ । ଏକ ପ୍ରସନ୍ନ ଜୀବନ ସେ ଆରମ୍ଭ କଲା ।

ତେଣୁ ବମ୍ବେ ଗଲେ ଆମ ପାଇଁ ଗୋଟିଏ ଘର ହୋଇଗଲା । ଆମେ ଯେବେ ଯାଉଥିଲୁ ଅନୁ ବିଷୟରେ କିଛି ନା କିଛି ଭଲ କଥା ଶୁଣୁଥିଲୁ । ଅନୁ କେବଳ ବୟସରେ ବଢ଼ୁ ନଥିଲା । ଅନୁଭବରେ ସମୃଦ୍ଧ ହେଉଥିଲା ଓ ବୁଦ୍ଧି ପ୍ରଖର ହେଉଥିଲା । ତା' ବ୍ୟବସାୟରେ ସେ ପୂରାପୂରି ମଜ୍ଜି ଯାଇଥିଲା ।

ପୁରା K.E.M. ହାସପିଟାଲକୁ ସେ ଜିତିଥିଲା ।

ଡାକ୍ତର ସର୍ଜନ, ଫିଜିସିୟନ, ଡିନ, ମେଟ୍ରନ ତା'ର ସମ ବ୍ୟବସାୟୀ ଓ ପେସେଣ୍ଟ ସମସ୍ତଙ୍କର ସେ ପ୍ରିୟ ହୋଇ ପାରିଥିଲା ।

ଏ ସବୁ ଦେଖି ପରେ ମୁଁ ତାକୁ ପଚାରିଲି ।

'ଅନୁ ତୁ ଡାକ୍ତର ହୋଇଥିଲେ ଭଲ ହୋଇଥା'ନ୍ତା ।'

'କାହିଁକି ?'

ତୋ ବୁଦ୍ଧି, କର୍ତ୍ତବ୍ୟନିଷ୍ଠା, ଷ୍ଟାମିନା, ଏସବୁ ଦେଖିବା ପରେ ଭାବୁଛି ନର୍ସିଂଙ୍ଗ ବ୍ୟବସାୟରେ ଏସବୁ ବେକାର ଯାଉଛି । ତୋ କାଲିବର ଡାକ୍ତର ହେଲାଭଳି ।

ଅନୁ ହଠାତ୍ କହିଲା ସେଥିପାଇଁ ତ ମୁଁ ନର୍ସ ହେଲି । ଡାକ୍ତର ହବା ସହଜ, ଏଇ କଥା ମୁଁ ଭାବିଲି । ମତେ ଠାକୁର ସେତିକି ବୁଦ୍ଧି ଦେଇଛନ୍ତି, ସେତିକି ବୁଦ୍ଧି, ଧନ ଓ ପ୍ରଚେଷ୍ଟା ବଳରେ ଯେ କେହି ଡାକ୍ତର ହୋଇ ପାରିବ । ମୁଁ ମଧ୍ୟ ନିଶ୍ଚୟ ଡାକ୍ତର ହୋଇଥାନ୍ତି ।

ସେଇ କଥା ତ ମୁଁ କହୁଛି କାହିଁକି ଯେଉଁମାନେ ନର୍ସ ହେଲୁନାହିଁ ? ବର୍ତ୍ତମାନ ଯେତିକି ସେବା କରିପାରୁଛୁ ତା'ଠୁ ବେଶୀ ସେବା ବ୍ୟାଧିଗ୍ରସ୍ତ ଲୋକମାନଙ୍କର କରି ପାରିଥାନ୍ତୁ ।

'ବିଲ୍‌କୁଲ ନୁହେଁ—ସେବା ଦୃଷ୍ଟିରୁ ଦେଖିଲେ ଡାକ୍ତର ଅପେକ୍ଷା ନର୍ସ ଶ୍ରେଷ୍ଠ । ତା'ର ଦାୟିତ୍ୱ ବେଶୀ ।'

ଅନୁ ! ତୋ ବିଚାରଧାରାର ମୁଁ ସମ୍ମାନ କରୁଛି ।

ଖାଲି ସମ୍ମାନ ? ତା' ସେ ପକ୍ଷେ କିଛି ନାହିଁ ।

କହିଲୁ ଡାକ୍ତର ବଡ଼ ନା·········?

Just wait. କିଛି (ଓ୍ୱେଟ)—ମୁଁ ସେ ଅର୍ଥରେ ତୁଳନା କରିବାକୁ ଆଦୌ ଇଚ୍ଛୁକ ନୁହେଁ । କାରଣ ସେଭଳି ତୁଳନା ହୋଇପାରେନା । ଜଣେ ଭଲ ନର୍ସ ହେବା ଅତି କଠିନ କାମ । ଡାକ୍ତରୀ ବ୍ୟବସାୟରେ ଜ୍ଞାନର ମହତ୍ତ୍ୱ ବେଶୀ । କିନ୍ତୁ ମୋ ବ୍ୟବସାୟରେ ମନର । ଡାକ୍ତରର ଷ୍ଟେଥୋସ୍କୋପ୍ ରୋଗୀର ଛାତି ପର୍ଯ୍ୟନ୍ତ ପହଞ୍ଚେ । ନର୍ସର ହାତ ରୋଗୀର ହୃଦୟକୁ ସ୍ପର୍ଶ କରେ । ଥରେ ରୋଗ ଚିହ୍ନିଲେ ଡାକ୍ତରର କାମ ସରିଗଲା । ସେଇଠୁ ନର୍ସର କାମ ଆରମ୍ଭ ହୁଏ । ରୋଗୀ କ'ଣ ବୁଝିବାକୁ ହୁଏ । ମୋର ରୋଗ ବିଷୟରେ ଜାଣିବା ଦରକାର ନାହିଁ । ରୋଗୀ ଭିତରେ ଥିବା ମଣିଷକୁ ମୁଁ ଚିହ୍ନିବା ପାଇଁ ଚେଷ୍ଟା କରେ । କେମିତି ଚିହ୍ନିବି । ଏ କଥା କୌଣସି ଶାସ୍ତ୍ରରେ ଲେଖା ହୋଇନି । ରୋଗୀ ଜଣକ କେମିତି ମଲା, ଏ କଥା ଆଜିକାଲି ସହଜରେ କହି ହେଉଛି କାରଣ ବିଜ୍ଞାନର ପ୍ରଗତି । ସେ ରୋଗକୁ ନାମଦେଲା । କିନ୍ତୁ ମଣିଷ ସେମିତି ମଣିଷ ହୋଇ ରହିଛି । ସେତିକି ଅନାବିଳମୟ !

ବିଜ୍ଞାନ ପ୍ରତି ତୋର ରାଗ କାହିଁକି ?

ରାଗ ? କିଏ କହିଲା, ବିଲ୍‌କୁଲ ରାଗନାହିଁ । ମୁଁ ଏତିକି ଜାଣେ ବିଜ୍ଞାନ ବଞ୍ଚିଥିବା ମଣିଷକୁ ଅଧିକ ସୁଖରେ ବଞ୍ଚିବାକୁ ଶିଖାଏ । କିନ୍ତୁ ଯିଏ ମରୁଛି ତା'ପାଇଁ ବିଜ୍ଞାନ କିଛି କରିପାରେନା । ବଡ଼ ବଡ଼ ଧନ୍ୱନ୍ତରୀ ଏଠି ଫେଲ୍ ହୋଇଯାନ୍ତି । ରୋଗୀ ମଧ୍ୟ ଜାଣିପାରେ ; କିନ୍ତୁ ଧନ୍ୱନ୍ତରି ରହିଗଲେ ବୋଲି ନର୍ସ ରହିପାରେନା ।

ଅନୁ ! you are perfectly right.

ସେଥିପାଇଁ ଏ ନର୍ସର ପେଶା ମତେ ଅଧିକ ମହତ୍ତ୍ୱପୂର୍ଣ୍ଣ ଲାଗେ । ମୁଁ ଆମ ଡ଼ିନ ସାହେବଙ୍କୁ ସବୁବେଳେ କହେ । ଡାକ୍ତରମାନେ ରୋଗୀର ରୋଗକୁ ଦେଖନ୍ତି । ଆମେ ରୋଗ ସହିତ ରୋଗୀର ମନକୁ ମଧ୍ୟ ଦେଖୁ ।

ଏଭଳି ଏ ଅନୁ ଆଜି ହଠାତ୍ ରାଗି ଯାଇଥିଲା । କନାକୁ ଦେଇଥିବା ପାଞ୍ଚ ବର୍ଷର ସମୟ କେବେଠୁ ସରି ଯାଇଥିଲା । କାରଣ ତାକୁ କେହି ଛାଡ଼ିବାକୁ

ଘଜ ନ ଥିଲେ । ନନା ତାଙ୍କୁ ବାହାଘର କଥା ପଗୁରିଲେ । ସେ କହୁଥିଲା ବିବାହ ନିଶ୍ଚୟ କରିବ । ଆଦର୍ଶ ଘରସଂସାରର ସ୍ୱପ୍ନ ମୁଁ ସବୁବେଳେ ଦେଖି ଆସୁଛି ଓ ସେଥିରେ ମୁଁ ନିଶ୍ଚୟ ସଫଳ ହେବି । ନନା ବ୍ୟାଧିରେ ଗ୍ରସ୍ତ ରୋଗୀମାନଙ୍କ ମନକୁ ଯିଏ ସମ୍ମାନ ପାଉଛି । ସେ କ'ଣ ବଦ୍‌ମାସ୍ ପିଲା ଓ ଅଳ କରୁଥିବା ସ୍ୱାମୀକୁ ସମ୍ଭାଳି ପାରିବ ନାହିଁ ? ଏକ ସାମାନ୍ୟ ଘଟଣାକୁ ନେଇ ସେହି ଅନୁ ଆଜି ରାଗିଥିଲା । ଗୋଟିଏ ଟଙ୍କିକିଆ ନୋଟ୍ ପାଇଁ ।

ତାହା ମଧ୍ୟ ଆମେ ଜାଣିଶୁଣି କରିନଥିଲୁ ।

ଏଥର ବମ୍ବେରେ ରହଣୀ ସମୟରେ ମୋ'ର ବନ୍ଧୁ ଭିଡ଼େ ତାଙ୍କ ପତ୍ନୀସହ ଅନୁ ଘରକୁ ଆମକୁ ସାକ୍ଷାତ କରିବାକୁ ଆସିଲେ । ଗପସପରେ ରାତି ଏଗାରଟା କେତେବେଳେ ବାଜିଲା ଜାଣି ହେଲାନି ।

ଦୁହେଁ ବାହାରିଲେ । ଭିଡ଼େ କହିଲେ ।

ଆମେ ଟାକ୍‌ସିରେ ଯିବା । ଆଉ ବସରେ ଯିବାପାଇଁ ଧୈର୍ଯ୍ୟ ନାହିଁ । ଭିଡ଼େ ମତେ ଦଶଟଙ୍କିଆ ନୋଟଟିଏ ଦେଇ ଖୁଚୁରା ମାଗିଲେ । ଏତେ ରାତିରେ ଟାକ୍‌ସିବାଲା ପାଖରେ ଖୁଚୁରା ନ ଥିଲେ ଅସୁବିଧା ହବ । ମୋ ପାଖରେ ସମୁଦାୟ ନଅଟଙ୍କା ଥିଲା ।

ଟଙ୍କାଏ କମ ଥିଲେ ଚଳିବ । ଭିଡ଼େ କହିଲେ ।

ନା, ଏମିତି କହିଲେ ଚଳିବ ? ମୋ ସ୍ତ୍ରୀ ମୁକ୍ତା ଭିତରକୁ ଯାଇ ଅନୁର ଆଲମାରୀ ଖୋଲିଲା । କିନ୍ତୁ ପାଇଲା ନାହିଁ । ହଠାତ୍ ତା'ର ମନେ ପଡ଼ିଗଲା । କିଛି କହି ସେ ଅନୁର ଟେବୁଲ ପାଖକୁ ଗଲା । ସେଠି ଟେବୁଲ କାଚ ତଳେ ଗୋଟିଏ ନୂଆ ଟଙ୍କିକିଆ ନୋଟଟିଏ ରଖା ହୋଇଥିଲା । ମୁଁ ଓ ଭିଡ଼େ ମିଶି କାଚକୁ ଟେକିଲୁ । ମୁକ୍ତା ନୋଟଟି କାଢ଼ିନେଲା । ଭିଡ଼େ ଟାକ୍‌ସିରେ ଗଲେ । ପରେ ପରେ ଅନୁ dutyରୁ ଫେରିଲା । ତା' ଗାଧୁଆ ସରିବା ପରେ ଆମେ ଖାଇବାକୁ ବସିଲୁ । ଖାଇବାବେଳେ ଗପସପ ହଉ ହଉ ମୁକ୍ତା ଟଙ୍କିକିଆ ନୋଟଟି ଭିଡ଼େଙ୍କୁ ଦେଇଥିବା କଥାଟି କହିଲା । ସେଠୁ ସବୁ ବଦଳି ଗଲା ।

ମୋତେ ଖୁବ୍ ଭଲ ଲଗିଲା । ତେଣୁ ମୁଁ କହିଲି—କାଲି ସକାଳୁ ତୋ ନୋଟଟି……

Kindly stop it—କହି ଚୁପ ହୋଇଗଲା ।

ଅନେକ ସମୟ ପରେ କହିଲା—ତମେ ମୋ ନୋଟ ନ ଦେଇଥିଲେ ଭଲ ହୋଇଥାନ୍ତା ।

ବାଲକୋନରେ ଠିଆହୋଇ ଏତେ ସମୟ ପର୍ଯ୍ୟନ୍ତ ମୁଁ ସେହି କଥା ସବୁ ଭାବୁଥିଲି ।

ଏଡିକବେଳେ ମୁକ୍ତା ବାଲକୋନକୁ ଆସିଲା । ବାହାରକୁ ଯିବାର ପୋଷାକ ପିନ୍ଧି ଆସିଥିଲା ।

ଏ କ'ଣ ?

ବାହାରକୁ ଯିବା ।

ଏ ସମୟରେ କୁଆଡ଼େ ?

ଭଡ଼େଙ୍କ ପାଖକୁ ।

ତାଙ୍କ ପାଖକୁ ? କାହିଁକି ?

ତାଙ୍କ ପାଖରେ ସେ ନୋଟ ଅଛି କି ନାହିଁ ଦେଖିବା ପାଇଁ ··

It is sheer madness—

I accept the commemt । ଅନୁ ଅରେଇଆସି କହିଲା ।·

ଅନୁ ! ସେହି ନୋଟଟା ସେ ଟାକ୍ସିବାଲା ନେଇ ଯାଇଥିବ ?

ସମ୍ଭବ—କିନ୍ତୁ ସେହି ନୋଟଟା ଟାକ୍ସିବାଲା ନେଇଛି । ଏ କଥା ଭଡ଼େଙ୍କ ପାଖରୁ ଜାଣିଲେ ମୁଁ ରହିଯିବି ।

ଅନୁ ମୋ କଥା ଶୁଣିବୁ—

Please ମୋତେ ଆଉ ବେଶୀ କୁହନା । ମୋ ସ୍ୱଭାବ ତୁମେ ଜାଣ । ଯେଉଁ ପର୍ଯ୍ୟନ୍ତ ମଣିଷ ଚେଷ୍ଟା କରିପାରେ ସେ ପର୍ଯ୍ୟନ୍ତ କରିବ । ଯଦି ଜାଣିଲି ଆଉ କିଛି କରି ହେବନି । ସେହିଠି ମୋ ଖୋଜା ସରିବ ।

ଏ ପାଗଲାମିରେ ଆମେ ଅଂଶ ଗ୍ରହଣ କରିବାକୁ ବାଧ୍ୟ । କାରଣ ଆମେ ହିଁ ଦୋଷୀ ଥିଲୁ ।

ଆମେ ଟାକ୍ସି କରି ବାହାରିଲୁ ।

ଅନୁ ନୋଟ ପାଇଁ ରୁ ଏତେ ସବୁ······

ସେମିତି କିଛି ଅଛି ବୋଲି ତ ?

କହୀତ ବୈସ୍ତବିକ ନ ହୋଇଥିଲେ କହନ୍ତୁ ?

ନୋଟ ମିଳିଲେ କହିବ ।

ହୁଁ ।

ମୁକ୍ତାର ହୁଁ ର ଅର୍ଥ ବୁଝିପାରି କହିଲି ମୋ ମନ କହୁଛି—ନୋଟ ମିଳି ଯିବ ।

ଭଗବାନ କରନ୍ତୁ । ମିଳିଯାଉ । ଆମେ ଚେଷ୍ଟା ହିଁ କରିପାରୁ । ପନ୍ଦର ମିନିଟ୍‌ରେ ଲମିଙ୍ଗଟନ ପୋଲିସ ଷ୍ଟେସନ ପାଖରେ ଆମେ ଟାକ୍ସି ରଖିଲୁ ।

କାରଣ ପୋଲିସ ଷ୍ଟେସନ ପାଖରେ ଥିବା କୋଠାଘରେ ଭଡ଼େ ସ୍ତ୍ରୀର ମହଲାରେ ରହୁଥିଲେ । ଲିଫ୍ଟ ନଥିଲା, ଆମେ ଧଇଁସଇଁ ହୋଇ ଗୃହ ମହଲା ଚଢ଼ି ତାଙ୍କ ଘରେ ପହଞ୍ଚିଲୁ । ମୁଁ ମନେ ମନେ ଭାବୁଥିଲି ଭଡ଼େ ଅସମୟରେ ଆମକୁ ଦେଖି କ'ଣ ଭାବିବେ ?

ଭେଣ୍ଟିଲେଟରରୁ ଘରେ ଲାଇଟ୍ ଜଳୁଥିବାର ଦେଖାଗଲା । ଘଣ୍ଟି ଶବ୍ଦ ଶୁଣି ଭଡ଼େ କବାଟ ଖୋଲିଲେ ।

ଆରେ ? ତମେସବୁ । ଆସ, ଆସ । ଆମେ ଜଷ୍ଟ ତମ ପୂର୍ବରୁ ଆସିଲୁ । ଭଡ଼େ କହିଲେ ।

ଏତେ ସମୟ କେଉଁଠି ରହିଗଲେ । ଆମ ଘରୁ ଦେଢ଼ଘଣ୍ଟା ଆଗରୁ ବାହାରିଥିଲେ ।

କହୁତ କ'ଣ ହେଲା, ତମଘରୁ ଟାକ୍ସିରେ ବସି ବାହାରିଲୁ, ପନ୍ଦର ମିନିଟ୍‌ରେ ଏଠି ଆସି ପହଞ୍ଚିଲୁ । କିନ୍ତୁ ଦୁର୍ଯୋଗ ଏହି ଛକରେ ଆମ ଟାକ୍ସି ତଳେ ଗୋଟିଏ ବୁଢ଼ା ପଡ଼ିଗଲା ।

ସେଠୁ ?

ସେଠୁ ? ଆମେ ଯାଉଥିଲେ ଖସି ପାରିଥାନ୍ତୁ; କିନ୍ତୁ ଆମ ବିବେକ ସବୁଦିନ ଭଳି ଅଡ଼ି ବସିଲା । ତେଣୁ ଟାକ୍ସି ଡ୍ରାଇଭରକୁ ବଞ୍ଚାଇବାକୁ ଯାଇ ଆମେ ପୋଲିସ ଷ୍ଟେସନକୁ ଗଲୁ ।

ସେ ବୁଢ଼ା ? ଅରୁ ପଚାରିଲା ।

No Hopes—ଭଡ଼େ କହିଲେ ।

ସେଠୁ ?

ତା'ପରେ ପୋଲିସ ଷ୍ଟେସନରେ ଷ୍ଟେଟମେଣ୍ଟ ଇତ୍ୟାଦି । ପୋଲିସ ଷ୍ଟେସନ ଏହି ପାଖରେ ଥିଲା ବୋଲି ସୁବିଧା ହେଲା ।

ଭଡ଼େ ସାହେବ ! ଏସବୁ କେବଳ ଆପଣ ହିଁ କରିପାରନ୍ତି । ପୋଲିସ ଫାନ୍ଦରେ ଯିଏ ପଡ଼ିଲା ମଲା ।

କେବଳ ମୁଁ ଟାକ୍ସିବାଲା ପାଇଁ ଗଲି । ନୂଆ ନୂଆ ଟାକ୍ସିଟିଏ କିଣି ଏ ବ୍ୟବସାୟରେ ପଶିଛି । ଭଦ୍ରେ କହିଲେ …।

କେମିତି ଜାଣିଲେ ?

ଟାକ୍ସିରେ ଲେଖା ହୋଇଥିଲା Hypathigated to S.B.I. ପରେ ପୋଲିସ ଷ୍ଟେସନରେ ସବୁ କିଛି ଜାଣିପାରିଲି । ଆଚ୍ଛା ତମେ ଏ ସମୟରେ ଏଠାକୁ କେମିତି ଆସିଲ ।

ଆମ ଯିବାର କାରଣଟି ଯେମିତି ହେଲେ ମଧ୍ୟ ଭଦ୍ରେଙ୍କୁ କହିବାକୁ ପଡ଼ିଥାନ୍ତା । ତେଣୁ ଅନୁଆଡ଼କୁ ଅନେଇ କହିଲି । ଆମେ ଯେଉଁ ଟଙ୍କିକିଆ ନୋଟଟି କାଟ ତଳୁ କାଢ଼ିଥିଲୁ ସେଇ ନୋଟ ପାଇଁ ଆସିଛୁ । ସେ ନୋଟରେ ଆମ ଅନୁର ବିଶେଷ ଲାଭ ରହିଛି ।

Let us try କହି ସେ ପକେଟରୁ ମନିପର୍ସ କାଢ଼ି ଦେଖିଲେ ।

କିନ୍ତୁ ସେଥିରେ ସେ ଟଙ୍କିକିଆ ନୋଟଟି ନ ଥିଲା ।

I am so sorry

ନା, ନା, ଆପଣଙ୍କର କିଛି ଭୁଲ୍ ନାହିଁ କହି ଅନୁ ବାହାରିଲା …

ଆମେ କବାଟ ପାଖରେ ପହଞ୍ଚିଛୁ । ପଛରୁ ଭଦ୍ରେ କହିଲେ । ଗୋଟିଏ ମିନିଟ ରୁହ ।

ରୁହନ୍ତୁ ?

ତମେ ଖୋଜା ଯେ ଏଇଠି ସରିଗଲା । ସେ କଥା କହିହବନି ।

କେମିତି ? ଅନୁ ଉତ୍ସାହରେ ପଚାରିଲା ।

ତମ ନୋଟକୁ ପୁରି ପୋଲିସ ଷ୍ଟେସନ ଜଗିବସିଛି ।

ମାନେ ?

ଭଦ୍ରେ କୋର୍ଟ ପିନ୍ଧି ବାହାରିଲେ । ଚାଲ ପୁଲିସ ଷ୍ଟେସନକୁ ଯିବା । ସେଠି ସେ ଟ୍ୟାକ୍ସିବାଲା ବସିଥିବ ।

ସତରେ ସେଇଠି ଥିବ । Misses ଭଦ୍ରେ କହିଲେ ।

ସାହାତ ଓଲ୍ଡାଉ ଓଲ୍ଡାଉ ଭଦ୍ରେ କହିଲେ—ଟାକ୍ସିବାଲା ସେଠି ନିଶ୍ଚୟ ଥିବ ।

ଇନସ୍ପେକ୍ଟର ମଧ୍ୟ ପରିଚିତ । ତେଣୁ ଚେଷ୍ଟା କରିବା । ନ ମିଳିଲେ କୋକାକୋଲା ପିଇ ଫେରିବା ।

ଏତେ ସହରରେ କୋକାକୋଲା ମିଳିବ ?

ଦେଖିବା—ମିଳିଲେ ପିଇବା ।

ଭଡ଼େ ସାହେବ ଅ.ସନ୍ତୁ—ଇନସ୍‌ପେକ୍ଟର ସ୍ୱାଗତ କରେଇ କହିଲେ। ଆପଣଙ୍କୁ ଟିକେ କଷ୍ଟ···।

It's all right.—କାମ କୁହନ୍ତୁ ।

ସେହି ଟାକ୍‌ସି ଡ୍ରାଇଭର ।

ଆପଣ ତାକୁ ଭଲ ପାଇ ବସିଛନ୍ତି ବୋଧେ ।

He is a Gentle Person.

Yes you are right. ଭଲ ଓ ଶିକ୍ଷିତ ମଧ୍ୟ ।

ସେଥିପାଇଁ ତାକୁ ସାହାଯ୍ୟ କରିବା ପାଇଁ ଇଚ୍ଛା ହେଲା ।

ତାକୁ ଭେଟିବେ ?

ଏଠି·ଥିବ ସଦ···ତା' ଟାକ୍‌ସିରେ ଆମ ବ୍ୟାଗଟା ରହିଯାଇଛି ।

ଟାକ୍‌ସିବାଲା ଅ.ସି ପହଞ୍ଚିଲା ।

ସେ ଭଡ଼େଙ୍କୁ ନମସ୍କାର କଲା ।

ଇନ୍‌ସ୍‌ପେକ୍ଟରଙ୍କ ପରମିଶନ ନେଇ ଅମେ ତାକୁ ନେଇ ବାହାରକୁ ଆସିଲୁ ।

You have obliged me like anything· ଟାକ୍‌ସିବାଲା ଭଡ଼େଙ୍କୁ କହିଲା ।

ସେ କଥା ଛାଡ଼ ।

ଆମକୁ ଅନେଇ କହିଲା—ସାହେବ ସତ କହୁଛି । ଟାକ୍‌ସିବାଲାଙ୍କୁ କେହି ସାହାଯ୍ୟ କରନ୍ତି ନାହିଁ । ଟାକ୍‌ସିବାଲାଙ୍କୁ ସମସ୍ତେ ହାରାମୀ ବୋଲି କୁହନ୍ତି । ଏଭଳି ପରିସ୍ଥିତିରେ ଭଡ଼େ ସାହେବ ମତେ ସାହାଯ୍ୟ କଲେ । I have no words to express.

ତମର ସରଳ, ଭଡ଼େ ପଚାରିଲେ ।

ଏ ସବୁ ଏ ଜନ୍ମ ଗଲେ ବ ସରିବ ନାହିଁ ।

ମୋର ଗୋଟିଏ କାମ କର ।

ଯାହା କହିବେ କରିବ ।

ତୁମକୁ ଯେଉଁ ଭଡ଼ା ବାବଦରେ ଟଙ୍କା ଦେଇଥିଲି ସେଥିରେ ଥିବା ଟଙ୍କିଆ ନୋଟ୍‌ଟି ମୁଁ ବଦଳେଇବାକୁ ଚାହୁଁଛି ।

ଏ ପଟକୁ ଆସନ୍ତୁ କହି ଆମେ ଗୋଟିଏ ଲାଇଟ୍ ପୋଷ୍ଟତଳକୁ ଗଲୁ । ସେ ଟଙ୍କା ସବୁ ବାହାର କରି ଦେଲା । ଏଥିରୁ ଖୋଜି ନିଅନ୍ତୁ । ଅନୁ ଆଗେଇ ଆସି ଦେଖିଲା । ସବୁ ନୋଟ୍ ଦେଖା ସରିଲା । ସେ ନୋଟ୍‌ଟି ନ ଥିଲା ।

ବୃଲ ଯିବା ତୁମମାନଙ୍କୁ ବହୁତ କଷ୍ଟ ଦେଲି । ଅନୁ କହିଲା ।

ଟିକେ ରହ····· ମୁଁ ଅନୁକୁ କହିଲି ।

ଭଦ୍ରେ ସାହେବ···କ'ଣ ହୋଇଛି ମତେ କହିଲେ ଟାକ୍‌ସିବାଲା ପଚାରିଲା ।

ଭଦ୍ରେ ତାକୁ ପଚାରିଲେ—'ତମେ ତ କୁଆଡ଼େ ଯାଇନ । ତାହେଲେ ନୋଟ୍‌ଟା କୁଆଡ଼େ ଗଲା ।

ଅଧଘଣ୍ଟା ପୂର୍ବରୁ ଆମେ ବନ୍ଧୁଙ୍କ ଘରର ସାମନା ହୋଟେଲକୁ ଚାହା ପିଇବାକୁ ଯାଇଥିଲୁ । ନୋଟ୍ ମିଳିଯିବ । ହୋଟେଲକୁ ଯିବା ।

ଆମେ ହୋଟେଲ ସାମନାରେ ପହଞ୍ଚିଲୁ । ସଟର ଅଧା ବନ୍ଦ ରହିଥିଲା । ଟାକ୍‌ସିବାଲା ସଟରକୁ ଟେକି ଭିତରକୁ ପଶିଗଲା । ପଶୁ ପଶୁ ଶଙ୍କର ବାବୁ, ଶଙ୍କର ବାବୁ ଡାକିଲା ।

ଶଙ୍କରବାବୁ ଭିତରୁ ବାହାରି ଆସିଲେ ।

ଶଙ୍କରବାବୁ ଟିକେ ଏ ଶହେ ଟଙ୍କିଆ ଭଙ୍ଗେଇ ଦେଲେ ।

ଶଙ୍କରବାବୁ ଡ୍ର ଖୋଲି ଟଙ୍କା ବଣ୍ଡଲଟିଏ ବାହାର କଲେ ।

ଭଲ ନୋଟ ଦେଖି ଦିଅ ।

ଶଙ୍କରବାବୁ ବଣ୍ଡଲଟିକୁ ବଢ଼େଇ ଦେଇ କହିଲେ—ତମେ ନିଜେ ବାଛିନିଅ ।

ଭଦ୍ରେ ସାହେବ ଦେଖନ୍ତୁ ।

ଭଦ୍ରେ ଅନୁକୁ ଅନେଇ ପଚାରିଲେ · ନୋଟ୍ କେମିତି ଚିହ୍ନିବ···

ତା' ଉପରେ ନାଲି ଅକ୍ଷରରେ 'ସୁମିତା' ଲେଖାଯାଇଛି ।

ନୋଟ୍ ମିଳିଗଲା ।

ଶଙ୍କରବାବୁଙ୍କୁ ଧନ୍ୟବାଦ ଜଣେଇ ଆମେ ବାହାରି ଆସିଲୁ ।

ଅନୁ ! ଏଥର ଏ ନୋଟର ଇତିହାସ ମତେ କହିବାକୁ ହିଁ ପଡ଼ିବ ।

ଆଜିର ଦିନଟା ଏକ ଅଜବ ଦିନ ଥିଲା । ସବୁ ଅଡ଼େଇରେ ସେହି ଦୋକାନର ପାହାଚରେ ବସି ଏମିତି କିଛୁ ଶୁଣିବୁ ଏ କଥା ବିଶ୍ବାସ କରିପାରୁ-ନଥିଲୁ । ସେହି ମାଙ୍ଗଳ ପାହାଚରେ ମୁଁ, ମୁକ୍ତା ଭଉଜେ, ପଦ୍ମପତ୍ନୀ, ସେ ଟାକ୍ସିବାଲା ଓ ଅନୁ ଏମିତି ସମସ୍ତେ ବସିଥିଲୁ । ରାସ୍ତାରେ ଜଳୁଥିବା ସୋଡ଼ିୟମ ଲାଇଟ୍‌ର ଆଲୋକ ଆମ ଉପରେ ପଡ଼ୁଥିଲା । ସାମନା ପୋଲିସ ଷ୍ଟେସନ ଭିତରକୁ ଜାପ୍‌ଟିଏ ପଶୁଥିଲା, ନ ହେଲେ ବାହାରୁଥିଲା । ଏଭଳି ପରିସ୍ଥିତିରେ ଅନୁ କହିବା ଆରମ୍ଭ କଲା ।

ନର୍ସ ହସପାତାଳରେ ପାଞ୍ଚବର୍ଷ ହେଲା । ମୁଁ ହସପାତାଳରେ କାମ କରୁଛି । ଅନେକ ରୋଗୀ ଆସିଲେ, ଗଲେ । ଲୋକଙ୍କ ଦୁଃଖ ସୁଖ ଦେଖି ଦେଖି ଆଖିରୁ ପାଣି ମଲାଣି ; କିଂତୁ ମନ ମରି ନାହିଁ । ଅନ୍ୟ କୌଣସି ଓ୍ୱାର୍ଡ଼ରେ କାମ କଲାବେଳେ ଏତେ feal ହୁଏ ନାହିଁ । କିଂତୁ pediatric wardରେ ପାଦ ଦେବା ମାତ୍ରେ ହାତ ଗୋଡ଼ ଅବଶ ହୋଇଯାଏ । ସବେ ଏ ଛୋଟ ଛୋଟ ପିଲା ବିଲକୁଲ ବେମାର ପଡ଼ିବା କଥା ନୁହେଁ । କାରଣ ଏ ଛୋଟିଆ ଜୀବ , ଏକଥା ମଧ୍ୟ ଜାଣିପାରେ ନାହିଁ , ସେ ବେମାର କାହିଁକି ପଡ଼ିଲା ?

ଦୁଇମାସ ତଳର କଥା pediatric ward ରେ ମୋ ଡ୍ୟୁଟି ପଡ଼ିଥିଲା । ସେ ଓ୍ୱାର୍ଡ଼ରେ ଡ୍ୟୁଟି କରିବା ପାଇଁ ମୋର ଇଚ୍ଛା ନ ଥିଲେ ମଧ୍ୟ ଡ୍ୟୁଟି ପଡ଼ିଲେ କରିବାକୁ ବାଧ୍ୟ ।

ସେଦିନ ଜଣେ ଆଠ ନଅ ବର୍ଷର ଝିଅଟିଏ Admit ହୋଇଥିଲା । ସମସ୍ତେ ଆଶା ଛାଡ଼ି ସାରିଥିଲେ । ଝିଅ ସହ ତା' ମାଉସୀ, ତା' ମାଆ ଓ ପଡ଼ିଶା ଘରର ଲୋକମାନେ ଆସିଥିଲେ । ମୁଁ ସମସ୍ତଙ୍କୁ ବାହାରେ ରୋକିଦେଲି । ସେଠୁ ଆମ କାମ ଆରମ୍ଭ ହେଲା, ତାକୁ ସାଲାଇନ୍ ଲଗିଲା । ଅକ୍‌ସିଜେନ୍ ନଳୀ ଲଗିଲା । ରକ୍ତ ଦିଆଗଲା । କିନ୍ତୁ ଏସବୁ କେବଳ ତା' ସମ୍ପର୍କୀୟମାନଙ୍କ ମନ ସନ୍ତୋଷ ପାଇଁ ଓ ଭଗ୍ୟର ଅଣିଟିଏ ଥାଏ ତା ପାଇଁ । ଝିଅଟି ଖୁବ୍ ସୁନ୍ଦର ଥିଲା । ମୁଁ ମଧ୍ୟ ତା' ପାଇଁ ପ୍ରାର୍ଥନା କରୁଥିଲି । ମଝିରେ ମଝିରେ ସେ ଆଖି ଖୋଲି ଚାହୁଥାଏ ଓ କହୁଥାଏ, ଏ ନଳୀ ସବୁ କାଢ । ଦିନସାରା ଏମିତି ଚାଲିଥିଲା ନଳୀ କାଢ଼ିବା ପାଇଁ ଜିଦ୍ କରୁଥିଲା ।

ଶେଷକୁ ମୁଁ ଡାକ୍ତରଙ୍କୁ ପଚାରିଲି । ସେ କହିଲେ ବେଶୀରେ ବେଶୀ ଚାରିଘଣ୍ଟା ଯିବ । ମୁଁ ପଚାରିଲି ଏମିତି ଯଦି କଥା । ତା'ହେଲେ ଶେଷ କିଛି ଘଣ୍ଟା

ସେ ମୁଖରେ ବାନ୍ଧୁ । ମୁଁ ତା’ ନଳୀ ସବୁ କାଟି ଦେଉଛି । ଡାକ୍ତର କହିଲେ କେବଳ oxygen ଥାଉ ।

ମୁଁ ସବୁ ନଳୀଗୁଡ଼ିକ କାଢ଼ିଦେଲି । ଅତିକ୍ଷିଣ ସ୍ୱରରେ ସେ କହିଲା··· ‘sistér thank you’.

ଏଥର ଶିଘ୍ର ଭଲ ହେବାକୁ ଅଛି । କିନ୍ତୁ ଏ oxygen ନଳୀଟି ଥାଉ । ମୁଁ କାଲି ଆସିଲେ କାଢ଼ିବି । ତୋ ପାଇଁ ମଜା କଥାଟିଏ ଆଣିଦେବି ।

ପରଦିନ ମୁଁ duety ପହଞ୍ଚିଲା ବେଳକୁ ··ଶୈଅଟି ରାତିରେ ଚାଲିଯିବା କଥା ଶୁଣିଲି । ·

ପନ୍ଦରଦିନ ପରେ ତା’ ମାଆ ମତେ ଖୋଜି ଖୋଜି ଆସି ପହଞ୍ଚିଲା । ମତେ କଡ଼କୁ ଡାକନେଇ ମୋ ହାତରେ ଖାମ୍‌ଟିଏ ଦେଲା । ସେଥିରେ ପଚଶ ଟଙ୍କା ଥିଲା ।

ଏ କ’ଣ ? ମୁଁ ପଚାରିଲି ।

ତା ମାଆ କହିଲା - ତମେ ଅମ ସହ ପ୍ରକୃତ ଅର୍ଥରେ ସିଷ୍ଟର ଭଳି ବ୍ୟବହାର କଲ । ମୋ ତରଫରୁ ଏହା ଏକ ଗୁଚ୍ଛ ଭେଟି ।

ମୁଁ କହିଲି ସିଷ୍ଟର ଭଳି ବ୍ୟବହାର କଲିବୋଲି କହୁଛ । ତା’ହେଲେ ମତେ କିହ ତୁମ ଭଉଣୀକୁ ତୁମେ କ’ଣ ଏମିତ ଟଙ୍କା ଦେଇଥାଅ ? ମୁଁ ତାକୁ ବହୁତ ବୁଝେଇଲି । ସେଠାରେ ଥିବା ଦାନ ବାକ୍‌ସରେ ସେ ଟଙ୍କା ପକେଇବାକୁ କହିଲି । ସେ କହିଲା –ତାହେଲେ ଏ ଟଙ୍କିକିଆ ନୋଟଟି ତୁମକୁ ରଖିବାକୁ ହିଁ ପଡ଼ିବ । ସୁମିତା ମୋ ଝିଅ ଖାସ ତମପାଇଁ ଦେଇଛି । ତମେ ସେଦିନ ତା’ ନଳୀସବୁ କାଢ଼ିଦେଲ ! ତମେ ଗଲାପରେ ସୁମିତା ମତେ କହିଲା ··ସେ sister ବହୁତ ଭଲ । ମୋ ଦେହରୁ ସବୁ ଛୁଞ୍ଚିତକ କାଢ଼ିଦେଲେ । ମୁଁ ଏଥର ଶୋଉଛି । ମୋ ତକଥା ତଲେ ରଖଲେଟ ପାଇଁ ରୁ ଯେଉଁ ଟଙ୍କିକିଆ ନୋଟଟି ଦେଇଥିଲୁ , ତାକୁ ସେ ସିଷ୍ଟରଙ୍କୁ ଦେବୁ । ତା’ପରେ ମୋ ଝିଅ ଆଖିବୁଜି ଶୋଇଲା, ଆଉ ଉଠିନି କହି-ସେ ଭୋ ଭୋ-ହୋଇ କାନ୍ଦଉଠିଲା । ତାକୁ କିଛି ବୁଝେଇବାର ଶକ୍ତି ମୋ ପାଖରେ ନଥିଲା ।

କଥା ସରିଲା ବେଳକୁ ସେ ମଧ୍ୟ କାନ୍ଦୁଥିଲା । କିଛି ସମୟ ପରେ ରୁମାଲରେ ଆଖି ପୋଛି କହିଲା ।

ଏ ସେହି ନୋଟ୍ ।

ଆମେ ବାକ୍ ଶୂନ୍ୟହୋଇ ଶୁଣୁଥିଲୁ ।

ଘରଆଡ଼େ ରଜିର ନସ୍ତବ୍ଧତା ଭରି ରହିଥିଲା ।

ସେଦିନବେଳେ ଟାକ୍‌ସିବାଲା କହିଲା ।

ସିଷ୍ଟର—ନର୍ସିଂ ବ୍ୟବସାୟ ପାଇଁ ତୁମେ ଅଯୋଗ୍ୟ ।

ଆମେ ତମକୁ ତା' ଆଡ଼କୁ ଗ୍ଦହିଁଲୁ ।

ଏମିତି ପେସେଣ୍ଟରେ ନିଜକୁ ବାନ୍ଧିରଖିଲେ କେମିତି ଚଳିବ । ମଣିଷ ସବୁ ଅତୀତରେ ରହିଯିବ । ତା' ହେଲେ ସବୁ ସରିଗଲା । ସେଥିରେ ତା' ଭବିଷ୍ୟତ ନଷ୍ଟ ହୁଏ । ସବୁବେଳେ ବର୍ତ୍ତମାନରେ ରହିବାକୁ ହେବ । ଦୃଷ୍ଟି ସାମନାକୁ ରଖି ଗ୍ଦଲିବ ମୋ ଭଳି । କାରଣ - ମୋ ପେଶା ହେଲା ଡ୍ରାଇଭରର ବେଳେ ବେଳେ ଟାକ୍ସିରେ ଏମିତି ବ୍ୟକ୍ତି ଆସି ବସେ , ଭାବେ ଏ ଟାକ୍ସିରେ ଏମିତି ବସିଥାନ୍ତି କିନ୍ତୁ ତାର ମଧ୍ୟ ଡେଷ୍ଟିନେସନ ଫିକ୍ସ ଥାଏ । ସ୍ଟାର୍ଟ ଗାଡ଼ି ଷ୍ଟାର୍ଟ କରେ , ଶୁଣିବା ମାତ୍ରେ ଚୁପ୍‌ଚାପ ଗାଡ଼ିଟିକୁ ଠିଆ କରିବାକୁ ପଡ଼େ । ସେଠୁ ମିଟରରେ ଥିବା ସଂଖ୍ୟା ଜଣେଇ ମନରେ ଘରକର ବସିଥିବା ପାସେଞ୍ଜରକୁ ପାଶୋରି ନୂଆ ପାସେଞ୍ଜରକୁ ଅପେକ୍ଷା କରିବାକୁ ପଡ଼େ । ସିଷ୍ଟର ତୁମ ପେଶା ଓ ମୋ ପେଶା ପ୍ରାୟ ଏକା । ତୁମକୁ ମଧ୍ୟ ଏମିତି କରିବାକୁ ହେବ । ପେସେଣ୍ଟ ଗଲା, ଚାଦର ବଦଳେଇବ, ତକିଆକୁ ଉଠେଇ ଝାଡ଼ିଦେବ । ପାଦପାଖରେ ଥିବା ବ୍ଲାଙ୍କେଟ୍‌କୁ ଝାଡ଼ି ଭଲକରି ସଜେଇ-ରଖି, ନୂଆ ପେସେଣ୍ଟର ସ୍ୱାଗତପାଇଁ ଅପେକ୍ଷା କରିବ । ଏ ଖଟିଆକୁ କିଏ ଆସିଲା । କିଏ ଗଲା, ମନେରଖିବ ନାହିଁ । ମନେ ରଖିବ କେବଳ ଖଟିଆ ନମ୍ବର ।

ତା'ର ପ୍ରତି କଥା ହୃଦୟକୁ ଭେଦ କରୁଥିଲା ।

ଅନୁ କାନ୍ଦୁଥିଲା - ତଥାପି ପଗ୍ଦରିଲା । ସବୁକଥା କ'ଣ ଭୁଲିହୁଏ ?

ଭୁଲି ହୁଏନା ; କିନ୍ତୁ କ'ଣ କରାଯିବ ! ଏ ଟଙ୍କିକିଆ ନୋଟ ପାଇଁ ଅଧରାତିରେ ତମେ ବୁଲିଲ । ନୋଟ ତ ଗୋଟିଏ ଜଡ଼ ବସ୍ତୁ । ଖୋଜିଲେ ମିଳିଗଲା ଭଳି । ତେଣୁ ଆମେ ମଧ୍ୟ ତମ ସହ ସେ ଖୋଜାରେ ଅଂଶ ଗ୍ରହଣ କଲୁ ; କିନ୍ତୁ ସିଷ୍ଟର ହାତଛଡ଼ା ହୋଇଥିବା ସବୁ ଜିନିଷ କ'ଣ ସବୁବେଳେ ମିଳେ ? ଗୋଟିଏ ସାଧାରଣ ନୋଟ ପାଇଁ ପାଗଳ ହୋଇ ତମେ ଦୌଡ଼ାଦୌଡ଼ି କଲ । ନୋଟଟି ପାଇଲ । ତୁମେ ନିଶ୍ଚୟ ଭାଗ୍ୟବାନ । କାରଣ ତୁମର ଖୋଜାଟି ଅତି ସହଜ ଥିଲା ।

ସହଜ ?

ମୋ ଅପେକ୍ଷା ନିଶ୍ଚୟ ସହଜ ।

କିପରି ?

କାରଣ—ମୋ ବସ୍ତୁଟି ମତେ କେବେହେଲେ ମିଳିବ ନାହିଁ । ଗୋଟିଏ ନୋଟ ପାଇଁ ତମର ଏ ଅବସ୍ଥା ହେଲା । ତା' ହେଲେ ସିଷ୍ଟର ମତେ କହିବେ ଯେତେବେଳେ ମୋ ପ୍ରିୟ—ସୁମିତା ମୋତେ ଛାଡ଼ି ଗ୍ଦଲିଗଲା, ସେତେବେଳେ ମୁଁ କ'ଣ କରିଥିବ ? କ'ଣ କରି ପାରିଥାନ୍ତି ? କହିପାରିବେ !..?......



# ଦୁର୍ବାସା

କୌଣସି ଏକ ବିଶିଷ୍ଟ ସ୍ଥାନ ବା ଶବ୍ଦର ସଙ୍କେତ ନିର୍ଦ୍ଦିଷ୍ଟ ଥାଏ । ଜିନାଥ ମେଳା କହିଲେ 'ହରିବୋଲ'ର ହୁରି, ଶେୟାର ମାର୍କେଟ ମାନେ ଅଯୋ-ଲଘୋ, ପାଠଶାଳା କହିଲେ ସମୂହ ସ୍ୱରରେ ପଣିକିଆର ଘୋଷା । ଏଭଳି କେତେକ ସଙ୍କେତ ଥାଏ ଓ ସେହି କଥା ହସ୍ପିଟାଲର ।

ଏକ ବିଶିଷ୍ଟ ଗନ୍ଧ ସହ କେତେକ ଶବ୍ଦର ହସପିଟାଲ ସହିତ ସମ୍ବନ୍ଧ ଥାଏ, ତେଣୁ ଯେତେବେଳେ······

ୟୁ ବାଷ୍ଟାର୍ଡ୍; ବ୍ଲଡ଼ିଫୁଲ, ସ୍ୱାଇନ୍ ଇତ୍ୟାଦି ଗାଳିର ଶବ୍ଦ ଶୁଣିଲି । ହଠାତ୍ ମୁଁ ଖଟ ଉପରେ ଉଠି ବସିଲି । ଗାଳି ଦେଉଥିବା ବ୍ୟକ୍ତି ଜଣକ ପୁରୁଷ ଥିଲ । ଡାକ୍ତର ମାନଙ୍କ ମଧ୍ୟରୁ କେହି ଏମିତି ଗାଳି ଦେବାର ପ୍ରଶ୍ନ ହିଁ ଉଠୁ ନଥିଲା । କାରଣ ଏଠି-କାର ସମସ୍ତ ଷ୍ଟାଫସହ ମୋର ପରିଚୟ ହୋଇ ସାରିଥିଲା ।

ତା'ହେଲେ କିଏ ?

ପେସେଣ୍ଟ ? ତାହା ବି ଅସମ୍ଭବ ଲାଗୁଥିଲା । କାରଣ ଅସାଧ୍ୟ ରୋଗରେ ପୀଡ଼ିତ ରୋଗୀ ମୃତ୍ୟୁର ଡରରେ ଏତେ ବ୍ୟାକୁଳ ଥାଏ ଯେ, ଏତେ ବଡ଼ ପାଟିରେ ଗାଳିଦେବା ଅସମ୍ଭବ । ତା' ଛଡ଼ା ପେସେଣ୍ଟ ହେଉଛି ସ୍ୱାଧୀନତା ହରାଇଥିବା ବ୍ୟକ୍ତି । ଲାଗୁଥିବା ଶୋଷଠାରୁ ଆରମ୍ଭ କରି ମାଡୁଥିବା ପରିସ୍ରା ପର୍ଯ୍ୟନ୍ତ ସେ ଅନ୍ୟ ଉପରେ ନିର୍ଭର କରେ । ପ୍ରତ୍ୟେକ ରୋଗର କଷ୍ଟ ଅପେକ୍ଷା ନିଜ ହାତରେ କିଛି କରିପାରୁ ନ ଥିବାର ଦୁଃଖଟା ବେଶୀ ଥାଏ । ତେଣୁ ସେ କାହା ଉପରେ ରାଗିବା ଅସମ୍ଭବ ।

ଷ୍ଟ୍ରେଚର ଆସି ପହଞ୍ଚିଲା । ତା'ଉପରେ ତିରିଶ ପଇଁତିରିଶ ବର୍ଷର ଯୁବକଟିଏ ଶୋଇଥିଲା । ସେହି ପାଟି କରୁଥିଲା । ଷ୍ଟ୍ରେଚର ବୋହୁଥିବା ଲୋକଙ୍କୁ ଦୁର୍ବାସାଙ୍କ ଦୃଷ୍ଟିରେ ଦେଖୁଥିଲା । ପଛେ ପଛେ ସେ ବ୍ୟକ୍ତିର ସ୍ତ୍ରୀ ମଧ୍ୟ ଆସି ପହଞ୍ଚିଲା । ଷ୍ଟ୍ରେଚର ଉପରୁ ଖଟରେ ରଖିବା ସମୟରେ ମଧ୍ୟ ଜୋର୍‌ରେ ଗର୍ଜି ଉଠିଲା— ବେଓ୍ୱକୁଫ ।

କାହିଁକି ପାଟି କରୁଛ କହିଲ । ଏ କ'ଣ ଘର ? ଏଟା ଡାକ୍ତରଖାନା ।

ଗୋଟିଏ ହାତରେ ପେଟକୁ ଚିପିଧରି ପାଟିକଲା······

ମତେ ବେଶୀ ଶିଖାନା ।

ତା ସ୍ତ୍ରୀ ଚୁପ ହୋଇ ଠିଆ ହେଲ ।

ହସ୍‌ପିଟାଲର ନିୟମ ଅନୁସାରେ ନୂଆ ପେସେଣ୍ଟ ଆସିବାମାତ୍ରେ ସବୁ କିଛି ଆରମ୍ଭ ହୋଇଗଲା । କେସପେପର ଫାଇଲ ଧରି ନର୍ସ ଆସି ପହଞ୍ଚିଲା । ପ୍ରଥମେ ତା 'ନାଡ଼ ଦେଖି କେସପେପରରେ ଲେଖିଲା । ତା'ପରେ ଥର୍ମୋମିଟର କାଢ଼ିବା ମାତ୍ରେ ଦୁର୍ବାସା ଗର୍ଜି ଉଠିଲା ।

'ନୋ ଟେମ୍ପରେଚର ।'

ନର୍ସ ତା କଥା ନ ଶୁଣିଲା ଭଳି କହିଲା···'ପାଟି ଖୋଲ ।'

'କହିଲି ପରା ନୋ·· ···'

'ପାଟି ଖୋଲ' ଏଥର ନର୍ସ ଜୋରରେ କହିଲା । ସେ ଚୁପ୍‌ଚାପ ହାଁ କଲା । ନର୍ସ ତା' ଜିଭତଳେ ଥର୍ମୋମିଟର ରଖିଦେଲା । ନର୍ସ ମୁରକି ହସିଲା । ତା ସ୍ତ୍ରୀ ମଧ୍ୟ ହସିଲା । ତଥାପି ହସକୁ ଚପେଇ ଦେଲା । କାରଣ ସେ ଦେଖୁଥିଲା । ଥର୍ମୋମିଟର ନର୍ସ ହାତକୁ ଦେଇ ପାଟିକଲା । ଦାନ୍ତ କ'ଣ ଦେଖଉଛୁ ?

କିଛି ନ କହି ତା ସ୍ତ୍ରୀ ବାହାରକୁ ଚାଲିଗଲା ।

ନର୍ସ ଟେମ୍ପରେଚର ଦେଖି ଲେଖିଲା ।

ଜର ଅଛି ?

ନର୍ସ ମନାକଲା ।

ମୋ କଥାରେ କ'ଣ ବିଶ୍ୱାସ ହେଉ ନଥିଲା ? ସେଣ୍ଟିମେଣ୍ଟ୍ !

ମୁଁ ମୋ ଡ୍ୟୁଟି କରୁଛି । ପାଟି କର ନାହିଁ ।

ତା'ପରେ ବ୍ଲଡ଼ ପ୍ରେସର ଇତ୍ୟାଦି ସବୁ ସରିବା ପର୍ଯ୍ୟନ୍ତ ସେ ଚୁପ ହୋଇ ଶୋଇଥିଲା । ନର୍ସ ତା କାମ ସାରି ଫେରିଗଲା । ଏ ପର୍ଯ୍ୟନ୍ତ ଖଟରୁ ଧୂଆଁ କେମିତି ବାହାରିନାହିଁ । ଏହି କଥା ଭାବି ମୁଁ ଦୁର୍ବାସାକୁ ଅନେଇ ଥିଲି ।

ପ୍ରଥମ ଦର୍ଶନରେ ଦେଖିବାକୁ ବହୁତ ହାଣ୍ଡସମ୍ ଦେଖାଯାଉଥିଲା । ଗୋରା ତକ୍ ତକ୍ ଚେହେରା । ଲମ୍ବା ନାକ । ମୁଛ ତା ଚେହେରାକୁ ମାନୁଥିଲା । ଶରୀର ବେଶ ହୃଷ୍ଟପୁଷ୍ଟ । କିନ୍ତୁ ଏ ସବୁ ସହ ମୁହଁରେ ଯଦି ହସ ଟିକେ ରହିଥାନ୍ତା ତା' ହେଲେ ତା ପୌରୁଷକୁ ମାନିଥାନ୍ତା । କିନ୍ତୁ···। ମୋ ବିଚାର ଶୃଙ୍ଖଳା ଛିଣ୍ଡିଗଲା ।

ଦୁର୍ବାସା ବେଲ ବଜାଉଥିଲା । ନର୍ସ ଆସି ସାମନାରେ ଠିଆ ହେବା ପର୍ଯ୍ୟନ୍ତ ସେ ବେଲ୍‌ରୁ ହାତ କାଢ଼ିଲା ନାହିଁ ।

କ'ଣ ହେଲା ?

ବାହାରେ ମୋ ସ୍ତ୍ରୀ କେଉଁଠି ଅଛି ଦେଖ । ତାକୁ କୁହ ମୁଁ ଏ ପର୍ଯ୍ୟନ୍ତ ବଞ୍ଚିଛି ।

ସେ ଯେତେ ବଡ଼ ପାଟିରେ କହୁଥିଲା, ବାହାରକୁ ନିଶ୍ଚୟ ଶୁଭିଥିବ । କାରଣ ନର୍ସ ବାହାର ହିବା ପୂର୍ବରୁ ତା' ସ୍ତ୍ରୀ ଆସି ପହଞ୍ଚିଲା ।

ମୁଁ ଏ ପର୍ଯ୍ୟନ୍ତ ବଞ୍ଚିଛି !

କିଛି ନ କହି ମୁଣ୍ଡ ପୋତି ଖଟ ପାଖରେ ଥିବା ଷ୍ଟୁଲ୍‌ରେ ବସିଲା ।

'ମୁଣ୍ଡ ପୋତି କାହିଁକି ବସିଲୁ । ଗୋଡ଼ ମୋଡ଼ ।'

ସେ ତା' ଗୋଡ଼ ମୋଡ଼ିଲା ।'

'ଧିରେ ଧିରେ ।'

ଦେଖିବାକୁ ଶ୍ୟାମଳ ବର୍ଣ୍ଣ, କିନ୍ତୁ ସ୍ମାର୍ଟ ଦିଶୁଥିଲା । ବିବାହ ପୂର୍ବରୁ ଓ ବିବାହ ପରେ ତା' ଓଜନରେ ଗୋଟିଏ ଆଉନ୍ସ ମଧ୍ୟ ଫରକ ପଡ଼ି ନ ଥିବ । ବିରବିଲ ମାପଜୋକ ପାଳିଥିବା ଲୋକ ଭଳି ତା' ଜୀବନ କଟୁଥିବ । ବହୁତ ଖାଇବ ଓ ଦୁର୍ବାସା ସହ ସଂସାର କରିବ । ନିଜ ସଂସାରର ସମ୍ପୂର୍ଣ୍ଣ ଚିନ୍ତା ସେ ତାଉଁଠି ଗାଡିରେ ହିଁ ବୁଝିପାରି ଥିବାର ଭାବ ତା' ମୁହଁକୁ ଚାହିଁଲେ ଜାଣି ହେଉଥିଲା । ସ୍ପିରିଟ ବୋତଲରେ ରଖାଯାଇଥିବା ଚମ୍ପାଫୁଲ ଯେପରି ମଉଳେ ନାହିଁ ; କିନ୍ତୁ ସତେଜତା ହରାଇଥାଏ, ସେ ମତେ ସେମିତି ଦିଶୁଥିଲା ।

'ମୋଡ଼ୁଛୁ ଯଦି ଭଲ କରି ମୋଡ଼ । ଖାଲି ହାତ ମାରୁଛୁ ନା କ'ଣ ?'

ସେତିକବେଳେ ଡାକ୍ତର ଆସି ପହଞ୍ଚିଲେ ।

ହଲୋ ମିଷ୍ଟର ପରକ୍ରୁଣ୍ଡେ । କେମିତି ଲାଗୁଛି ?

'ମତେ ଏଠିକି କାହିଁକି ଆଣିଲେ ?'

'ଠିକ୍—ଏକଦମ ଠିକ୍ ମୁଁ ମଧ୍ୟ ତୁମକୁ ଏଠି ଆଣିବାକୁ ଚାହୁଁ ନ ଥିଲି ।'

'କିନ୍ତୁ ଡାକ୍ତର…?'

'ଚିନ୍ତା କର ନାହିଁ, ଦୁଇ ଦିନ ଭିତରେ ତୁମକୁ ଏଠୁ ବିଦାୟ କରି ଦେବି, କିନ୍ତୁ ସେ ପର୍ଯ୍ୟନ୍ତ ଚୁପଚାପ ଶୋଇ ରହିବ, ଉଠିବ ନାହିଁ । ଚଡ଼ିବ ନାହିଁ । ଯାହା ଦରକାର ମତେ କହିବ । ଓ. କେ ?'

ସେଠୁ ଡାକ୍ତର ମତେ ଚାହିଁ କହିଲେ—'ତମକୁ ମଧ୍ୟ ଦୁଇ ଦିନରେ ଏଠୁ ଛାଡ଼ି ଦବାର ବ୍ୟବସ୍ଥା କରୁଛି ।'

'ଥ୍ୟାଙ୍କ ୟୁ ।'

ସନ୍ଧ୍ୟାବେଳେ ମୋ ସାଙ୍ଗ ପାରମାନନ୍ଦ ମତେ ଦେଖା କରିବାକୁ ଆସିଲା । ସେ ଭିତରକୁ ପଶୁଥିବା ସମୟରେ ଦୁବାସାଙ୍କୁ ହ୍ୱିଲ ଚେୟାରରେବସେଇ ଓ୍ୱାର୍ଡବୟ ବାହାରକୁ ନେଇ ଯାଉଥିଲା ।

ପାରମାନନ୍ଦ ତା' ଯିବା ବାଟକୁ ଅନେଇ ରହିଲା ।

ସେ ଗଲା ପରେ ମତେ ପଚାରିଲା ।

'ବ୍ୟାସ ଏ ପରଶୁ ଏଠି କେବେ ଆସିଲା ?'

'ତା ନାଁ ପରଶୁ ?'

'ମୁଁ ରଖିଛି ।'

'ପରଶୁ ନା ପରଶୁରାମ !'

'ପରଶୁରାମରେ 'ରାମ' ଅଛି । ତେଣୁ ଏ କେବଳ ପରଶୁ ।' 'ଦେଖିବାକୁ ଗଲେ ମଧ୍ୟ 'ର' ଟି ନ ଥିଲେ ବି ଚଳିବ ।'

'ତାକୁ ଏତେ ଡ଼ିଗ୍ରେଡ଼ କରନା, କେତେ ସ୍ମାର୍ଟ ଦିଶୁଛି !'

'ଦାଗ ବି ତ ସ୍ମାର୍ଟ ଦିଶେ !'

'ରୋଗ ଯୋଗୁଁ ମଣିଷର ଚେହେରା ଖରାପ ହୁଏ ।'

'ତା ରାଗ ହିଁ ତା'ର ଶତ୍ରୁ । ତା' ରୋଗର ମୂଳ କାରଣ ।'

'ତୁ ତା ବିଷୟରେ ସବୁ ଜାଣିଥିଲା ଭଳି କହୁଛୁ ।'

'ଜାଣିଛି ବୋଲି ତ କହୁଛି । ଏ ତାରିକୁଣ୍ଡେ ତ ?'

'ହଁ' ।

ପାରମାନନ୍ଦ ତା ଖଟ ପାଖକୁ ଯାଇ କେସ ପେପରରେ ତା ନାଁ ପଢ଼ି ମୋ ପାଖକୁ ଆସି କହିଲା—

'Exactly same person.'

'ମାନେ ?'

'କହୁଛି ।'

ମୋ ଖଟ ପାଖରେ ଥିବା ଷ୍ଟୁଲରେ ଆସନ ଜମେଇ ପାରମାନନ୍ଦ କହିବା ଆରମ୍ଭ କଲା......

'ଆମ ଘରଣୀଙ୍କ ଚତୁର୍ଥ ଡେଲିଭରି ସମୟରେ......'

'ସେଉଁଟା ଭୁଲ୍ ବଶତଃ ହୋଇଥିଲା·· ···'

ପାରସନସ ହାତ ଉଠେଇ ମାରବା ଆକସନ୍ କରି କହିଲା—'ଆବେ ସବୁବେଳେ ସେହି କଥାଟା ମନେ ପକେଇବା କ'ଣ ଜରୁରି ।'

'O.K·······ତା'ପରେ ?'

'ସେ ସେଉଁ ମାଟରନିଟି ହୋମରେ ଥିଲା······'

'ତାହା ମଧ୍ୟ ମୁଁ ଜାଣିଛି···Internationally fame, Gyneco-logist, ଓ ·· ···

Obstetrician······'ପାରସନସ କହିଲା ।

'ତା'ପରେ ।'

'ସେହି ମାଟରନିଟି ହୋମରେ ଡାରକୁଣ୍ଡେର 'ଗାଈ' ମଧ୍ୟ ଆଡ଼ମିଟ୍ ହୋଇଥିଲା ।'

'ଗାଈ ?'

'ମାନେ ତା ସ୍ତ୍ରୀ ।'

'Go Ahed.'

'ସେହିଠି ତା ବିଷୟରେ ଯାହାସବୁ ଜାଣିଲି ଓ ଦେଖିଲି । ସବୁଦିନ ପାଇଁ ମନେ ରହିଗଲା ।'

'ସେଠି କ'ଣ ହେଲା ।'

'ଯାହା ହେଲା—ତାହା ହବା କଥା ନୁହଁ !'

'ଆବେ—ବିଜ୍ଞାପନ କାର୍ଯ୍ୟକ୍ରମରେ ଅମୀନ ସାୟାନି କହିଲା ଭଳି କହୁନା । ସିଧା ସିଧା କହ କ'ଣ ହେଲା ।'

'କହୁଛି । ଡେଲିଭରିର ତୃତୀୟ ଦିନ ଏ ପରଶୁ ତା' ସ୍ତ୍ରୀକୁ ଦେଖା କରିବାକୁ ଆସିଲା । ତା' ସହିତ କଥାବାର୍ତ୍ତା ହେଲାପରେ ପିଲା ବିଷୟରେ ପଚାରିଲା । ନର୍ସ ତାକୁ ଗାଧୋଇଦବାକୁ ନେଇ ଯାଇଛି, ଏ ପର୍ଯ୍ୟନ୍ତ ଫେରାଇ ନାହିଁ ତା' ସ୍ତ୍ରୀ କହିଲା । ଏ ବାବୁ ସଙ୍ଗେ ସଙ୍ଗେ ପଚରା ଉଚରା ଆରମ୍ଭ କଲେ । ଦେଖନ୍ତି ତ ପିଲା ନିଖୋଜ । ସେଠୁ ଧିଁ ଧପଡ଼ ଆରମ୍ଭ ହେଲା । ସେତିକିବେଳେ ଡାକ୍ତରିଟିଏ ଆସି ପହଞ୍ଚିଲା । ଜଣେ ଲୋକ ସେଥିରୁ ଓହ୍ଲେଇଲା । ତା' ହାତରେ ପରଶୁର ପୁଅ । ସେଠୁ ଘଟଣା ଜଣା ପଡ଼ିଲା । ଧୋବା ହସ୍ପିଟାଲର ସେଉଁ ଲୁଗାପଟା ନେଇଯାଏ ସେ ଲୁଗା ସହିତ ଏ ପିଲାଟି ଗୁଡ଼େଇ ହୋଇ ଯାଇଥିଲା, କାଂରୁ କଥାରେ ଅଛି

ତ—'ମାହାକୁ ରଖିଲେ ଅନନ୍ତ' ଯେମିତି ହେଲା । ପିଲାକୁ କିଛି ହୋଇ ନ ଥିଲା । ସେଠୁ ଆମ୍ଭ ପତାଙ୍କ କ'ଣ କଲା ଜାଣନ୍ତି ? ପ୍ରଥମ ଥାପଡ଼ ଯେଉଁ ଲୋକ ପୁଅକୁ ନେଇ ଆସିଥିଲା ତା' ଗାଲରେ ବାଜିଲା । ଦ୍ୱିତୀୟ ଥାପଡ଼ ଡ୍ୟୁଟିରେ ଥିବା ନର୍ସ ଗାଲରେ । ସେତେବେଳେ ସନ୍ତୁଷ୍ଟ ହେଲାନାହିଁ । ଡାକ୍ତର ରହୁଥିଲେ ଉପର ମହଲରେ । ତୃତୀୟ ଥାପଡ଼ ତାଙ୍କର ଘରେ ପଶି ତାଙ୍କ ଗାଲରେ ଜମେଇ ଦେଲା । ତା' ପରେ କହିଲା, ଏଠାରେ କହୁଛି କାହିଁକି ମାରିଲି—ହଜାର ହଜାର ଟଙ୍କା ଗଣି ନଉଛ,—ଶାଳେ ! ଏହି ତମର ମାନେଜମେଣ୍ଟ ?"

ତା' ପରେ ପାରସନାଥ ଅଧଘଣ୍ଟା ବସିରହିଲା ।

ମତେ ମଧ୍ୟ ନିଦ ମାଡ଼ୁଥିଲା । ମୋର ସବୁ ପ୍ରକାର Investigation ସରିଥିଲା । ବର୍ତ୍ତମାନ ପର୍ଯ୍ୟନ୍ତ ସବୁ ରିପୋର୍ଟଗୁଡ଼ିକ ନର୍ମାଲ ଥିଲା । ଆସନ୍ତାକାଲି ଆଉ ଗୋଟିଏ ରିପୋର୍ଟକୁ ଅପେକ୍ଷା ଥିଲା । ତାହା ବି ଯଦି ନର୍ମାଲ ବାହାରିବ, ତା' ହେଲେ ମତେ ଏମିତି କାହିଁକି ହେଉଛି, ଏ ପ୍ରଶ୍ନଟିର ଉତ୍ତର ମିଳିବ ନାହିଁ । 'ଚିନ୍ତା କରିବାର କାରଣ ନାହିଁ' ଏ ବାକ୍ୟଟି କାନକୁ ଯେତେ ସୁନ୍ଦର ଶୁଭିଲେ ମଧ୍ୟ ଚିନ୍ତା କରିବା କଣ ଏବେ ଛାଡ଼ି ପାରିଲଣି ? ତେଣୁ ଏ ବାକ୍ୟଟି ନିରର୍ଥକ । ଆଠ ଦିନ ହେଲା ମୁଁ ରୋଜ ରାତିରେ ନିଦ ବଟିକା ଖାଇ ଶୋଉଛି ; ହେଲେ ତାହା ମଧ୍ୟ ଆଉ କାମ କରୁନି । ମନୁଷ୍ୟ ଶରୀର ଆଦେଶ ମାନେ ନାହିଁ—ଏହା ହିଁ ସତ୍ୟ । ବଟିକା ଖାଏ ଓ ଜଗି ବସୁଥିବା ମୋ ସ୍ତ୍ରୀ ଭଲ ଭାବରେ ଶୋଉ ବୋଲି, ଶୋଇବା ଆରମ୍ଭ କରେ । ମୁଁ ଶୋଇ ପଡ଼ୁଛି ଦେଖି ବିଚାରୀ ମନୋରମା ଆରାମରେ ଶୋଇପଡ଼େ ଓ ଶୋଇବା ପରେ 'ମୁଁ ବହୁତ ଦୁଃଖରେ ଅଛି' ଏହି କଥା ଘୁଙ୍ଗୁଡ଼ି ମାରି କହେ । ସକାଳେ ଉଠିଲେ ମତେ କହେ ।

"ରାତିରେ ଏତେ ଆରାମରେ ଶୋଇଥିଲ ଯେ ଘୁଙ୍ଗୁଡ଼ି ମାରୁଥିଲ ।"

ମୁଁ କହେ—"ଡାକ୍ତରଙ୍କୁ କହି ଶୋଇବା ବଟିକା ସହିତ ଘୁଙ୍ଗୁଡ଼ି ନ ମାରିବା ବଟିକା ଦେବେ ।"

ମନୋରମା ଚୁପ ହୋଇଯାଏ । ମୁଁ କିନ୍ତୁ ମନେ ମନେ ଖୁବ୍ ହସେ । ନିଦ ବଟିକାର ଗୋଟିଏ ନୂଆ ବ୍ୟାଖ୍ୟା ମୁଁ କରିଛି—ଯେଉଁ ବଟିକା ଖାଇବା ପରେ ପେସେଣ୍ଟକୁ ଜଗି ବସିଥିବା ଲୋକମାନେ ଘୁଙ୍ଗୁଡ଼ି ମାରି ଶୁଅନ୍ତି ତାକୁ ହିଁ ନିଦ ବଟିକା କୁହନ୍ତି ।

× × ×

ସବୁଦିନ ଭଳି ମନୋରମା ମତେ ନିଦ ବଟିକା ଦେଲା । ଦଶ ମିନିଟ ପରେ ମୁଁ ଆଖି ବୁଜି ଶୋଇଲି ।

ଦୁର୍ବାସାର ଆଜିତ୍ରା ତାଲ୍ ଅପରେସନ। ମେଜର ଚୋଧେ। ପେଟରେ ଅଲସର ହୋଇଛି। ଦୁଇଟି ଖଟ ଥିବା ଆମ ସ୍ପେଶାଲ ରୁମରେ ଆଜି ସନ୍ଧ୍ୟାରେ ବହୁତ ଭିଡ଼ ହୋଇଥିଲା।

ତା'ର ସବୁ ସମ୍ପର୍କୀୟମାନେ ଆସି ଦେଖାକରି ଗଲେ। ତା' ପୁଅ ମଧ୍ୟ। ଦୁର୍ବାସା ସେମିତି ଦୁର୍ବାସାଙ୍କ ଭଳି ସମସ୍ତଙ୍କ ସହ ବ୍ୟବହାର କରୁଥିଲା। ଦେଖା କରିବାକୁ ଆସୁଥିବା ଲୋକମାନଙ୍କ ଉପରେ ସେମିତି ଚଢ଼ୁଥିଲା। ଜଣେ ବୁଢ଼ୀ ତା' ମୁଣ୍ଡ ଉପରେ ହାତ ବୁଲାଉ ବୁଲାଉ କହୁଥିଲା ମଧ୍ୟ—"ଶ୍ରୀଧର ତୁ ଏ ରାଗିବା, ଚଢ଼ିବା ବନ୍ଦ କଲୁ। ସବୁ ଠିକ୍ ହୋଇଯିବ।"

ଦୁର୍ବାସାକୁ ଘଣ୍ଟାଏ ପୂର୍ବରୁ ସିଡେଟିଭ୍ (Sedative) ଦିଆ ସରିଥିଲା। ତେଣୁ ସେ ଆରାମରେ ଶୋଇଥିଲା। ଏଥର ରୁମରେ ସିଡେଟିଭର ପ୍ରଭାବରେ ଶୋଇଥିବା ଦୁର୍ବାସା, ତା ସ୍ତ୍ରୀ ରଜନୀ, ମନୋରମା ଓ ଶୋଇବା ଆକ୍ଟିଂ କରୁଥିବା ମୁଁ ଥିଲୁ। କିଛି ସମୟ ପୂର୍ବରୁ ଆସିଥିବା ସମ୍ପର୍କୀୟମାନଙ୍କ ଭିତରୁ କେହି ଜଣେ ତାକୁ ନାଁ ଧରି ଡାକିଥିଲା, ସେଠୁ ଜାଣିଲି ସ୍ପିରିଟ ବୋତଲରେ ଥିବା ଚମ୍ପା ଫୁଲର ନାଁ ରଜନୀ!

କିଛି ସମୟ ପରେ। ରଜନୀ କହୁଥିଲା, ଅର୍ଥାତ୍ ମନୋରମାକୁ—

"ଆଜି ଆମଯୋଗୁଁ ତମ ସ୍ୱାମୀ ଟିକେ ରେଷ୍ଟ ପାଇଲେ ନାହିଁ।"

"ତମେ ସିନା ଏମିତି ଭାବୁଛ। କିଂତୁ ଏଇ ଦଶ ମିନିଟ ପୂର୍ବରୁ ମୁଁ ତାଙ୍କୁ ନିଦ ବଟିକା ଦେଇଛି। ଦେଖ୍ ଦେଖୁ ଘୁଙ୍ଗୁଡ଼ି ମାରିବେ।"

ମୁଁ ବହୁ କଷ୍ଟରେ ହସକୁ ଚାପିଲି। ସେମାନେ ଭାବୁଥିଲେ ମୁଁ ମଧ୍ୟ ଶୋଇଛି। ରଜନୀ ଏଥର ଫିସ୍ଫିସ୍ କଥା କହିବ। ତେଣୁ ବହୁତ କାଛି କହିବ। ତେଣୁ ଧୀରେ ଧୀରେ ଅସୁଥିବା ନିଦକୁ ମୁଁ ଫେରେଇ ଦେଇ ତାଙ୍କ କଥାକୁ କାନ ପାତି ଶୁଣିବାକୁ ଲାଗିଲି।

ମନୋରମା ପଚାରିଲା—'ତମ ସ୍ୱାମୀଙ୍କର କ'ଣ ହୋଇଛି?'

'ନିଜ ଗୁଣରୁ ଟାଣି ଆଣିଥିବା ରୋଗ।'

'ଏମିତି କାହିଁକି କହୁଛନ୍ତି?'

'ଆଉ କ'ଣ କହିବ? ଦୁଇ ଦିନ ହେଲା ତମେ ସବୁ ଦେଖୁଛ ତ।'

'ଆଏ, ଜଣ ଜଣର ସ୍ୱଭାବ! ନରମି ଯିବେ ମ।'

'ଗ୍ୟାରେଣ୍ଟି କ'ଣ?'

'ଅପରେସନ ପରେ ଏମିତି ହୁଏ।'

ମନୋରମା କଥାରେ କୌଣସି ଦମ୍ ନ ଥିଲା । ରଜନୀ ମଧ୍ୟ ସେ କଥା ବୁଝିଥିବ—କହିଲା ।

'ଅପରେଶନ ପେଟରେ ହବ । ମୁଣ୍ଡରେ ନୁହେଁ ।'

'ଧୈର୍ଯ୍ୟ ଛାଡ଼ିଲେ ହବ ?

ମିଚମିଚିଆ ଆଖିରେ ମୁଁ ଅନେଇଲି । ମନୋରମାର କଥାଶୁଣି ରଜନୀ ଟିକେ ହସିଲା ‥ ‥

'ଅବଶ୍ୟ ମୁଁ କହୁଥିବା କଥାରେ କିଛି ଅର୍ଥ ନାହିଁ, କିନ୍ତୁ କ'ଣ ବା କରି ଯାଇପାରେ—' ମନୋରମା କହିଲା ।

କିଛି ସମୟ ପରେ ରଜନୀ ପୁଣି କହିଲା—

'ପିଲାଦିନେ ଗପଟିଏ ଶୁଣିଥିଲି । ରୁଦ୍ଧକ ମୁଦି କଥା । ସେ ମୁଦିଟି ଆଙ୍ଗୁଳିରେ ପିନ୍ଧିଲେ ସାମନାରେ ଥିବା ଲୋକର ମନରେ ଯାହା ସବୁ ବସ୍ତୁର ଆସୁଥିବ ଓ ତା'ର ସ୍ୱଭାବ ଜାଣି ହେବ । ସେ ଗପରେ ସେଉଁ ଝିଅ ଥିଲା—ତା' ନାଁ ମଧ୍ୟ ରଜନୀ । ତେଣୁ ବହୁତ ଦିନ ପର୍ଯ୍ୟନ୍ତ ମୁଁ ନିଜକୁ ସେହି ରଜନୀ ବୋଲି ଭାବୁଥିଲି । ବାପାଙ୍କୁ କହି ଗୋଟିଏ ମୁଦି କିଣିଲି । ସେ ମୁଦିର ରୋଜ ପୂଜା କରୁଥିଲି ।'

କହୁ କହୁ ହଠାତ୍ ରହିଗଲା । ତା' ପରେ ଟିକେ ହସିଦେଇ କହିଲା—

'ସବୁ ପାଗଳାମି—ବର୍ତ୍ତମାନ ମନେ ପଡ଼ିଲେ ହସ ଲାଗେ ।'

ମୁଁ ଭାବୁଥିଲି, କହିବାକୁ—'ସେ ସମସ୍ତଙ୍କ ଏ ପାଗଳାମୀରେ କେତେ ସୁନ୍ଦର ଭାବେ ବଢି ଯାଇଥିବ ?'

ବହୁତ କଷ୍ଟରେ ନିଜକୁ ସମ୍ବରଣ କଲି ।

ସେ ମୁଦିଟି କୁଆଡ଼େ ଗଲା ? ମନୋରମା ଇଣ୍ଟରଭ୍ୟୁ ଟାଇପ ପ୍ରଶ୍ନଟିଏ ପଚାରିଲା ।

ମୁଁ ମନେ ମନେ ରାଗିଗଲି ।

ଇଣ୍ଟରଭ୍ୟୁ ଭଳି ବେକାର କିଛି ଏ ଦୁନିଆଁରେ ନ ଥିବ ।

କହୁଥିବା ବ୍ୟକ୍ତିଜଣଙ୍କ ଯେତେବେଳେ କିଛି ଗୋଟେ ମରମ କଥା କହିବାକୁ ଆରମ୍ଭ କରେ । ଇଣ୍ଟରଭ୍ୟୁ ନବାପାଇଁ ଆସିଥିବା ବ୍ୟକ୍ତି ଛପା ହୋଇଥିବା ପର ପ୍ରଶ୍ନ, ନ ହେଲେ କଲମ (coloumn)ର ଦୀର୍ଘତା ବିଷୟରେ ଭାବୁଥାଏ । କହୁଥିବା ଜଣକ 'କବିତା'ରେ ପ୍ରବେଶ କଲାବେଳେ ପଚାରୁଥିବା ଜଣକ 'ଗଣିତ'ରେ

ଥାଏ । ସେଥିପାଇଁ ଇଣ୍ଟରଭ୍ୟୁ ସରିବା ମାତ୍ରେ ପଗ୍ଭରୁଥିବା କଂସ ଜଣକ କହେ 'ସମସ୍ତଙ୍କି ଭଲ ଭାବରେ କଟିଲା—ହେଁ ହେଁ ହେଁ···'

ମନୋରମା ସ୍ଥାନରେ ସତ ମୁଁ ଥା'ନ୍ତି । ତା' ହେଲେ ରଜନୀ ସହ ତା' ମୂଦର ପୂଜା ଘରକୁ ମୁଁ ଧୂପ ବାସନାରେ ଭରି ଦେଇଥାନ୍ତି । ଇଣ୍ଟରଭ୍ୟୁରେ ପ୍ରୀତିପୂର୍ଣ୍ଣ କଥା ଆରମ୍ଭ କରିଥା'ନ୍ତି । ସେ କହୁଥାନ୍ତା ମୁଁ କେବଳ ଶୁଣୁଥାନ୍ତି । ତା' ଚଲାପଥରେ ସାଥୀ ହୋଇଥାନ୍ତି । ଶୁଣୁଥିବା ଜଣକ କେବଳ ବେଲୁନ୍ ହେଲେ କହୁଥିବା ଜଣକ ଗ୍ୟାସବେଲୁନ୍ ହୋଇଥାଏ । ବେହୋସ ହୋଇ ନଶାରେ ବେଶୀ ବେଶୀ ଉପରକୁ ଉଠୁଥିବା ଗ୍ୟାସବେଲୁନ । ତେଣୁ ଏ ଦୁଇଟି ବେଲୁନ୍ ପରସ୍ପର ସହ କୌଣସି କଥୋପକଥନ କରିପାରିବେ କି ?

ସେଥିପାଇଁ ଇଣ୍ଟରଭ୍ୟୁ ଗୁଡ଼ିକ ମଧ୍ୟ ମୁଁ ପଢ଼େ ନାହିଁ, ରଜନୀ ପାଖରେ ସେ ମୂଦଟି ଯଦି ବର୍ତ୍ତମାନ ରହିଥାନ୍ତା, ତାହାହେଲେ ସେ ଜାଣିପାରନ୍ତା । ଶ୍ରବଣ ଭିତ୍ତିର ମର୍ମ ମୁଁ ବେଶ୍ ବୁଝିପାରୁଛି । ଗ୍ୟାସ୍ ବେଲୁନ ମଧ୍ୟ ମୁଁ ହୋଇପାରେ ଓ ହେଲି, ତେଣୁ ରଜନୀର ଦୁଃଖ ବୁଝିପାରିଲି ।

ସେ କହୁଥିଲା—

'ସେ ମୂଦଟି ହଠାତ୍ ଦିନେ ହଜିଗଲା । ଅନେକ ଦିନ ପର୍ଯ୍ୟନ୍ତ କୌଣସିଥିରେ ମନ ଲାଗୁ ନ ଥିଲା । ପୂଜା କଲେ ଦିନେ ନା ଦିନେ ଏମିତି କିଛି ଦିବ୍ୟଶକ୍ତି ସେ ମୂଦରେ ମୁଁ ପାଇବି ବୋଲି ଭାବୁଥିଲି । ମୁଁ ସବୁବେଳେ ଅନ୍ୟମନସ୍କ ରହୁଥିବା ଦେଖି ବାପା ଦିନେ ମତେ ପଗ୍ଭରିଲେ । ମୁଁ ମଧ୍ୟ କହିଦେଲି । ସେ କହିଲେ—'ତୁ ନିଶ୍ଚୟ ସେମିତି ମୂଦଟିଏ ଦିନେ ନା ଦିନେ ପାଇବୁ । ବଡ଼ ହୋଇ ଯା, ବହୁତ ପାଠ ପଢ଼, ମନୋବିଜ୍ଞାନକୁ ଭଲ କରି ବୁଝି ନେ । ତା' ପରେ ଆଉ ମୂଦର ଜରୁରୀ ପଡ଼ିବନି । ମୁଁ ବହୁତ ପଢ଼ିବାକୁ ଚାହୁଁଥିଲି, କିନ୍ତୁ ବାପା ଅସାଧ ରୋଗରେ ପଡ଼ି ସିରସ୍ଥସ ହେଲେ । ସେଥିରେ ତାଙ୍କ ଗୃହସ୍ଥି ଗଲା । ତେଣୁ ମେଟ୍ରିକ ପାସ ହବା ମାତ୍ରେ ମୋ ବିବାହ ଠିକ କରାଗଲା । ବାପାଙ୍କ ସେବା ଶୁଶ୍ରୂଷାରେ ରହି ମୁଁ ସେ ମୂଦ କଥା ଭୁଲି ଯାଇଥିଲି ; କିନ୍ତୁ ଯେତେବେଳେ ସେ ମତେ ଦେଖିବାକୁ ଆସିଲେ । ମୋର ମୂଦ କଥା ମନେ ପଡ଼ିଗଲା ।'

'ତା'ହେଲେ ତମର ବିବାହ ହୋଇ ନ ଥାନ୍ତା ।'

'ବିଲକୁଲ୍ ହୋଇ ନଥାନ୍ତା । କେବଳ ସେତିକି ନୁହଁ···ଆଉ କାହାରି ସହ ତାଙ୍କର ବିବାହ ମୁଁ କରେଇ ଦେଇ ନ ଥାନ୍ତି । ପାପ ପୁଣ୍ୟର ବିଗ୍ଭର ନ କରି ପ୍ରତ୍ୟେକ ଝିଅକୁ ସାବଧାନ କରେଇଥାନ୍ତି ।'

ଏମିତି ହେଲେ ଏ ଦୁହିଁଙ୍କରେ କୌଣସି ବିବାହ ସମ୍ଭବ ହେବ ନାହିଁ । କେବଳ ଦେଖି, ଶୁଣିଛା ମାମୁଲି ପ୍ରଶ୍ନ ପ୍ରଶ୍ନ ବିବାହ ଠିକ୍ କରନ୍ତୁ । ଏହା ହିଁ ସବୁଠାରୁ ଭଲ ।"

ମନୋରମା ଭଲ କଥାଟିଏ କହିଥିଲା ।

'ଅବଶ୍ୟ ଏ ସବୁର ଉତ୍ତର ମୋ ପାଖରେ ନାହିଁ, କାରଣ ଯାହା ସବୁ ମୁଁ ସହୁଛି; ତମେ କଳ୍ପନା ମଧ୍ୟ କରିପାରିବ ନାହିଁ । ଯେଉଁ ଦୁଃଖର ଅନ୍ତ ଅଛି, ସେ ଦୁଃଖକୁ ମଣିଷ ସହି ନିଏ । ଯେଉଁ ଦୁଃଖର କୂଳ ଅଛି; ମଣିଷ ତାକୁ ଡେଇଁ ପାରି ହୋଇଯାଏ ।

ରଜନୀ ଏତେ ସୁନ୍ଦର କଥାଟିଏ କହିଲା, ଶୁଣିଲି ଶୋଇବା ଆଗରୁ ଶ୍ରଦ୍ଧା ପ୍ରକାଶ୍ୟରେ ବାଃ, ବାଃ, କରିବି, କିନ୍ତୁ ଏ ମୋହକୁ ମଧ୍ୟ ଜୟ କଲି ।

'ଏତେ କରୁଣ ହେଲେ ଚଳିବ ? କୌଣସି ଏକ କୋମଳ ପ୍ରସଙ୍ଗରେ ମଣିଷ କାହିଁ ଶ୍ରଦ୍ଧାଳୁ ଭଲ ବଦଳି ଯାଏ ।'

'ସେ ମୁହୂର୍ତ୍ତଟି ମୋ ଜୀବନରେ ଅସିଲା ଭଲ ଲାଗୁ ନାହିଁ ।'

'ତମ ସ୍ୱାମୀ କ'ଣ କହୁଛନ୍ତି ?'

'ସେକଥା ଯଦି ମୁଁ ଜାଣି ପାରିଥାନ୍ତି, ତା' ହେଲେ ଉପାୟ ମଧ୍ୟ କରିଥାନ୍ତି । ତମେ ଯାହା ବି କର, ତାଙ୍କ ମନ ମାନେ ନାହିଁ ।'

'ଚାକିରି ?'

'ବଢ଼ିଆ ଚାକିରି ଅଛି । ମୋଟା ଦରମା ଅଛି । ଆର୍ଥିକ ବିବେଚନା ଯଦି ଥାନ୍ତା, ବର୍ତ୍ତମାନ ପର୍ଯ୍ୟନ୍ତ ଜୀବନ ହାରି ସାରନ୍ତିଣି । ଅବସରରେ ବି ସେଇ କଥା ସମସ୍ତଙ୍କ ଉପରେ ଚଢ଼ିବେ । କିଛିଦିନ ତଳେ ଜଣକୁ ମାରିବାକୁ ବାହାରିଥିଲେ ।'

'ଘରେ ଅନ୍ୟମାନେ ତାଙ୍କୁ କିଛି କହୁନାହାନ୍ତି ।'

'ମୋ ବାପଘରୁ କେହି ଆସନ୍ତି ନାହିଁ । କାରଣ ସ୍ୱଭାବ ଜାଣିବା ପରେ ଅପମାନ ପାଇବାକୁ କିଏ ଆସିବ ? ତାଙ୍କର ନିଜର ବୋଲି ଯିଏ ଅଛନ୍ତି ସେମାନେ ସବୁ କଥା ଜାଣିଛନ୍ତି । କେବଳ ବେଳେ କିଛି ସୁବିଧା ଅସୁବିଧାରେ ଆସି ପଚାରି ଉପଚାର କରନ୍ତି ।'

'ଯେମିତି ଆଜି ଆସିଥିଲେ ।'

'ସେଥିଯୋଗୁଁ ତ ମତେ ବେଶୀ କଷ୍ଟ ହୁଏ । କାରଣ ଏସବୁ ସେମାନେ କରନ୍ତି, ମୋ ପ୍ରତି ଦୟା ଦେଖେଇ । କିନ୍ତୁ ଯେପର୍ଯ୍ୟନ୍ତ ମୁଁ ଦମ୍ଭରେ ଠିଆ ହୋଇଛି ସେ ପର୍ଯ୍ୟନ୍ତ ମୁଁ କାହାର ଦୟା ଲୋଡ଼େ ନାହିଁ ।

ଦୁହେଁ ଚୁପ୍ ହୋଇଗଲେ । ରଜନୀ ଉଠି ତା' ସ୍ୱାମୀ ଦେହରେ ପଡ଼ିଥିବା ଷ୍ୱଦରକୁ ଠିକ୍ କଲା ।

'ପଗ୍ଭରିବା ଠିକ୍ ହେବନ, ତଥାପି ପଗ୍ଭରୁଛ ।'

'ପଗ୍ଭର ମୋ ପାଖରେ ଉତ୍ତର ରେଡ଼ି ଅଛି । ପ୍ରଶ୍ନ ମଧ୍ୟ କ'ଣ ହୋଇପାରେ, ତା'ର ଅନ୍ଦାଜ ଆଜକାଲ୍ ମୁଁ କରିପାରେ । ସବୁ ମୁରବୀମାନେ ଏକାଠି ବସି ତାଙ୍କୁ କାହିଁକି ବୁଝାଉ ନାହାନ୍ତି । ଏହି କଥା ତ ?'

ମନୋରମା ମୁଣ୍ଡ ହଲାଇଲା ।

'ତାହା ମଧ୍ୟ ସରିଛି, ରଜନୀ କହି ଭୁଲ କରୁଛି କି ? ପଗ୍ଭରିଲେ କୌଣସି ଉତ୍ତର ନ ଦେଇ ମୁଣ୍ଡ ପୋତି ବସି ରହନ୍ତି । ସେଠୁ ସାତ ଆଠ ଦିନ ସବୁ ଠିକ୍ ଷ୍ୱଲେ । ପୁଣି ଯେଉଁ କଥାକୁ ସେହି କଥା ।'

'ତା' ହେଲେ ଏକମାତ୍ର ଉପାୟ ରହିଲା ।'

'ଛାଡ଼ପତ୍ର କଥା କହୁଛ ତ ? ତାହା ବି ମିଳିବ ନାହିଁ । ଦିନକୁ ପଗ୍ଭଶ ଥର କହିବେ । ଏ ଘରେ ତୋର କୌଣସି ଜରୁରୀ ନାହିଁ ।' କିନ୍ତୁ ଛାଡ଼ପତ୍ର ଦେବେନି । ସ୍ୱାମୀ କିମ୍ବା ସ୍ତ୍ରୀ ଯଦି ବ୍ୟଭିଗ୍ଭରୀ ହୋଇଥାନ୍ତି, ନଂପୁସକ ବା ବାଞ୍ଝ ହୋଇଥାନ୍ତି ତା' ହେଲେ ଆମ ଆଇନ୍‌ରେ ଛାଡ଼ପତ୍ରର ବ୍ୟବସ୍ଥା ଅଛି । କିନ୍ତୁ ମୋ ସ୍ୱାମୀ ଯଦି, ମାନସିକ ଯନ୍ତ୍ରଣା ଦଉଛି, ଏହି କାରଣ ପାଇଁ ଆଇନ୍‌ରେ କୌଣସି ବ୍ୟବସ୍ଥା ନାହିଁ । ଯେଉଁ ସଙ୍କଟର ଜାତ ଠିକ୍ ରେଇ ହୁଏନି । ତା' ରୂପକୁ ନାମ ଦେଇ ହୁଏନି, ସେହିଗୁଡ଼ାକ ମାରାତ୍ମକ । ଏ କଥା କ'ଣ ଆଇନ୍ କେବେ ବୁଝିବ ? ହୁଏତ ଅଛି ତ ଲୋକହସା ଓ ଅପମାନ ସହି ଘର ଛାଡ଼ିବ ; କିନ୍ତୁ ଏ ସାହସ କରିବ କିଏ ?

ପ୍ରଶ୍ନଟି ଜ୍ୱଳନ୍ତ ଥିଲା । କିନ୍ତୁ ଉତ୍ତର ନ ଥିଲା । ଉତ୍ତର ବଦଳରେ ପ୍ରତିପ୍ରଶ୍ନ ହିଁ ଥିଲା । ମନୋରମା ପଗ୍ଭରିଲା—

'ତମେ କ'ଣ କରିବ ବୋଲି ଷ୍ୱରୁଛ ?'

'ଯେଉଁଦିନ ଅସହ୍ୟ ହେବ ସେ ଦିନ······'

'ସେ କଥା ମନକୁ ମଧ୍ୟ ଆଣେ ନାହିଁ । ପୁଅ ପାଇଁ···'

'ସେପରି ମୋହରେ ଫସିଲା ଭଳି ମୁଁ ନୁହେଁ । ସବୁଦିନେ ଠାକୁରଙ୍କୁ ପ୍ରାର୍ଥନା କରୁଛି, ଯେମିତି ବି ହେଉ, ଯେଉଁ ବାଟରେ ହେଉ ମତେ ମୁକ୍ତ କର । ଏସବୁ ସହିବାର ସୀମା ଟପିଗଲାଣି । କେଉଁ ମୁହୂର୍ତ୍ତରେ କାହା ସମ୍ମୁଖରେ ମୋର

ଅପମାନ ହବ କହ୍ୱ ହବନ । ସେଥିପାଇଁ ପଡ଼ୋଶୀ ନାହାନ୍ତି । ବାହାର ଦୁନିଆଁ ସହ କୌଣସି ସମ୍ବନ୍ଧ ନାହିଁ ।'

ଅଫିସ୍ ଟାଇମ୍ ବ୍ୟତୀତ ଅନ୍ୟ ସମୟରେ କ'ଣ କରନ୍ତି ?

'ଅଫିସରୁ ଘର, ଘରୁ ଅଫିସ । ପଢ଼ିବାରେ ଆଗ୍ରହ ନାହିଁ ? ସଙ୍ଗୀତ ପ୍ରତି ଆକର୍ଷଣ ନାହିଁ । କାହାସହ ଦୁଃଖ ସୁଖ ହେବେ, ତାହା ମଧ୍ୟ ନାହିଁ । କୁଆଡ଼େ ବୁଲିବାକୁ ମଧ୍ୟ ଯିବେ ନାହିଁ । ସବୁବେଳେ ଘରେ ମୋର ପଛେ ପଛେ । ମୁଁ କ'ଣ କରୁଛି ଦେଖୁଥିବେ । କିଛି ଯଦି ଭୁଲ୍ ହେଲା—ଗାଳିଗୁଲଜ ଆରମ୍ଭ କରିଦେବେ ।''

'ଅଜବ ସ୍ୱଭାବ ।'

'ଏମିତି ଦିନେ ନୁହେଁ, ଦୁଇଦିନ ନୁହେଁ, ଆୟୁଷ ଥିବା ପର୍ଯ୍ୟନ୍ତ ଦିନ ଗଣିବ । ପେଟରେ ଅଳସର ହବାର କାରଣ ମଧ୍ୟ ଏହି ସ୍ୱଭାବ ।'

'ତେଣୁ ଭାବୁଛି ଯେଉଁଦିନ ମରିବ ସେ ଦିନ···'

'ଏମିତି ଶୁହନାହିଁ । ସୁଖ ତ ଅଛି ।'

'ତା'ର କଥା ଏତେଦିନ ଭାବୁଥିଲି । ଏଥର ତା'ପାଇଁ ମଧ୍ୟ କୌଣସି ମୋହ ନାହିଁ । ସେ ମୋର ହୋଇ ରହି ନାହିଁ ।'

'କାହିଁକି ?'

ଅଫିସ ଗଲାବେଳେ ଏ ଗ୍ରେଟିଆ ଜୀବଟିକୁ ଶିଖେଇ ଯିବେ । ମା କ'ଣ କରୁଛି, କେଉଁଠିକୁ ଯାଉଛି, କାହା ସହିତ କଥା କହୁଛି, ଏ ସବୁ ଦେଖିବାକୁ ଶିଖାନ୍ତି । ଏ ଗ୍ରେଟିଆ ଜୀବଟି ତା' ବାପା ଆଖିରେ ମତେ ଦୃଷ୍ଟି ରହିଥାଏ । ଏ କଥା କେମିତି ସହିବ କହିଲେ ? ଷିର ଇତୁର ଗଲେ କିଛି କରି ହୁଏନି ; କିନ୍ତୁ ଆଖି ଆଗରେ ଉଭୁରି ଯାଇଥିବ, କ'ଣ ଦେଖିହବ ?'

'ତମପ୍ରତି ସେ ଆଉ କିଛି ସନ୍ଦେହ କରୁଛନ୍ତି କି ?'

'ସେଭଳି ସନ୍ଦେହ ତାଙ୍କ ମନରେ କ'ଣ, ସ୍ୱପ୍ନରେ ମଧ୍ୟ ଆସିବ ନାହିଁ । ରଜନୀ ଜୋର୍ ଦେଇ କହିଲା । ଏ ପଟେ ସିନା ଏମିତି ଅନ୍ୟ ଦିଗରୁ ଅତି ସରଳ ପ୍ରକୃତିର ଲୋକ ।'

'ଆଶ୍ଚର୍ଯ୍ୟ ! ଏ ସବୁର ଯୋଗସୂତ୍ର ଖୋଜିବା ମୁସ୍କିଲ ।'

ରଜନୀ ନିଜକୁ ନିଜେ କହୁଥିଲା ଭଳି କହୁଥିଲା—'ମୁଁ ମୋ ଦୃଷ୍ଟିରୁ ଏ ସବୁର ଯୋଗସୂତ୍ର ଖୋଜୁଛି । ମଣିଷ କୌଣସି ନା କୌଣସି କାର୍ଯ୍ୟରେ ନିଜକୁ ହଜେଇଦବା ଦରକାର । ସ୍ୱପ୍ନରେ ହଜେଇଲେ ମଧ୍ୟ ଚଳିବ । ପୂର୍ଣ୍ଣ ହେଉଥିବା କିମ୍ବା ଅପୂର୍ଣ୍ଣ ରହୁଥିବା, ଥରେ ନିଜକୁ ହଜେଇ ଦେଲେ ସେ ପୁଣିଥରେ ନିଜକୁ

ଖୋଜେ । ଏହ 'ହଜବା' ଓ 'ଖୋଜବା' ପ୍ରତ୍ୟେକ ପାଇଁ ଭିନ୍ନ ଥାଏ । ପତି-ପତ୍ନୀଙ୍କର ଯଦି ଗୋଟିଏ ମତ ; ତାହାହେଲେ ସଂସାରରେ ସ୍ୱର୍ଗସୁଖର ପ୍ରବେଶ ହୁଏ । ଯଦି ନାହିଁ ତାହା ହେଲେ କେବଳ ନିଜସ୍ୱ ହବା ଦରକାର । ସେଥିରେ ଶାନ୍ତ ରହେ । ସ୍ୱାମୀଙ୍କ ଦେଇ ଏସବୁ କିଛି ହବନି । ତେଣୁ ବଢୁଥିବା ସମସ୍ୟାଟି କାହାର ? ସୈତାନର ! ତେଣୁ ଏ ସୈତାନ ହାତୁଡ଼ରୁ ମୁଁ ଖସିବା ଭଲ ଲାଗୁନି ।'

ଏହି ହେଲା ରଜନୀର କାହାଣୀ ; କିନ୍ତୁ ଏ କାହାଣୀର ଶେଷ ନାହିଁ । ଏହାହିଁ ଏ କାହାଣୀର ମର୍ମଭେଦୀ ଦୁଃଖ । ମନୋବିଜ୍ଞାନର ପଣ୍ଡିତମାନେ ମଧ୍ୟ ଏଠି ହାର୍ ମାନିବେ ।

ରଜନୀକୁ ସେ ମୁହଁଟା ମିଳିଥିଲେ ଭଲ ହୋଇଥାନ୍ତା !

କିନ୍ତୁ କିଏ ତାକୁ ଏଥିରୁ ମୁକ୍ତ କରିବ ?

କେମିତି କରିବ ?

ପାହାନ୍ତାରେ ଦୁର୍ବାସାର ଅପରେଶନ । ତା'ପରେ ଯାହା ସବୁ ମୋ ମନକୁ ଆସିଲା ସେ ସବୁ ଅତି ଭୟଙ୍କର ଥିଲା ; କିନ୍ତୁ ମନକୁ ଆସିଥିଲା ତେଣୁ ଅସ୍ୱୀକାର କରି ହବନି ।

ଏ ଅପରେଶନ ଯଦି ଫେଲ ମାରେ ? ଜଣା ନେଇ ଅପରେଶନ କରିବା ବିପଦ ଜାଣି ମଧ୍ୟ···ରଜନୀ ମନରେ ଏମିତି କିଛି ବସ୍ତୁର ଆସୁଥିବ କି ? କିଛି ସମୟ ପୂର୍ବରୁ କହୁଥିଲି, ଯେମିତି ବି ହଉ, ଯେଉଁ ବାଟରେ ହଉ, ସେ ମୁକ୍ତ ଚାହେଁ । ତା' ମୁକ୍ତିର ବାଟଟି ଏଥିରେ ଥିବ କି ?

ରାତି ପାହି ଆସୁଥିଲା ।

ମୁଁ ଅର୍ଦ୍ଧନିଦ୍ରାରେ ଥିଲି । ନିଦ ବଟିକାର ପ୍ରଭାବରେ ଆଖପାଖରେ କ'ଣ ଘଟୁଛି କିଛି କିଛି ବୁଝି ହଉଥିଲା, କିଛି କିଛି ଅବୁଝା । କିଏ ଜଣେ ଆସି ଦୁର୍ବାସାକୁ ଇଂଜେକ୍ସନ ଦେଲା ।

କିଏ ଜଣେ ଆସି ରଜନୀ ପାଖରୁ ଗୋଟିଏ କାଗଜରେ ଦସ୍ତଖତ କରାଇ-ନେଲା । ଦୁର୍ବାସା କାହାକୁ ଗାଳି ଦଉଥିଲା ।

ମଝିରେ ଥରେ ଷ୍ଟ୍ରେଚର ଧରି ଦୁଇଜଣ ଆସି ପହଞ୍ଚିଲେ ।

ତା' ପରେ ସବୁ ଶାନ୍ତ ହୋଇଗଲା ।

ମୁଁ ବି ଶୋଇପଡ଼ିଲି ।

ଗୋଟିଏ ଭୟଙ୍କର ସ୍ୱପ୍ନ ଦେଖି ମୋ ନିଦ ଭାଙ୍ଗିଗଲା । ଦୁର୍ବାସାର ସମ୍ପୂର୍ଣ୍ଣ ଶରୀର ଗୋଟିଏ ଧଳାରଙ୍ଗର ଶାଲରେ ଆଚ୍ଛାଦିତ ହୋଇ ଷ୍ଟ୍ରେଚରରେ ପଡ଼ିଛି । ପାଖରେ ଅପରେସନ କରୁଥିବା ଡାକ୍ତର ଠିଆ ହୋଇଛନ୍ତି ଓ ରଜନୀକୁ କହୁଛନ୍ତି—'We tried our levle best !

ମୁଁ ହଡ଼ବଡ଼େଇ ଉଠି ବସିଲି । ମୋ ଦେହ ଝାଳରେ ବୁଡ଼ି ଯାଇଥିଲା । କିନ୍ତୁ ସାମନାରେ ଦେଖା ଯାଉଥିବା ଦୃଶ୍ୟକୁ ଦେଖି ମୁଁ ଜଡ଼ ହୋଇଗଲି ।

ରୁମର କବାଟ ଆଉଜା ହୋଇଥିଲା ।

ରୁମରେ ମୁଁ ଏକୁଟିଆ । ମାନେ ରଜନୀ ଦୃଷ୍ଟିରୁ ନଯୋଡ଼ ନିଦରେ ଶୋଇଥିବା । ରୁମ ଭିତରେ ସୁରଭିତ ଧୂପକାଠିର ଧୂଆଁ ଭରି ରହିଥିଲା ।

ଦୁର୍ବାସାର ଖଟ ଉପରେ ଶିବଙ୍କ ଫଟୋ ।

ସେ ଫଟୋ ଆଗରେ ରଜନୀ ମଥା ରଗୁଡ଼ୁଥିଲା ।

ମୁହଁରେ ବ୍ୟାକୁଳତା ଓ ପାଟିରେ କହି ଚାଲିଥିଲା—

ପ୍ରଭୁ ! ଠାକୁରେ ! ତାଙ୍କୁ ଭଲ କରିଦିଅ, ତାଙ୍କୁ ବଞ୍ଚାଅ ।



# ଏମିତି ଗ୍ରେନାଟ

ଅଜଣା ରାଜ୍ୟର ଜଣା ରାଜା ଜଣକ ଆଜ ବଡ଼ ଚିନ୍ତାରେ ପଡ଼ିଥିଲେ । ତାଙ୍କର ପ୍ରିୟ ପ୍ରଧାନମନ୍ତ୍ରୀ ତାଙ୍କ ସମ୍ମୁଖରେ ବସିଥିଲେ । ରାଜା ଚୁପ୍ ଥିଲେ । ମଝିରେ ମଝିରେ ଦୀର୍ଘନିଃଶ୍ୱାସ ଛାଡ଼ି ତାଙ୍କ ପ୍ରାସାଦରେ ଏପଟ ସେପଟ ହେଉଥିଲେ । ମନ୍ତ୍ରୀ ଜାଣି ପାରୁଥିଲେ । ରାଜାଙ୍କର ମନ ଆଜି ଭଲ ନାହିଁ । କିଛି କହୁ ନାହାନ୍ତି । କ'ଣ କଲେ କଥା କହିବେ । ଏହି ଚିନ୍ତା ତାଙ୍କୁ ଘାରିଥିଲା । ଏହି ସମୟରେ ଦରଜାରେ ଝୁଲୁଥିବା ପରଦା ହଲିଲା ।

'କିଏ ଅଛ ?' ମନ୍ତ୍ରୀ ପଚାରିଲେ ।

'ମନ୍ତ୍ରୀଜୀ ଜୟଦୁର୍ଗରୁ ଦୂତ ଆସି ପହଞ୍ଚିଛି । ଉତ୍ତର ମିଳିଲା ।

ମହାରାଜାଙ୍କୁ ଖବରଟି ଜଣାଇବା ପାଇଁ ମନ୍ତ୍ରୀ କହିବାକୁ ଯାଉଛନ୍ତି । ମହାରାଜ ତାଙ୍କୁ କହିଲେ ।

'ଦେଖିଲେ ମହାମନ୍ତ୍ରୀ···'

'କ'ଣ ହେଲା ?'

ଏଥର ଜୟଦୁର୍ଗର ମହାରାଜଙ୍କୁ ଆମେ କି ଜବାବ ଦେବୁ ?

ମହାରାଜ ତାଙ୍କର ସମ୍ମତି ଜଣେଇ ଦେଇଥିଲୁ । ଆଉ କେତେ ଜଣଙ୍କୁ ନାହିଁ କହିବେ !

ମନ୍ତ୍ରୀଙ୍କ ପାଖରେ ବସି ମହାରାଜ କହିଲେ—

'ରୂପବତୀ ପ୍ରକୃତରେ ତା' ନାମକୁ ସାର୍ଥକ କରୁଛି ; କିନ୍ତୁ ସଙ୍ଗୀତରେ ତା'ର ଜାଣିବାଏ ବି ରୁଚି ନାହିଁ ।

'ତା' ହେଲେ ଉତ୍ତର ପୁରର ରଞ୍ଜନା ଦେବୀଙ୍କୁ ଆପଣ କାହିଁକି ପସନ୍ଦ କଲେ ନାହିଁ ।

ନାଟ୍ୟକଳା ପ୍ରତି ତାଙ୍କର ଆଗ୍ରହ ନ ଥିଲା । କହି ମହାରାଜ ଦୁଆର ପର୍ଯ୍ୟନ୍ତ ଯାଇ ଜୟଦୁର୍ଗର ଦୂତକୁ ସନ୍ଧ୍ୟା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ କହିଲେ । ସେଠୁ ମନ୍ତ୍ରୀଙ୍କ ପାଖକୁ ଆସି କହିଲେ—ଆମ ସମସ୍ୟାର ସମାଧାନ ଆପଣ ହିଁ କରନ୍ତୁ ।

ମୋ ମତ ଅନୁସାରେ ଆପଣଙ୍କର କୌଣସି ସମସ୍ୟା ନାହିଁ ।

ଏଭଳି କପରି କହୁଛନ୍ତି । ଆମ ବିବାହର ପ୍ରଶ୍ନଟି ଅତି ଜଟିଳ ହେଲାଣି ।

'ତାହା ମଧ୍ୟ ଆପଣ କରିଛନ୍ତି ।'

'ମନ୍ତ୍ରୀବର, ଜୀବନର ପ୍ରତ୍ୟେକ କ୍ଷେତ୍ର ପ୍ରତି ଆମର କୌତୂହଳ ଓ କୌତୁକ ଅଛି ।

'କେବଳ କୌତୁକ କାହିଁକି କହୁଛନ୍ତି ? ଆପଣ ସଙ୍ଗୀତ ଜାଣନ୍ତି, ସାହିତ୍ୟରେ ଆପଣଙ୍କର ଖ୍ୟାତି ସର୍ବଶ୍ରୁତ । ଆପଣ ନିଜେ ଫଟୋଗ୍ରାଫି କରୁଛନ୍ତି । ଚିତ୍ରକଳାରେ ଆପଣଙ୍କର ପାରଙ୍ଗମତା ବର୍ଣ୍ଣନାତୀତ । ତା'ଛଡ଼ା ଶିକାର, ଖେଳ···

'ଏସବୁ ଅଷ୍ଟଗୁଣ ଆମକୁ ଅଭିଶାପ ଭଳି ଲାଗିଲାଣି ।'

'କିନ୍ତୁ ଏମିତି କାହିଁକି ? ସେହି କଥା ବୁଝିପାରୁନି ।'

'ଏ ସମସ୍ତ ଗୁଣପ୍ରତି ସେତିକି ଆଦର ଥିଲାଭଳି ସାଥୀ ବା ସଖି ଆମକୁ ମିଳିବ କି ନା ସନ୍ଦେହ ?

ଏ ପ୍ରଶ୍ନଟିକୁ ଆପଣ ହିଁ ଜଟିଳ କରିଛନ୍ତି । ଏ କଥା ମୁଁ କହିଲି, ତାହା କ'ଣ ମିଛ ? ମହାରାଜାଙ୍କର କଣ ଅଭାବ । ଏ କନିଆ ନା ସେ କନିଆ । ଏ ପ୍ରଶ୍ନ ସାମାନ୍ୟ ପ୍ରଜାମାନଙ୍କର,' ମହାରାଜ ପ୍ରତ୍ୟେକ ଗୁଣପାଇଁ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ସୁନ୍ଦରୀକୁ ବିବାହ କରିପାରନ୍ତି ।

ମନ୍ତ୍ରୀଙ୍କ କଥା ଶୁଣି ମହାରାଜ କହିଲେ । ଏ କଥା ଆପଣ ଏତେଦିନ ପରେ କହୁଛନ୍ତି ?

'କ୍ଷମା ମହାରାଜ ।'

ଅତି ଶୀଘ୍ର ଆମପାଇଁ ଅତି କମ୍‌ରେ ଷୋଳଟି ରାଜକନ୍ୟା ପସନ୍ଦ କରି ଆଣନ୍ତୁ ।

'ଆଜ୍ଞା ମହାରାଜ ।'

× × ×

ରାଜାଙ୍କର ବିବାହ ମହୋତ୍ସବରେ ସମସ୍ତ ନଗରୀ ଆନନ୍ଦ ଉତ୍ସାହରେ ବୁଡ଼ିଗଲା । ଏଭଳି ଗୁଣଗ୍ରାହୀ ରାଜାପାଇଁ ଷୋଳଟି ସ୍ତ୍ରୀ ଦରକାର । ଏକଥା ପ୍ରଜାମାନେ ହୃଦୟଙ୍ଗମ କରି ପାରିଥିଲେ ; କିନ୍ତୁ ପ୍ରଜା ହୃଦୟଙ୍ଗମ କରି ପାରିଛନ୍ତି ଏକଥା ରାଜା ଜାଣି ନ ଥିଲେ ।

'ଆମେ କେତେ ସବୁ ସୁଖରୁ ବଞ୍ଚିତ, ଏହାର ଜ୍ଞାନ ଦ୍ୱାରା ହୋଇଥିବା ଦୁଃଖ ଅପେକ୍ଷା ଆମକୁ କେତେ ସବୁ ସୁଖ ମିଳିଥାନ୍ତା ଏହାର ଅଜ୍ଞାନ ବେଶି ଦୁଃଖ-ଦାୟକ ।'

ଅର୍ଥାତ୍ ରାଜା ଏ ସବୁ ଅଙ୍ଗନକୁ ଭଲଭାବରେ ଉପଭୋଗ କଲେ· ଏଥିରେ ସନ୍ଦେହ ନ ଥିଲା ।

ମହାରାଜ ସୁଖସାଗରରେ ଭାସୁଥିବେ ବୋଲି ମନ୍ତ୍ରୀ ଭାବୁଥିଲେ । କିନ୍ତୁ ଦିନେ ଦେଖନ୍ତି ତ, ରାଜା ପୂର୍ବଭଳି ଅନ୍ୟମନସ୍କ ଓ ଅତି ବ୍ୟାକୁଳ ଦେଖା ଯାଉଥିଲେ ।

ମନ୍ତ୍ରୀଜୀ, ଏ ଜୀବନଟି ସତରେ ଏକ ମୃଗତୃଷ୍ଣା !!

'ମହାରାଜ ଏଭଳି କାହିଁକି କହୁଛନ୍ତି ? ଛଅ ମାସ ହୋଇଗଲା । ଟିକେ ଫୁରସତ ମିଳି ନାହିଁ ଆପଣଙ୍କୁ । ସାହିତ୍ୟ ସମ୍ମିଳନୀ, ତା'ପରେ ସଙ୍ଗୀତ ମହୋତ୍ସବ, ପରେ ପରେ ନାଟ୍ୟ ସପ୍ତାହ । ବାର୍ଷିକ ଖେଳକୁଦ ପ୍ରତିଯୋଗିତା ଏ ସବୁ ଯୋଗୁଁ ଏ ନଗରର କୀର୍ତ୍ତି ବିଶ୍ୱବ୍ୟାପ୍ତ ହୋଇଛି । ମହାରାଜ ସମ୍ମାନ ଲାଭ କରିଛନ୍ତି । ବୈବାହିକ ଜୀବନରେ ମଧ୍ୟ···

ସେହି କଥାଟି କହିହେଲୁ ନାହିଁ ।

'କାହିଁକି ?'

ମନ୍ତ୍ରୀଜୀ ଆମେ କ'ଣ ଶରୀର ସୁଖପାଇଁ ଏତେଗୁଡ଼ିଏ ବିବାହ କଲୁ ? ଅବଶ୍ୟ ଶାରୀରିକ ସୁଖର ମହତ୍ତ୍ୱ ନିଶ୍ଚୟ ଅଛି । କାରଣ ସେ ସୁଖରେ ଅବ୍ୟକ୍ତ ଭାଷାର ମିଳନ ଅତି ମହତ୍ତ୍ୱପୂର୍ଣ୍ଣ । କିନ୍ତୁ ତା' ଅପେକ୍ଷା ଦୁଇଟି ମନର ମିଳନକୁ ଆମେ ବେଶି ଗୁରୁତ୍ୱ ଦେଉ । ସେ ବାବଦରେ ଆମ ତୃଷ୍ଣା ଅସରନ୍ତି ; କିନ୍ତୁ ସେଇଠି ଆମ ମନ ମରି ଯାଉଛି ।

'ମହାରାଜ ! ଆପଣଙ୍କ କଥା ମୁଁ ବୁଝିପାରିଲି ନାହିଁ । କାରଣ ବିଭିନ୍ନ କଳା-କ୍ଷେତ୍ରରେ ଆପଣଙ୍କ ସହଧର୍ମିଣୀ···!

'ସହଧର୍ମିଣୀ ଶବ୍ଦଟି ଅତି ନିରର୍ଥକ । ସଙ୍ଗୀତ ମହୋତ୍ସବ ସମୟରେ ଆମେ ରୂପବତୀର ମହଲରେ ସପ୍ତାହବ୍ୟାପୀ ଥିଲୁ ; କିନ୍ତୁ ସେହି ସମସ୍ତ ମଧ୍ୟରେ ଆମର ସାହିତ୍ୟପ୍ରେମୀ ସହଧର୍ମିଣୀ ଆମ ପ୍ରତି ଅଭିମାନ କଲେ ।

ଏହି କଥା ତ ? ପରେ ପରେ ଯେଉଁ ସାହିତ୍ୟ ସମ୍ମିଳନୀ ହେଲା ସେ ସମୟରେ ଆପଣ ତାଙ୍କର ନିଶ୍ଚୟ ମାନଭଞ୍ଜନ କରିଥିବେ ?

କିନ୍ତୁ ଯେତେବେଳେ ପର୍ଯ୍ୟଟନ ଭଲ ପାଉଥିବା ମଧୁରାଣି ରୁଷିଗଲେ—

ମାନେ ଏତେ ଯେ···

ମୁଁ କଳ୍ପନା କରିପାରୁଛି ।

ମନ୍ତ୍ରୀଙ୍କ କଥା ଶୁଣି ମହାରାଜଙ୍କ ଭ୍ରୂଲତା ଉଠିଗଲା ।

'ପ୍ରତ୍ୟେକ ସ୍ତ୍ରୀର ପ୍ରେମ କରିବାର ପଦ୍ଧତି—ଭିନ୍ନ ଥିଲେ ମଧ୍ୟ ରୁଷିବା ପଦ୍ଧତି ଏକ ଥାଏ ।'

'ମାନେ ?'

'ମାନେ ବିପକ୍ଷତା ଓ ସନ୍ତୁଣୀ ଭର୍ତ୍ସନା ବାବଦ୍‌ରେ···

'ସଉନ୍ତୁଣୀ ଭର୍ତ୍ସନା କଥା ନ କହିଲେ ଭଲ । ସେ ବିଷୟରେ ଆମର ଚିନ୍ତା ନାହିଁ ; କିନ୍ତୁ ରାଜ୍ୟବାସୀମାନଙ୍କର ଏପରି ବିଭିନ୍ନ କଳା ପ୍ରତି ଭର୍ତ୍ସନା ଆରମ୍ଭ ହେଲାଣି । ମାନ୍ତ୍ରିକ ସ୍ତ୍ରୀର ସଙ୍ଗୀତ ପ୍ରତି ଭର୍ତ୍ସନା । ସ୍ପୋର୍ଟସ ପ୍ରତି ଆଦର ରଖିଥିବା ସ୍ତ୍ରୀଙ୍କ ଅନ୍ୟ କୌଣସି ବିଷୟରେ କିଛି ଶୁଣିବାକୁ ନାରାଜ । ପ୍ରତ୍ୟେକ ସ୍ତ୍ରୀର ଏହି ବୃତ୍ତି ଯଦି ଏମିତି ବଢ଼ିଲା, ତା'ହେଲେ ସବୁକଳା ଗୁଣକୁ କଳାକାରମାନଙ୍କୁ, ରାଜାଶ୍ରୟ ହେଉଥିବା ଏ ନଗରୀର ମହତ୍ତ୍ୱ ·····

'ମହାରାଜ ଏଭଳି ନିରାଶ ହୁଅନ୍ତୁ ନାହିଁ ।'

ମୋ ଭଳି ରାଜାର ଯଦି ଏ ଅବସ୍ଥା, ତାହାହେଲେ ମନ୍ତ୍ରୀବର ସାମାନ୍ୟ ପ୍ରଜାମାନେ, ଯେଉଁମାନଙ୍କର ଗୋଟିଏ ବୋଲି ସ୍ତ୍ରୀ ଅଛି ତାଙ୍କ ଭିତରେ ଯଦି ବିସମ୍ବାଦ ଘଟୁଥିବ , ସେମାନେ କ'ଣ କରୁଥିବେ ?

ମନ୍ତ୍ରୀ କହିଲେ —ମହାରାଜ ! ଥରେ ଛଦ୍ମ ବେଶରେ ନଗରୀକୁ ବୁଲିବାକୁ ଯାଇ ପ୍ରତ୍ୟକ୍ଷରେ ଦେଖି ଆସନ୍ତୁ ।

× × × × × ×

ମହାରାଜ ଛଦ୍ମବେଶରେ ମନ୍ତ୍ରୀ ଦେଇଥିବା ଠିକଣା ଖୋଜି ଗୋଟିଏ ଘରେ ପହଞ୍ଚିଲେ । ଘଣ୍ଟିର ଶବ୍ଦ ଶୁଣି ଜଣେ ଭଦ୍ରଲୋକ ଆସି କବାଟ ଖୋଲିଲେ ।

ରାଜା ନମସ୍କାର କଲେ । ସେ କିନ୍ତୁ ନମସ୍କାର କଲେନି । ବରଂ ତାଙ୍କ ମୁଖରେ ବିରକ୍ତିର ଭାବ ଦେଖାଗଲା ।

ଅଳକା ଦେବୀ ଅଛନ୍ତି ?

ବାହାରକୁ ଯାଇଛନ୍ତି ।

କେବେ ଫେରିବେ ?

କହି ନାହାନ୍ତି ।

ରାଜା ଠିଆ ହୋଇ ରହିଲେ । ସେ ବି ଚୁପ୍ ହୋଇ ଠିଆହେଲେ । ଭିତରକୁ ଆସନ୍ତୁ, ବସନ୍ତୁ, କିଛି ନାହିଁ । ରାଜା ଯାଉଛନ୍ତି କହିବା ମାତ୍ରେ ଜୋର୍‌ରେ କବାଟକୁ ବନ୍ଦ କରିଦେଲେ ।

ପରଦିନ ମହାରାଜା  ମନ୍ତ୍ରୀଙ୍କୁ ସବୁକଥା କହିଲେ ।

ମହାରାଜ ! ଅଳକା ଦେବୀ 'ଲକ୍ଷ'ରେ ଜଣେ । ସାହିତ୍ୟ ସମ୍ମିଳନୀ ସମୟରେ ଅଧକ୍ଷଙ୍କ ସେବାରେ ରାତକୁ ଦିନ  କରିଥିଲେ ।

ଅଳକା ଦେବୀ ଅନ୍ୟ ସମୟରେ  କ'ଣ କରନ୍ତି ?

ସେ ଏମ୍ ଏ. ପାଶ୍ କରିଛନ୍ତି  । ପି:ଏଚ୍.ଡ଼ି ପାଇଁ ଥେସିସ୍ ଲେଖୁଛନ୍ତି ; କିନ୍ତୁ ଏ ଜନ୍ମରେ ତାଙ୍କ ପି:ଏଚ୍.ଡ଼ି, ହେଲା ଭଳି  ଲାଗୁନାହିଁ । ସ୍ୱାମୀର କୋ  ଅପରେସନ୍ ନାହିଁ । ସାହିତ୍ୟ ସମ୍ମିଳନୀ ପାଇଁ ସେ  ଯେତିକି ପରିଶ୍ରମ କରିଥିଲେ ସେଥିରେ ଖୁସି ହୋଇ ଅଧକ୍ଷ  ମହୋଦୟ ତାଙ୍କର ଭୂୟସୀ  ପ୍ରଶଂସା କରିଥିଲେ ।  ତାଙ୍କୁ ବିଶେଷ ସମ୍ମାନ ଦିଆ ଯାଇଥିଲା । ଅଧକ୍ଷ ମହୋଦୟ ନିଜେ ତାଙ୍କୁ ଫୁଲମାଳ ପିନ୍ଧେଇଥିଲେ ।

ତାଙ୍କ ସ୍ୱାମୀ ତାଙ୍କର ଏ ଗୌରବ  ଦେଖିଛନ୍ତି  ନା ନାହିଁ ।

ସେ  କେବେହେଲେ  ତାଙ୍କର  କୌଣସି  କାର୍ଯ୍ୟକ୍ରମକୁ  ଯାଆନ୍ତି  ନାହିଁ··· ସ୍ତ୍ରୀ ସହ ଏ ସବୁ ଫାର୍ସ କରିବାପାଇଁ ତାଙ୍କର ସମୟ ନାହିଁ ବୋଲି ସେ କହନ୍ତି ।

ତାହାହେଲେ ତାଙ୍କର ଘର ସଂସାର କିପରି ଚାଲିଛି ?

ଉପାୟ ନାହିଁ ମହାରାଜ । ଦୁଇଟି ଜୀବ ଗୋଟିଏ  ଘରେ  କେବଳ  ରହୁଛନ୍ତି । ହୃଦୟ  ସ୍ୱଳିଛି  ବୋଲି  ବଞ୍ଚିଛନ୍ତି  ।  ବାସ୍,  ତା' ସେ ପଟକୁ ସବୁ ଶୂନ୍ୟ । ଏମିତି ଅନେକ ଘର ଏ ନଗରୀରେ ଅଛି ।

ତା'ପରେ   ମହାରାଜ ପ୍ରତି ଦିନ ଛଦ୍ମ   ବେଶରେ ବୁଲିଲେ  । ଅନେକ  ଘର ଦେଖିଲେ  । ଘରେ ଘରେ  ଯେଉଁ ବେସୁରା  ରାଗିଣୀ  ବାଜୁଥିଲା  ସେ  ସବୁ ଦେଖି ତାଙ୍କ ହୃଦୟ ବ୍ୟାକୁଳ ହୋଇ ଉଠିଲା । ଅତି ଦୁଃଖରେ ତାଙ୍କ ମସ୍ତିଷ୍କ ଭ୍ରମ ହେଲା । ସେ ନଗରଛାଡ଼ି ଧୋତା ରାତି ଜଙ୍ଗଲକୁ ପଳେଇଲେ । ସେଠି ଗୋଟିଏ ଗଛମୂଳେ ବସି ଭୋ-ଭୋ-କାନ୍ଦ ପକେଇଲେ । ଏହି ସମୟରେ ଶିବ-ପାର୍ବତୀ ତାଙ୍କ ବିମାନରେ ବସି ଯାଉଥିଲେ । ରାଜାଙ୍କ କ୍ରନ୍ଦନ ଶୁଣି ସେମାନେ  ରାଜାଙ୍କ ପାଖରେ  ଆସି ପହଞ୍ଚିଲେ । ମହାରାଜ  ମୁଣ୍ଡତଳକୁ ପୋତି ବସିଥିଲେ  । ଶିବ ତାଙ୍କ କାନ୍ଧରେ ହାତ ରଖିଲେ । ରାଜା ଉପରକୁ ଚାହିଁ ଦେଖନ୍ତି ତ ସାକ୍ଷାତ  କୈଳାସ ପତି ତାଙ୍କ  ସମ୍ମୁଖରେ ଉଭା ହୋଇଛନ୍ତି ।

ହେ ରାଜନ ! ମୁଁ ଆପଣଙ୍କ ଦୁଃଖର କାରଣ ଜାଣିବା ପାଇଁ ବ୍ୟଗ୍ର ।

ମହାରାଜ ଶିବଙ୍କୁ ଚାହିଁଲେ । ତାଙ୍କ ଦୁଃଖର ସ୍ଥାନ କ୍ରୋଧ ଗ୍ରହଣ କଲା । ପ୍ରତ୍ୟକ୍ଷ ହର୍ତ୍ତା, କର୍ତ୍ତା, ବିଧାତା – ଏହି  ମୁହୂର୍ତ୍ତରେ  ତାଙ୍କ ସମ୍ମୁଖରେ ଉଭା ହୋଇଥିଲେ  । ଜଗତର କଲ୍ୟାଣ ପାଇଁ , ଯିଏ ଦିନେ ବିଷପାନ କରି ନିଜର କଣ୍ଠକୁ ନୀଳ କରିଥିଲେ

ସେହି ନୀଳକଣ୍ଠ ତାଙ୍କ ସମ୍ମୁଖରେ ଉପସ୍ଥିତ ଥିଲେ । ଏହି ବସ୍ତୁର ରାଜାଙ୍କ ମନକୁ ଆସୁଥିଲା । ସେହି ସମୟରେ ଛଦ୍ମ ବେଶରେ ବୁଲି ଦେଖିଥିବା ସଂସାରର ଚିତ୍ର-ଗୁଡ଼ିକ ତାଙ୍କ ଆଖି ଆଗରେ ନାଚ ଉଠିଲା । ତାଙ୍କୁ ଲାଗିଲା ଶିବ ସବୁ ବିଷୟରେ ପିଇ ମଧ୍ୟ ଯାହା ଠିକେ ବଳିଥିଲା ସେ ସବୁ ଏହି ଦରମାନଙ୍କରେ ବାଣ୍ଟିଛନ୍ତି । ତେଣୁ ଠିକେ ରାଗି ଯାଇ କହିଲେ—

ପ୍ରଭୁ ! ମୋ ଦୁଃଖର କାରଣ ଆପଣ ସ୍ୱୟଂ ।

ସ୍ୱୟଂ ସୃଷ୍ଟି କରୁଥିବା ଦୁଃଖପାଇଁ ଭଗବାନଙ୍କୁ ଦାୟୀ କରାଯାଏ, ଏ ତ ନୂଆ କଥା ହେଲାଣି ।

ରାଜା ଉଠି ଚାଲିବାକୁ ଲାଗିଲେ ।

ରାଜନ ! ଆପଣ କୁଆଡ଼େ ଯାଉଛନ୍ତି ?

ସଙ୍କଟରୁ ନିବାରଣ କରୁଥିବା ଶିବ ଶକ୍ତି ଯଦି ମଣିଷ ମୁଣ୍ଡରେ ଦୋଷ ଲଦି ଦେଉଛନ୍ତି, ତାହାହେଲେ ଆପଣଙ୍କ ପାଦତଳେ ଆମେ କାହିଁକି ଆଶ୍ରୟ ନେବୁ ? ଆମ କର୍ମ ଭୋଗ ଆମେ ନିଜେ ଭୋଗିବୁ ।

ରୁହନ୍ତୁ, କ'ଣ ସବୁ ଘଟିଛି କୁହନ୍ତୁ । ଯାହା ଦରକାର ମାଗନ୍ତୁ ।

ହେ କୈଳାସପତି ! ମୁଁ ମୋ ପାଇଁ କିଛି ମାଗୁନି । ରାଜ୍ୟର ରାଜାଙ୍କୁ ସମସ୍ତେ ଦେବରୂପୀ ମନେ କରନ୍ତି ···ମୁଁ ଯାହା ଚାହୁଁଛି ସେସବୁ, ମୋ ହସ୍ତରେ କମେଇବ, ପ୍ରଜାଙ୍କର ଦୁଃଖ ଦେଖି ମୋର କୋହ ଉଠୁଛି ।

ରାଜା ହୋଇ ତାଙ୍କ ଦୁଃଖ ଦୂର କରିବା ପାଇଁ ଆପଣ ସମର୍ଥ ନୁହନ୍ତି କି ?

ଅପଣ ମଝିରେ ପଡ଼ିଲେ ବୋଲି, ନ ହେଲେ ତାହା ମଧ୍ୟ କରିଥା'ନ୍ତି ।

ମୁଁ ମଝିରେ ପଡ଼ିଲି ?

ସ୍ୱାମୀ ସ୍ତ୍ରୀଙ୍କର ଯୋଡ଼ି କିଏ ଠିକ୍ କରୁଛି ?

ସେ ବିଭାଗ ମୋର ନୁହେଁ ।

ତାହା ହେଲେ କାହାର ?

ବିଷ୍ଣୁ ସେ କଥା ବୁଝନ୍ତି । ତାଙ୍କୁ ସମୟ ନଥିଲେ ବ୍ରହ୍ମା ଅଛନ୍ତି ।

ଯୋଡ଼ି ବନେଇବା ପରେ ତାଙ୍କର କ'ଣ ହୁଏ ସେସବୁ ଆପଣ ମାନେ ଦେଖନ୍ତି ନାହିଁ ।

ଶିବ' ଚୁପ୍ ହୋଇଗଲେ ।

ଆପଣମାନଙ୍କ ଅପେକ୍ଷା ଆମେ ମଣିଷମାନେ ଭଲ । ଘଡ଼ିଏ ବନ୍ଦି ହୋଇ ବର୍ଷେ ଠିକ୍ ଗୁଲୁଛୁ କି ନାହିଁ ସେ କଥା ଆମେ ଦେଖୁ । ସେମିତି ଗ୍ୟାରେଣ୍ଟି ଥାଏ, ଆପଣ ଜଣେ ମଣିଷ ସହିତ ଆଉ ଜଣେ ମଣିଷର ଯୋଡ଼ି ବନେଇ ଛାଡ଼ି ଦେଉଛନ୍ତି, ତା'ପରେ ତାଙ୍କର କ'ଣ ହେଉଛି ସେ କଥା ଦେଖୁନାହାନ୍ତି ।

ସେଥି ପାଇଁ ତ ମଝିରେ ମଝିରେ ମୁଁ ଏମିତି······

ବିମାନରେ ବସି ଦେଖନ୍ତି ତ ?

ମାନେ ଆମ ପଡ଼ୋଶୀ ଦେଶର ମନ୍ତ୍ରୀମାନଙ୍କ ଭଳି । ବନ୍ୟା ପ୍ରପିଡ଼ିତ ଅଞ୍ଚଳକୁ ମନ୍ତ୍ରୀମାନେ ଏମିତି ଉପରୁ ଉଡ଼ି ଉଡ଼ି ଦେଖନ୍ତି । କିନ୍ତୁ ପ୍ରକୃତ ସମାଜ ସେବୀମାନେ, ମାନବିକତାର ପୂଜାରୀମାନେ ଘରେ ଘରେ ବୁଲି ଲୋକଙ୍କ ସେବା କରନ୍ତି । ଦୁଃଖିଜନଙ୍କ ଆଖିରୁ ଲୁହ ପୋଛନ୍ତି ।

ହେ ରାଜନ ! ଆପଣ ଏତେଟିକେ ସାମ୍ରାଜ୍ୟର ସ୍ୱାମୀ ଆପଣଙ୍କୁ ପ୍ରଜାମାନଙ୍କର ପରିସ୍ଥିତି ବୁଝିବାକୁ ଏତେ ଦିନ ଲାଗିଲା । ମତେ ତ୍ରିଭୁବନ ସମ୍ଭାଳିବାକୁ ପଡ଼ୁଛି । ସ୍ୱର୍ଗ, ମର୍ତ୍ତ୍ୟ ପାତାଳ, ତାହା ଛଡ଼ା ଗନ୍ଧର୍ବ, ଯକ୍ଷ, କିନ୍ନର ଏମାନଙ୍କ ସଂସାର କଥା ବୁଝିବାକୁ ପଡ଼ୁଛି ।

ରାଜା କହିଲେ—ଦେବ ଦେବତାଙ୍କ ସବୁ ସୁରୁଖୁରୁରେ ଗ୍ଲୁଛି ।

ଏମିତି ଏ ମର୍ତ୍ତ୍ୟର ମାନବ ମାନେ ଭାବୁଛନ୍ତି । କେବଳ କୃଷ୍ଣଙ୍କର ଷୋଳ ସହସ୍ର ସ୍ତ୍ରୀ । ଦେଖିଲାବାଲା କେବଳ ସ୍ତ୍ରୀଙ୍କୁ ଦେଖେ । ତାଙ୍କୁ ସମ୍ଭାଳିବା କେତେ କଷ୍ଟ କର ବ୍ୟାପାର ତାହା କେବଳ ଭୁକ୍ତ ଭୋଗି ହିଁ ଜାଣେ । କାରଣ ଏ ସବୁ ଉପଲକ୍ଷେଗରୁ ସବୁ ଯାଇ ଶେଷକୁ କେବଳ ଭୋଗିବା ରହିଯାଏ । ମାସର ଦଶ ଦଶ ଦିନ କେବଳ କୃଷ୍ଣଙ୍କ ଘରର କଜିଆ ଛିଣ୍ଡାଇବାରେ ଯାଉଛି । ତେଣୁ ସେସବୁ କଥା ଛାଡ଼ନ୍ତୁ । ଆପଣ ଆଜି ଏତେ ଶୋକ ମଗ୍ନ କାହିଁକି ସେହି କଥା କୁହନ୍ତୁ ।

ମୋର ପ୍ରଜାଙ୍କ ଭିତରୁ ଜଣେ । ବ୍ୟାଙ୍କରେ ଗ୍ୱକିରି କରୁଛି । ଟିକେ ରାଗି, ମୁହେଁ ମୁହେଁ ଜବାବ ଦିଏ । କିନ୍ତୁ ମନ ନିର୍ମଳ । ସଙ୍ଗୀତରେ ମଧ୍ୟ ରୁଚି ରଖେ । ଖୁସି ମନରେ ହାରମୋନିୟମ ବଜେଇବା ଆରମ୍ଭ କଲେ ତା' ସ୍ତ୍ରୀ ଖାଲି କରାସିନି ତବା ଆଣି ପିଟେ ।

ସେଥି ପାଇଁ ଏତେ ଶୋକ ମଗ୍ନ ?

ଏ ତ ବର୍ତ୍ତମାନର କଥା; କିନ୍ତୁ ଏ ସବୁ ମାସଯାକର ଶୋକ ପ୍ରଭୁ ! ମଣିଷ ମାନେ ଗଲେ ଅଇଲେ ଅଶ୍ରୁ ଢାଳନ୍ତି ନାହିଁ । କୌଣସି ଏକ ଦୁଃଖର ମୁହୂର୍ତ୍ତରେ ଯେପରି ପାଣିଭରି ବେଲୁନ ପାଇଁ 'ଛୁଞ୍ଚିର' ମୁନଟି ଯଥେଷ୍ଟ, ସେଭଳି ଅବସ୍ଥା ହୁଏ ।

ମନ ମାଣ ହଜାର ବୃନ୍ଦା ଅଶ୍ରୁ ପିଇଲେ ବୃନ୍ଦାଏ ଅଶ୍ରୁ ବାହାରକୁ ଝରେ । କୈଳାସପତି ! ଯେତେବେଳେ ଜଣେ ଲୋକ କାନ୍ଦେ, ସେତେବେଳେ ଝରୁଥିବା ଅଶ୍ରୁଗୁଡ଼ିକ କେବଳ ତା'ର ନ ଥାନ୍ତି । ତା' ଆଖିରୁ ତା' ଭଲ ଭକ୍ତ-ଲୋକମାନେ ନିଜର ଅଶ୍ରୁପାତ କରନ୍ତି । ଏଥି ପାଇଁ ଯାନ୍ତ୍ରଣାର ପ୍ରତ୍ୟେକ କ୍ଷଣରେ ତା'ର କୋହ ବଢ଼ିଉଠେ ।

ଶିବ କହିଲେ—'ରାଜନ ! ତୁମର ଏ ବର୍ଣ୍ଣର ଧାରରେ ମୁଁ ଅତ୍ୟନ୍ତ ପ୍ରୀତ । ଯାହା ବର ମାଗୁଛ ମାଗ ।

ହଠାତ୍ ଧାଙ୍ଗଡ଼ା କହିଲେ—

'ପ୍ରଭୁ' ! ବର ଦେବା ପୂର୍ବରୁ ରାଜାଙ୍କୁ ସର୍ତ୍ତିଟି କହି ଦଅନ୍ତୁ । ବର ପାଇ କର୍ମ ସମାପ୍ତି ପରେ ବରଟି କୈଳାସ ପ୍ରତିଷ୍ଠାନକୁ ଫେରାଇବାକୁ ହେବ । ରାଜାଧି-ରାଜ ଆପଣ କିଛୁ ଭାବିବେ ନାହିଁ, ମୋ ପ୍ରଭୁ ସତରେ ଭୋଳାନାଥ, ତେଣୁ ତାଙ୍କୁ ଏମିତ ସମ୍ଭାଳିବାକୁ ପଡ଼େ, ଲୋକେ ମୋତେ ଭୁଲ୍ ବୁଝନ୍ତି ।

ରାଜା କହିଲେ—

ପ୍ରତ୍ୟେକ କଳାକାର, ପ୍ରତିଭାବାନ୍ ପୁରୁଷକୁ ପ୍ରସଙ୍ଗାନୁସାରେ ନିଜ ମୁଣ୍ଡକୁ ଦୋଷନେଇ ସମ୍ଭାଳି ପାରିଲାଭଳି ଜଣେ ସୁଦକ୍ଷା ଗୃହିଣୀର ଆବଶ୍ୟକତା ଥାଏ । ହେ ଜଗତଜନନୀ ମୋ ରାଜ୍ୟରେ ଏଭଳି ଅନେକ ଗୁଣୀଜନ ଅଛନ୍ତି, କିନ୍ତୁ ଜଣେ ଅଧେ ପୁରୁଷୋତ୍ତମଙ୍କୁ ଏଭଳି ସଙ୍ଗୀ ମିଳିଛନ୍ତି, କୈଳାସ ପତିଙ୍କ ପ୍ରତି ଏଥି ପାଇଁ ଆମ୍ଭ ମନରେ ଈର୍ଷା ଜାତହୁଏ ।

ଶିବ କହିଲେ···'ଭଦ୍ରେ ପ୍ରତ୍ୟେକ ବ୍ୟକ୍ତି, ପ୍ରତ୍ୟେକ ମନୁଷ୍ୟ ପ୍ରାଣୀ ମୋ ସରଳ ସ୍ୱଭାବର ଦୁରୁପଯୋଗ କରିବା ପାଇଁ ଛକି ବସିଛନ୍ତି ବୋଲି ଭାବିବା ଠିକ୍ ହେବନି । ରାଜନ ଆପଣ ମଧ୍ୟ ରାଜ୍ୟକର୍ତ୍ତା । ସମସ୍ତ ପ୍ରଜାଜନ କ'ଣ ସମାନ ?'

'ପ୍ରଭୁ' ସବୁ ଦେଖି ସାରି କହିବାଟା ଭଲ । ଜଗତ ଜନନୀଙ୍କ କଥା ମୋ ମନକୁ ପାଇଲା, ମୋର ବର ଦରକାର ନାହିଁ, ମୋର ଶଙ୍କିତ ମନର ସମାଧାନ କରନ୍ତୁ ।'

'ପରୀକ୍ଷା କରନ୍ତୁ', —

'ନିଜ ପାଇଁ ଅନୁରୂପ ବ୍ୟକ୍ତିଟିଏ ମିଳିଲା । ତାହା ହେଲେ ପରସ୍ପର ପ୍ରତି ଅନୁରକ୍ତ ହୋଇ ରହିଲେ ଭଲ ଯୋଡ଼ି ଆପଣ କାହିଁକି ନିର୍ମାଣ କଲେ ନାହିଁ, ଆପଣଙ୍କର କ'ଣ ଅସୁବିଧା, ଏହି କଥା ମୋ ଭଳି ପାମର ବୁଝି ପାରୁନି, ତେଣୁ ଏ ସବୁ ପଛରେ ଆପଣଙ୍କର 'ହେତୁଟା' କ'ଣ ଜାଣିଲେ·····'

ଶିବ କହିଲେ—ଏପରି ହେଉଛି ନିଶ୍ଚିତ—କିନ୍ତୁ ଆମେ ମଧ୍ୟ ନିରୁପାୟ । 'ମୋର ଏ କଥାରେ ବିଶ୍ୱାସ ଅସୁନି ।'

'ନିଶ୍ଚିତ···ଏକ ମସ୍ତବଡ଼ ଭୁଲ୍ କରି ବସିଛି'

କୁହନ୍ତୁ ।

'ମଣିଷ ଶିକ୍ଷା ସଂସ୍କାର ଓ ଦେଖିକୁ ନିଜ ବ୍ୟକ୍ତିତ୍ୱ ଓ ଭବିଷ୍ୟତ ତୋଳିବାରେ ଯେଉଁ ସମସ୍ତ ଅତିବାହିତ କରେ ସେହି ସମସ୍ତରେ ସେ ପ୍ରେମରେ ମଧ୍ୟ ପଡ଼େ'

'ଠିକ୍ କହୁଛନ୍ତି'

'ଏଇଠି ନିଶ୍ଚିତ ଭୁଲ୍ କରି ବସିଛି ।'

'ମାନେ' ?

ଅର୍ଥାତ୍ ଶିକ୍ଷା ମାନେ କ'ଣ ? ଘୋଷି ମୁଖସ୍ଥ କରି ମନେ ରଖିଥିବା ପାଠ ଯିଏ ବେଶୀ ମୁଖସ୍ଥ କଲା ସେ ବୁଦ୍ଧିମାନ, ଯିଏ ନ କଲା ସେ ପଛରେ ପଡ଼ି ରହିଲା । ସେଥିପାଇଁ ଶିକ୍ଷାର ସମାପ୍ତି ପରେ ମଣିଷ ବହୁତ କିଛି ଭୁଲି ଯାଇଥାଏ, କିନ୍ତୁ ନିତ୍ୟ ବ୍ୟବହାରରେ ସେ ଯେଉଁ ଶିକ୍ଷା ପାଇଥାଏ ।'

ପ୍ରଭୁ—ସବୁକିଛି ଅବୋଧ ଲାଗୁଛି ।,

ରାଜନ ! ସ୍କୁଲରେ ସଂସାରର ଶିକ୍ଷା ଦିଆ ହୁଏ, କିନ୍ତୁ ମଣିଷ ମଣିଷ ମଧ୍ୟରେ ଯେଉଁ ସମ୍ପର୍କ ତାହା ଏ ଦୁନିଆ ଶିଖାଏ, ତାକୁ ହିଁ ଦୁନିଆ ଶାସ୍ତ୍ର କହନ୍ତି, ପଣିକିଆ ମୁଖସ୍ଥ କରିବା ଓ ଗଣିତ ବିଷୟରେ ଜାଣିବା ଅଲଗା କଥା । ସ୍ୱର ଶାସ୍ତ୍ରରେ ପାରଂଗତ ହେବା ଅର୍ଥ ନୁହେଁ ଯେ ଜଣେ ମଣିଷ ମନକୁ ଚିହ୍ନି ଶିଖିଛି, ସ୍ୱରର ସଂଖ୍ୟା ଜାଣିଛି ବୋଲି ଜଣେ ସଙ୍ଗୀତଜ୍ଞ ହୋଇ ପାରେନା, ବାହ୍ୟ ସୌନ୍ଦର୍ଯ୍ୟ ଶିକ୍ଷାଗତ ଯୋଗ୍ୟତା ଓ ଐଶ୍ୱର୍ଯ୍ୟ ଦେଖି ପ୍ରତିଯାଦ ଦେଲ ଭଳି ଗୋଟିଏ ଶରୀର ଆମେ ଖୋଜୁ, କିନ୍ତୁ ତା'ର ଅନ୍ତରମ ପରିଚୟ ? ଗୁରିଟଙ୍କାର ନଡ଼ିଆ, ପାଞ୍ଚ ଟଙ୍କାର ପେଡ଼ା ଟଙ୍କି କିଆ ଫୁଲହାର ଓ ଚପଲ ଜଗୁଥିବା ଲୋକକୁ ଗୁରିଅଣା ଦେଇ ଆମେ ମନ୍ଦିର ପର୍ଯ୍ୟନ୍ତ ଯାଇପାରୁ ମାତ୍ର ଠାକୁରଙ୍କ ପର୍ଯ୍ୟନ୍ତ ପହଞ୍ଚି ପାରୁ କି ?

'ପ୍ରଭୁ' ମୁଁ ଭସ୍ମୀଭୂତ ହେଲିଣି ।

'ନିଶ୍ଚୟ ଭସ୍ମ ଲାଗିବ, କାରଣ ସଂସାରଗୁଡ଼ିକ ଏମିତି ଗୁଲେ, ଯେତେବେଳେ ମନ କଥା ବୁଝେ, ସଂଗୀତ ପ୍ରତି ଆକର୍ଷଣ ଲାଗେ, ମଣିଷ ପାଇଁ ମଣିଷ ଛଟପଟ ହୁଏ; ଠାକୁରଙ୍କୁ ପାଇବା ପାଇଁ ହୃଦୟ ବ୍ୟାକୁଳ ହୁଏ, ସେତେବେଳେ ମନ କ'ଣ ଗୁହେଁ ଖାଲି ଜାଣି ହୁଏ, କିନ୍ତୁ ସେତେବେଳକୁ ସଂସାର ଫାଟି ଯାଇଥାଏ ।'

'ଉପାସ୍ୱ କୁହନ୍ତୁ ପ୍ରଭୁ ।'

'ଉପାସ୍ୱ ନାହିଁ, ଏ ସବୁ ଏମିତି ଗୁଲବ, କାଳକ୍ରମେ ସମ ସଂବେଦନା ଓ ସମାନତା ଥିବା ମଣିଷ ପରସ୍ପରକୁ ଭେଟିବେ ଓ ପ୍ରକୃତ ତା'ର ଅପୂର୍ଣ୍ଣ ଚନ୍ଦ୍ରାକାର ଗଡ଼କୁ ପୂର୍ଣ୍ଣ କରିବ, ସମୃଦ୍ଧ ହେବ ।'

'ସମସ୍ତେ କ'ଣ ଏ ଚନ୍ଦ୍ରକୁ ପୂର୍ଣ୍ଣ କରିବାକୁ କ୍ଷମତା ରଖିଛନ୍ତି ? ସେମାନେ କ'ଣ କରିବେ ?

'ନିଜର ଶ୍ରେଷ୍ଠତ୍ୱ ସିଦ୍ଧ କରିବାକୁ ହେବ । ନହେଲେ .....'

'ପ୍ରଭୁ !'

'ଶ୍ରେଷ୍ଠତ୍ୱ ସିଦ୍ଧ ନ କରିଥିଲେ ଆପଣ କ'ଣ ଷୋଳଟି ବିବାହ କରି ପାରିଥା'ନ୍ତେ ?'

'ପ୍ରଭୁ ମୁଁ ତ ରାଜା, ମୋ... ..'

'ଭୁଲ ଧାରଣା, ଜନତା ଦେଶର ସିଂହାସନରେ କିଏ ବସିଛି ତାକୁ ମହତ୍ତ୍ୱ ଦିଏ ନାହିଁ, ତାଙ୍କ ହୃଦୟସ୍ଥ ସିଂହାସନରେ ଯିଏ ବିରାଜମାନ ସେହି ତାଙ୍କ ରାଜା । ତା' ପାଇଁ ସବୁ କିଛି ମାଫ୍ ।'

'କିଂରୁ ପରର ଆପଣାର ଲୋକ ଯେତେବେଳେ ଫାଡ଼ ଖାଇବାକୁ ଗୋଡ଼ାନ୍ତି ସେତେବେଳେ କ'ଣ କରାଯିବ ?'

'ବନ୍ଧୁତା ପଦ ମର୍ଯ୍ୟାଦା ଭିତରେ ରୁହେ ।'

'ଅର୍ଥାତ୍ ।'

ରାଜାଙ୍କ ପ୍ରଶ୍ନ ଶୁଣି ଶିବ ଶମ୍ଭୁଙ୍କ ହାତ ନିଜ ହାତରେ ଟେକି ଧରିଲେ ।

ପାର୍ବତୀ ଲଜ୍ଜାରେ ନତ ମସ୍ତକ ହେଲେ ।

ରାଜା କହିଲେ......

'ପ୍ରଭୁ ! ଆପଣ ମଧ୍ୟ ସ୍ପର୍ଶ ସୁଖରୁ ବଞ୍ଚିତ ନୁହଁନ୍ତି । ଏହାର ରହସ୍ୟ କୁହନ୍ତୁ ।

ଶିବ ଧୀର ଗମ୍ଭୀର ହୋଇଗଲେ । ଗଳାର ସର୍ପଗୁଡ଼ିକ ସ୍ଥିର ହୋଇଗଲେ । ଜଟାରେ ଥିବା ଚନ୍ଦ୍ର ଜ୍ୟୋତି ସ୍ଥିର ହୋଇଗଲା । ଗମ୍ଭୀର ସ୍ୱରରେ ସେ କହିଲେ—

'ହେ ଭୁପତ ·····ସ୍ପର୍ଶ ସୁଖର ଭାବନା ମଣିଷର ମୂଳ ଗରଜରୁ ଗୋଟିଏ । କେବଳ ମଣିଷ କାହିଁକ ଜୀବ ସୃଷ୍ଟିରେ ସମସ୍ତ ଜନ୍ତୁ ଅପେକ୍ଷା ଏହାର ମହତ୍ୱ ବେଶୀ । ଝର ଝର ବହି ବହି ଯାଉଥିବା ଝରଣାକୁ ଦେଖିଲେ ସେଥିରେ ଗୋଡ଼-ପୁରେଇ ବସିବାକୁ ଇଚ୍ଛା ହୁଏ । ପିଲଟିକୁ ଦେଖିଲେ କୋଳେଇ ନେବାକୁ ଇଚ୍ଛା ହୁଏ, ବଗ୍ଡ଼ଟିଏ ଗୋଡ଼ରେ ଘଷି ହୋଇଗଲେ ଭଲ ଲାଗେ । ସୁନ୍ଦର ଲନ୍ଟିଏ ଦେଖିଲେ ସେଥିରେ ଗଡ଼ିବାକୁ ଇଚ୍ଛା ହୁଏ । ମନ୍ଦିରରେ ଠାକୁରଙ୍କ ପାଦରେ ମୁଣ୍ଡ ରଖିଲେ ପରମ ସନ୍ତୋଷ ଲଭ ହୁଏ । ତେଣୁ ବଡ଼ ବଡ଼ ସିଦ୍ଧ ପୁରୁଷଙ୍କ ଦର୍ଶନ ଅପେକ୍ଷା ସ୍ପର୍ଶ ଦର୍ଶନର ମହତ୍ତ୍ୱ ବେଶୀ ।

'କାହିଁକି ?'

ଜୀବ ସୃଷ୍ଟିର ଅସ୍ତିତ୍ୱ ସହ ସ୍ପର୍ଶ ଜନ୍ମ ନେଲା । ସଦ୍ୟଜାତ ଶିଶୁର କ୍ରନ୍ଦନ ମା'ର ସ୍ପର୍ଶ ପାଇ ଶାନ୍ତ ହୁଏ । ହସିବା ପାଇଁ ଭାଷାର ଜରୁରୀ ନାହିଁ, ସେହିଭଳି ସ୍ପର୍ଶର ମଧ୍ୟ ଭାଷା ନାହିଁ । ସ୍ପର୍ଶ ହିଁ ଭାଷା । ପ୍ରଥମେ ସ୍ପର୍ଶର ଜନ୍ମ, ତା'ପରେ ଭାଷାର, ତେଣୁ ସ୍ପର୍ଶଠୁ ବଳି ଉତ୍କୃଷ୍ଟ କିଛୁ ନାହିଁ ।'

ରାଜାଙ୍କ ମନ ଅଜଣା ଆନନ୍ଦରେ ବଶୀଭୂତ ହେଉଥାଏ ।

'ରାଜନ୍ । ଆମକୁ ବିଦାୟ ଦିଅନ୍ତୁ ।'

'ଉପାୟ କହି ଯାଆନ୍ତୁ ପ୍ରଭୁ ।

ସଂସାରରେ ପରସ୍ପର ପ୍ରତି ଅନୁରକ୍ତ ନଥିବା ଦମ୍ପତ୍ତିମାନଙ୍କ ପାଇଁ ? ·· ··'
'ତାଙ୍କ ପାଇଁ କୌଣସି ଉପାୟ ନାହିଁ, ଯାହା ଅଛି ସେ ବାଟଟି ଅଡ଼ୁଆ ।' ତାର ମଧ୍ୟ ଗୋଟିଏ ମୂଲ୍ୟ ଅଛି, ତେଣୁ ମୂଲ୍ୟ ଦେବାପାଇଁ ପ୍ରସ୍ତୁତ ହେବା ଦରକାର । ନ ହେଲେ ···।'

'ଉତ୍ତର ଜଣା ଅଛି ··ମନ ମାରିବାକୁ ହେବ ।'

ଶିବ ମୁରୁକି ହସିଲେ ।

ରାଜା କହିଲେ—କୈଳାସ ପତିଙ୍କୁ ପୃଥିବୀକୁ ଆସିବାର କଷ୍ଟ ନକଲେ ଚଳିବ । ଯିଏ ଯେତେ ଆକ୍ରୋଶକଲେ ମଧ୍ୟ କିଛି ନଶୁଣିଲା ପରି ଚୁଲିଯିବା ଭଲ ।

ଶଙ୍କର ପାର୍ବତୀ ବିମାନରେ ବସି ଯିବାକୁ ବାହାରିବା ପୂର୍ବରୁ ରାଜା ଫିଟି ବୁଲେଇ ଯିବାକୁ ଆରମ୍ଭ କଲେ ।

'ରାଜନ୍ । ପ୍ରଶ୍ନର ଉତ୍ତର ଶୁଣି ଯାଆନ୍ତୁ ।

ରାଜା ରହିଗଲେ ।

'ଗୋଟିଏ ଦମ୍ପତ୍ତିଙ୍କର ଗୁଣଟି ପିଲା ଅଛନ୍ତି । ଗୋଟିଏ ପିଲା କମ ବୁଦ୍ଧିଆ ବା ଦୁର୍ବଳ, ତା'ହେଲେ ବାପା ମାଙ୍କର କେଉଁ ପିଲା ପ୍ରତି ଅଧିକ ସ୍ନେହ ରହିବ ?'

'ନିଶ୍ଚୟ ଦୁର୍ବଳ ପ୍ରତି !'

'ସେହି କଥା ଭଗବାନଙ୍କର । ଆମେ ମଧ୍ୟ ଦୁର୍ବଳ ପ୍ରାଣୀଙ୍କୁ ପ୍ରେମ କରୁ । ସେଥିପାଇଁ ସମସ୍ତଙ୍କର ନାଆଟିକୁ ଘାଟ ପାର କରିବା ପାଇଁ ଆମେ ଜାଣିଲ ପୁରୁଷଙ୍କ ବେକରେ 'ଅବଳା ନାରୀକୁ ବାନ୍ଧ' । ଗୁଡ଼ ପଥର ପଣ ପୁରୁଷଙ୍କୁ ସବଳା ନାରୀ କାନରେ ବାନ୍ଧ । ଦୁଇଟି ପ୍ରତିଭାବାନ ବ୍ୟକ୍ତିଙ୍କର କେବେ ପଡ଼େ ନାହିଁ ଓ ଦୁଇଜଣ ମୂର୍ଖଙ୍କ ସଂସାର କେବେ ଚଳେ ନାହିଁ ।

'ତା'ମାନେ ସମର୍ଥଶାଳୀ ପୁରୁଷ ସବୁଦିନ ପାଇଁ .....।

ଯେ ତାର ଚକ୍ରାକାର ଗତିକୁ କେଉଁଠି ନା କେଉଁଠି ନିଶ୍ଚୟ ପୂର୍ଣ୍ଣ କରେ ।

ବସିଥିବା ସ୍ଥିତି ରାଜା ଛଟପଟ ହୋଇ ବସେଇଲେ । ଶିବଙ୍କ ପାଖରେ ଉପାୟ ନଥିଲା । ନଥିବ ମଧ୍ୟ । କାରଣ ଏଭଳି ସ୍ୱରସ୍ଥାନ ଦମ୍ପତ୍ତିଙ୍କୁ ଏକାଠି ରଖିବା ତାଙ୍କର ଯୋଜନା ଥିଲା ।

ସକାଳେ ମନ୍ତ୍ରୀ ଦେଖାକରିବାକୁ ଆସିବା ମାତ୍ରେ ମହାରାଜା କହିଲେ, 'ମହାମନ୍ତ୍ରୀ—ଏସବୁ ଏମିତି ଗୁଳବ ।' କହି ଗତ ରାତିର ସମସ୍ତ ବୃତ୍ତାନ୍ତ ବର୍ଣ୍ଣନା କଲେ ।

ଏହି ସମୟରେ ରାଜାଙ୍କର ଶରୀର ରକ୍ଷକ ଓ ତଦନ୍ତ ଦଳର ସେନାଧ୍ୟକ୍ଷମାନେ ରାଜାଙ୍କ ଭେଟି ପାଇଁ ଆସି ପହଞ୍ଚିଲେ ।

'ମହାରାଜ । ଏତେ ଦିନକେ ଚୋର ଧରାପଡ଼ିଲା ।'

'କେଉଁ ଚୋର ।'

'ଗତ ଅନେକ ବର୍ଷ ହେଲା ଆମର ଯେଉଁ ଶବ ବହନ ହେଲିକାପ୍ଟରଟି ଥିଲା ସେହି ହେଲିକାପ୍ଟର'—

'ତା'ର କ'ଣ ହେଲା ।'

'ରାତିରେ ଚୋରି ହୋଇ ଯାଉଥିଲା, ସକାଳେ ପୁଣି ଯଥା ସ୍ଥାନରେ ଆସି ରହୁଥିଲା ।'

'କ'ଣ ଏସବୁ କହୁଛନ୍ତି' — ମହାରାଜ ଗର୍ଜି ଉଠିଲେ ।

'ମହାରାଜ । ରାଗନ୍ତୁ ନାହିଁ ।'

'ଗରିବ ନାହିଁ ? ମୋ ରାଜ୍ୟରେ ଏଭଳି ଚୋରି ହେଉଛି , ଅଥଚ କହୁଛ ଗରିବ ନାହିଁ ?

'ମହାରାଜ । ଆଜି ପ୍ରମାଣ ମିଳିଯାଇଛି ।'

'କେବଳ ପ୍ରମାଣ ? ମାନେ ଚୋର ଖସିଯାଇଛି ।'

'ସେ ମଧ୍ୟ ଧରା ପଡ଼ିବ ।'

'କ'ଣ ସବୁ ପ୍ରମାଣ ପାଇଛ, ଦେଖେ ?'

'ରାଜାଙ୍କର ଶରୀର ରକ୍ଷକମାନେ ତାଙ୍କ ସମ୍ମୁଖରେ କମଣ୍ଡଳୁ, ହରିଣର ଚମଡ଼ା, ରୁଦ୍ରାକ୍ଷର ମାଳା, ମୁଣ୍ଡର ଜଟା, ଡମରୁ, ଚନ୍ଦ୍ରର ପ୍ରତିମା ଓ ଦୁଇଟା ସାପର ପେଡ଼ି ଆଣି ରଖିଲେ ।

'ରାଜା ସମସ୍ତଙ୍କୁ ବିଦାୟ ଦେଇ ମନ୍ତ୍ରୀଙ୍କୁ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁ ପଚାରିଲେ ।

'ମହାମନ୍ତ୍ରୀ ତମେ ?'

'ହଁ ମହାରାଜ ଶିବଙ୍କ ବେଶରେ ମୁଁ ଥିଲି ।'

'କାଂରୁ ଏସବୁ ଡ୍ରାମା କାହିଁକି ?'

'ଜନତା ପାଇଁ ।'

'ଏ ସବୁ କେତେଦିନ ହେଲା ଚାଲିଛି ?'

'କାଲି ହିଁ ବାରବର୍ଷ ପୂର୍ଣ୍ଣ ହେଲା, ବାରବର୍ଷରେ ଧନେ ହେଲେ ଏସବୁ ବନ୍ଦ ହୋଇନାହିଁ ।'

'କେହି ନ କହି ମଧ୍ୟ ଦୀର୍ଘ ବାରବର୍ଷ ଆପଣ ଏ କାର୍ଯ୍ୟ କରି ଚାଲିଛନ୍ତି ।'

'ହଁ ମହାରାଜ '।

'ଜନ୍ମାଚଳରେ କିଛି ମଧ୍ୟ ଲୋକମାନେ ଏଭଳି ସୋସିଆଲ୍ କାମ କରୁ ନାହାନ୍ତି ।'

'ମହାରାଜ୍ ଭୋଟେଡ୍, ଓ ଡଭୋଟେଡ୍' ମଣିଷଙ୍କ ଭିତରେ ଏହି ତ ଫରକ ଥାଏ ।'

'ମନ୍ତ୍ରୀବର ଆପଣଙ୍କୁ କ ଭେଟି ଦେବ ?'

'ମହାରାଜ୍ । ଯିଏ ନେଶନ୍ ପାଇଁ କାମ କରୁଛନ୍ତି ସେ 'ଡୋନେଶନ୍'କୁ ଦେଖେ ନାହିଁ ।'

'ମନ୍ତ୍ରୀବର ଆଜି ଜବରଦସ୍ତ ଶବ୍ଦ ପ୍ରୟୋଗ କରି ଗୁଳିଛନ୍ତି କଥା କ'ଣ ?'

'କାଲି ପଡ଼ିଆରେ ଆପଣଙ୍କ ସଙ୍ଗ ଲାଭର ଏ ପରିଣତି ।'

ରାଜାଙ୍କୁ ଭଲ ଲାଗିଲା, କିନ୍ତୁ ମନ୍ତ୍ରୀ ତାଙ୍କୁ ହାତେ ହାତେ ଠକେଇ ଥିବାରୁ ରାଗିଗଲେ ଓ ଟିକେ ଚଢ଼ାଗଳାରେ କହିଲେ ।

'ମନ୍ତ୍ରୀଜୀ ! ଆପଣଙ୍କୁ ଏସବୁ କରିବାକୁ କିଏ କହିଥିଲା ।'

ମହାରାଜ୍ ସଂସାରରେ ଦହଗଞ୍ଜ ହେଉଥିବା ଏ ମଣିଷ କେଉଁଠି ନା କେଉଁଠି ଟିକେ ଆଶ୍ରା ଖୋଜେ, ଦପଦା ଭଲ କଥା କହି ବୁଝେଇବା ଭଳି କେହିଜଣେ ସେ ଖୋଜେ । ଦୈବୀଶକ୍ତି ଲାଭ କରିଥିବା ସନ୍ଥ କୌଣସି ବ୍ୟକ୍ତି ହେଉ, ତା' ହେଲେ ତା' ସହିତ ହୋଇଥିବା ଏକମାତ୍ର ଭେଟି ତାକୁ ଏ ସଂସାରରୁ ତାରିଦିଏ । ପ୍ରତ୍ୟେକ ରାତିରେ ଏଭଳି କେହି ନା କେହି ଭେଟିଲେ ତାଙ୍କ ଦୁଃଖ ଶୁଣି ଯାହା ଉଚିତ ମନେକଲି ସେ ଭଳି ପରାମର୍ଶ ଦେଲି । କାହାକୁ ନମ୍ର ହେବାକୁ କହିଲି ତ କାହାକୁ କଳଥା କରିବାକୁ କହିଲି । କାହାରି ହେଉ ଦ୍ରୋହକୁ ବାଟ ଦେଖାଇଲି ତ ଅନ୍ୟଙ୍କୁ ସ୍ନେହ ପ୍ରେମ ଉପରେ ଜୀବନ ଶିଖାଇଲି ।'

'ମାନେ ଆପଣ ସ୍ୱେଚ୍ଛାଚାରକୁ ଉତ୍ସାହିତ କରି ଦେଲେ ।' ଏ ସାଧାରଣକଥା ମହାରାଜଙ୍କୁ ଭାଲାରିବ ଠେଲି ଦେଲେ ।'

'ଆପଣଙ୍କ ସହ ମୁଁ ଏକମତ ନୁହେଁ । କାହାରି ସଂସାର ସେପରି ଧ୍ୱଂସ ନ ହେଉ ଏହା ହିଁ ମୋର ଇଚ୍ଛା । ସଂସାର ଅପେକ୍ଷା ମଣିଷର ମହତ୍ତ୍ୱ ବେଶୀ । ତେଣୁ ସେ ସେପରି ଧ୍ୱଂସ ନ ହେଉ । ତେଣୁ ଯେଉଁ ସଂସାରରେ ସ୍ୱାମୀ ସ୍ତ୍ରୀଙ୍କର ଜୀବନ ନଷ୍ଟ ହେବାକୁ ଯାଉଛି ସେଠାରେ ତାଙ୍କୁ ଛାଡ଼ପତ୍ର ଦେବାପାଇଁ ଉପଦେଶ ଦେବାକୁ ବାଧ୍ୟ ହେଲି ।'

'ଆଉ କିଛି କହନ୍ତୁ ନାହିଁ । ଆପଣ ସଂସାର ଭାଙ୍ଗିବା କଥା କହିଲେଣି ।'

'ମହାରାଜ, ଛାଡ଼ପତ୍ର ଦବାଦ୍ୱାରା ସଂସାର ଭାଙ୍ଗେ ନାହିଁ । ଓଲଟି ଭାଙ୍ଗି-ପଡ଼ିଥିବା ସଂସାରର ଛାଡ଼ପତ୍ର ହେଉଛି ଆଇନ୍‌ଗତ ରୂପ । ସଂସାରଟା ଭାଙ୍ଗି ସାରିଥାଏ । ମଣିଷ ଭାଙ୍ଗି ପଡ଼ିବା ପୂର୍ବରୁ ତାକୁ ବଞ୍ଚେଇବା ଅତି ଜରୁରୀ, ତେଣୁ ଛାଡ଼ପତ୍ରର ବ୍ୟବସ୍ଥା କରାଗଲା । ମହାରାଜଙ୍କୁ ଷୋଳଜଣଙ୍କ ସହ ବିବାହ କରିବାକୁ ପ୍ରସ୍ତାବ ବି ମୁହିଁ ଦେଇଥିଲି । କାହିଁକି ? ଆପଣଙ୍କ ଭଳି ଜଣେ କଳାପ୍ରିୟ ମଣିଷ ଭୁଷୁଡ଼ି ନପଡ଼ୁ ବୋଲି । ଦେଖିବାକୁ ଗଲେ ଏ ସଂସାର ମାନେ ଗୋଟିଏ concept ଓ ପ୍ରତ୍ୟେକ ମଣିଷ ହେଉଛି Reality, ତେଣୁ ପ୍ରତ୍ୟେକ ମଣିଷ ଭିତରେ ଥିବା ମଣିଷକୁ ଚିହ୍ନି ସେ ଅନୁସାରେ ପ୍ରତ୍ୟେକଙ୍କୁ ପରାମର୍ଶ ଦେଲି । କାହାକୁ ଅନ୍ୟାୟ ବିରୁଦ୍ଧରେ କପର

ଲଢ଼ିବାକୁ ହେବ ଶିଖେଇଲି । ଆଉ କାହାକୁ ଅନ୍ୟାସ୍ତ କପର ସହିବ ତାହା ବୁଝେଇଲି ଓ କପଟ ହଜମ୍ କରିବ ତାହା ମଧ୍ୟ କହିଲି ।

ହଠାତ୍ ରଜାଙ୍କ ମନରେ ସନ୍ଦେହ ଉପୁଜିଲା, ସେ ପଚାରିଲେ—

'ମନ୍ତ୍ରୀବର ଯଦି ସତ ସତକୁ ସତ ଶିବ ପାର୍ବତୀ ଆସି ପହଞ୍ଚିଯା'ନ୍ତି, ଆପଣ କ'ଣ କରିବେ ?'

'ଭଗବାନ୍ ଆସିବା ଅସମ୍ଭବ, ଏମିତି ସ୍ୱରଚିତ ଯୋଜନାମାନ ନିର୍ମାଣ କରି ତାଙ୍କର ଯେଉଁ ପରାକ୍ରମ ଦେଖିଛୁ ତାକୁ ହଜମ୍ କରିବାର କ୍ଷମତା ତାଙ୍କ ପାଖରେ ନାହିଁ । ଅଥଚ ଏଲା ନର୍ମୀଙ୍କୁ ସମର୍ଥନ ନକରି ମୁହଁ ଦେଖାଇବା କଷ୍ଟଦାୟକ ।'

'ଆପଣ ଏ କାମ ପ୍ରତିଦିନ କରୁଥିଲେ ?'

'ହଁ ମହାରାଜ । ପ୍ରତିଦିନ କେଉଁଠି ନା କେଉଁଠି ଅଖରା ଜାତକିଏ ନଷ୍ଟସ୍ତ ହେଉଥିଲି, ଅନେକ ସମ୍ବାଦକୁ ବାରେଇ ଦେଲି । ଏମିତି ମହାରାଜ ମଧ୍ୟ ଭେଟିଲେ ଯେଉଁମାନେ ଭଗବାନଙ୍କର ମଧ୍ୟ ଶୁଣିବାକୁ ପ୍ରସ୍ତୁତ ନଥିଲେ । ମହାରାଜ ରାଗନ୍ତୁ ନାହିଁ । ଥରେ ଦୁଇଥର ଆପଣଙ୍କ ରାଣୀମାନଙ୍କ ମଧ୍ୟରୁ ଜଣେ ଦୁଇ ଜଣ ସେଠି ଆସିଥିଲେ ।

'କ'ଣ କହୁଛନ୍ତି ! ତାଙ୍କର କି ଦୁଃଖ ଥିଲା ?'

'ସେମାନେ ସର୍ବକାଳ ମହାରାଜଙ୍କ ସାନ୍ନିଧ୍ୟ ଚାହୁଁଥିଲେ ।'

'ଆପଣ ତାଙ୍କୁ କ'ଣ କହିଲେ ?'

'ମହାରାଜାଙ୍କୁ ହାତ ମୁଠାରେ କପଟ ରଖିବ, ଏହି ଗୁରୁମନ୍ତ୍ର ।'

'ମୋ ବିରୁଦ୍ଧରେ ?'

'ଏମିତି କେବେ ସମ୍ଭବ ?'

'ତା'ହେଲେ କ'ଣ କହିଲେ ।'

'କହିଲି ସାମାନ୍ୟ ମଣିଷକୁ ଜୟ କରିବା ଅତି ସହଜ, ତାଙ୍କ ମନକୁ ଅକ୍ତିଆର କରିବା ବାଟଟି ପେଟ ଦେଇ ଯାଇଥାଏ । ତିନି ପ୍ରହର ଚୀଜ୍ଞ ଭଲ ସୁସ୍ୱାଦୁ ଭୋଜନ ଦେଇଦେଲେ ସେମାନେ ଖୁସି । ଅଧା ଲଢ଼େଇ ତୁମେ ଜିତିଗଲ । ସାମାନ୍ୟ ମଣିଷର ସମସ୍ତ ଗରଜ ଶାରୀରିକ ଥାଏ । ଅଳ୍ପ ଲଭରେ ସେମାନେ ପରମ ତୃପ୍ତ ହୋଇଥାନ୍ତି । କିନ୍ତୁ ବୁଦ୍ଧିମାନ୍ ପ୍ରତିଭାବାନ୍ ମଣିଷ ?'

'ପ୍ରଥମେ କହିଲ ରଜା ତୁମ ପାଇଁ ଅସାମାନ୍ୟ ନା ନାହିଁ ?'

ରଜା ତରବରରେ ପଚାରିଲେ – 'ରାଣୀମାନେ କ'ଣ ଉତ୍ତର ଦେଲେ ।'

ମନ୍ତ୍ରୀ ଆଶ୍ଚର୍ଯ୍ୟ ହୋଇ ପଚାରିଲେ—'ମହାରାଜା କ'ଣ ଏହାର ଉତ୍ତର ଜାଣି ନାହାନ୍ତି ।

'ମନ୍ତ୍ରୀଜୀ, ସ୍ତ୍ରୀମାନଙ୍କୁ ନିଜର କଳାକାର ସ୍ୱାମୀ ଅପେକ୍ଷା ଆଉ ଜଣେ କଳା-.କାର ଶ୍ରେଷ୍ଠ ଲାଗେ ।'

'ମହାରାଜା ମୁଁ ମଧ୍ୟ ସେହି କଥା ଭାବୁଥିଲି । କିନ୍ତୁ ତାହା ଅସତ୍ୟ ହୋଇଗଲା । ଆପଣଙ୍କର ରାଣୀମାନେ ଆପଣଙ୍କର ଶ୍ରେଷ୍ଠତ୍ୱ ମାନି ସାରିଛନ୍ତି । ତେଣୁ ମୋ ବାଟଟି ଅତି ସରଳ ହୋଇଗଲା, ଅସାମାନ୍ୟ ମଣିଷର ମନ ଜିତିବାର ପଥ, ପେଟ-ଭିତରେ ହୃଦୟ ପର୍ଯ୍ୟନ୍ତ ଯାଏ ନାହିଁ, ମସ୍ତିଷ୍କରୁ ହୃଦୟ ପର୍ଯ୍ୟନ୍ତ ଯାଇଥାଏ । ଏଭଳି ମଣିଷମାନଙ୍କୁ ବୁଦ୍ଧି ଭିତ୍ତିକ ଖେଳ ଲାଗେ । ତାଙ୍କ ବୁଦ୍ଧି ବିକଶିତ ହେବା ପାଇଁ କିଛି ନା କିଛି ଖାଦ୍ୟ ସେମାନେ ଚାହୁଥାନ୍ତି । ତୁମର ରାଜା ଯଦି କେବଳ ସ୍ତ୍ରୀ ଯୌଷିକ ହୋଇଥାନ୍ତେ ତା ହେଲେ ମୁଁ ତାଙ୍କୁ କଦାପି ଷୋଳଟି ବିବାହ କରିବା ପାଇଁ ପ୍ରସ୍ତାବ ଦେଇ ନଥାନ୍ତି । ସ୍ତ୍ରୀ ସହବାସ ଏମାନଙ୍କର ସାଧ ନୁହେଁ । କଳା ଓ ବୁଦ୍ଧିର ବିକାଶ ପାଇଁ ଏହା ଏକ ସାଧନ,ସମସ୍ତ କଳା ଗୁଣକୁ ରାଜାନ୍ତଃପୁର କାହିଁକି ଦିଆଯାଏ ? ବୁଦ୍ଧିର ଖେଳ ନିର୍ବାପିତ କରିବା ପଛେ ବୁଦ୍ଧିମାନ ମଣିଷର ସଙ୍ଗ ଲାଭରେ ଯେଉଁ ନିଶାଥାଏ, ସେ ଆନନ୍ଦ ସହିତ କୌଣସି ସୁଖର ତୁଳନା କରାଯାଇ ପାରିବ ନାହିଁ । ଷୋଳ କଳାରୁ ପ୍ରତ୍ୟେକ କଳାର ଗୋଟିଏ ଗୋଟିଏ ପ୍ରସାଦ ମହାରାଜା ତୁମକୁ ଅର୍ପଣ କରିଛନ୍ତି । ତମ ପ୍ରସାଦରେ ତମେ ମହାରାଜାଙ୍କ ପାଟରାଣୀ, ତେଣୁ ତୁମ ପ୍ରାସାଦକୁ ତୁମେ ସମ୍ଭାଳି ନିଜ ରାଣୀ ପଦକୁ ଅକ୍ଷୁଣ୍ଣ ରଖ । ସମୟାନୁସାରେ ନାନା ପ୍ରକାରର ଖେଳ୍ କର, କେବେ ଦାସୀ ହୋଇ ପାଦ ପାଖରେ ବସ, ନ'ହେଲେ ଆଙ୍ଗୁଳି ଇଶାରାରେ ନଚାଅ, କିନ୍ତୁ ଏ ସବୁ କରିଦେଲେ ତୁମର ସ୍ୱାମୀ ଯେ ଜଣେ ସମ୍ରାଟ ଏ କଥା ଭୁଲିବ ନାହିଁ । ଏ ସବୁ ଯଦି କରି ପାରିବ ତୁମ ସାମ୍ରାଜ୍ଞୀ ପଦରେ ଏ ଜୀବନରେ କେବେହେଲେ ଆଞ୍ଚ ଆସିବ ନାହିଁ ।'

ରାଜା ଅତି ଆନନ୍ଦରେ ମନ୍ତ୍ରୀଙ୍କୁ କୁଣ୍ଢେଇ ପକାଇଲେ ।

'ମନ୍ତ୍ରୀଜୀ ଆଜି ମୁଁ ଧନ୍ୟ ହୋଇଗଲି । ଏଭଳି ପ୍ରଧାନ ମନ୍ତ୍ରୀ ଯିଏ କି ରାଜ୍ୟ ପ୍ରତି ନିଷ୍ଠା ରଖି ଏତେବଡ଼ ସାମାଜିକ କାର୍ଯ୍ୟ କରି ଚାଲିଛନ୍ତି । ଏହା ମୋର ପରମ ସୌଭାଗ୍ୟ, ମୁଁ ଆପଣଙ୍କ ପାଇଁ କ'ଣ କରିପାରେ ? କ'ଣ କରିବି କୁହନ୍ତୁ ?'

'ମହାରାଜା ଆପଣଙ୍କ କଳାସାଧନା ଏମିତି ଜାରି ରହୁ ଆପଣଙ୍କ ରାଣୀମାନେ ଆପଣଙ୍କୁ ନିଶ୍ଚୟ ସହାୟକ ହେବେ । ମୋ କାର୍ଯ୍ୟ ମୁଁ ଏମିତି କରୁଥିବି, କେବଳ ସେ ହେଲିକପ୍ଟରଟି ବ୍ୟବହାର କରିବା ପାଇଁ ଅନୁମତି······'

ରାଜା କହିଲେ—ମନ୍ତ୍ରୀଜୀ ଆପଣ ମୋର ପୁଷ୍ପକ ଯାନଟି ନେଇ ଯାଆନ୍ତୁ ଆପଣଙ୍କ ଧର୍ମ ପତ୍ନୀ ଏଥିରେ ଅତି ସୁଖ ସୁବିଧାରେ ଆପଣଙ୍କ ସହ ବୁଲି ପାରିବେ ।'

'ମୁଁ ଅଶେଷ କୃତଜ୍ଞ ।'

'ଆପଣ କୌଣସି ସତ୍କାର ପାଇଁ ଇଚ୍ଛୁକ ନଥିଲେ ମଧ୍ୟ ଆପଣଙ୍କ ଧର୍ମପତ୍ନୀଙ୍କ ସତ୍କାର ମୁଁ କରିବାକୁ ଚାହେଁ । ଗତ ବାରବର୍ଷ ହେବ ଆପଣଙ୍କ କାନ୍ଧ ସହ କାନ୍ଧ ମିଶେଇ ସେ ମଧ୍ୟ ଏ କାର୍ଯ୍ୟ କରୁଛନ୍ତି । ମୋ ରାଜ୍ୟରେ ଏଭଳି ଏକ ପୁରୁଷ ଅଛି ଯାହାର ସ୍ତ୍ରୀ ପ୍ରକୃତ ଅର୍ଥରେ ତାର ସହଚରୀ, ଆପଣ ଧର୍ମପତ୍ନୀଙ୍କୁ କେବେ ଏ ରାଜ ପ୍ରସାଦ ଆଣିଛନ୍ତି '

ମନ୍ତ୍ରୀ ଆଖିମାରି କହିଲେ···'ମହାରାଜ କାଲି ମୋ ସହିତ ଯେଉଁ ମହିଳା ଜଣକ ପାର୍ବତୀ ରୋଲ୍ କରୁଥିଲେ ସେ ମୋର ଧର୍ମ ପତ୍ନୀ ନୁହଁନ୍ତି ।'



# ଉତ୍ତର

କେବେ ଜାଣିବ—

ଆମେ ବୁଢ଼ା ହୋଇଗଲୁ ? ଯେତେବେଳେ ଗରମ ଗରମ ପକୁଡ଼ି ହୁଣା ହଉଥିବ, ଆଉ କାଣ କଥା ମନେପଡ଼େ । ରେଲଲାଇନ୍ ଡେଇଁ ଆରପଟକୁ ଯିବାପାଇଁ ଡରଲାଗେ । ରାତି ଅନିଦ୍ରା, ମାନେ ବ୍ଲଡ଼ପ୍ରେସର ଓ ଗରମ ଗରମ ଜିଲପି ଥାଳି, ମାନେ ଡାଇବେଟିସ୍—ରାସ୍ତାରେ ଯାଉଥିବା ସୁନ୍ଦରୀ ରମଣୀ ସ୍ଥାନରେ ତା' କୋଳରେ ଥିବା ପିଲା ଉପରେ ଦୃଷ୍ଟି ପଡ଼େ, ଜାଣିବ ତମେ ବୁଢ଼ା ହୋଇଗଲ । ମୁଁ କିନ୍ତୁ ପିଲାଟିକୁ ଦେଖିଲି ନାହିଁ ।

ତାକୁ ଦେଖିଲି ।

ଅନୁରାଧା କର୍ଣ୍ଣେସ୍ୱର ।

ଅର୍ଥାତ୍ ପନ୍ଦରବର୍ଷ ପୂର୍ବର ଅନୁରାଧା କର୍ଣ୍ଣେସ୍ୱର ।

ବର୍ତ୍ତମାନର ମିସେସ୍ ଓ୍ୱାନ୍‌ଖେଡ଼େ । ନା ସେଇ ଅନୁରାଧା, ନା ଆଉ କ'ଣ ମୁଁ ଜାଣେନା, କିନ୍ତୁ ସେ ଅରସିକ ଲୋକଟା ତା ନାଁ ନିଶ୍ଚୟ ବଦଳେଇଥିବ । ମୁଁ ବାହା ହୋଇଥିଲେ ତା ନାଁଟି ସେମିତି ରଖିଥାନ୍ତି । କାରଣ କେବଳ ଅନୁ କୁହ ନ ହେଲେ ରାଧା କୁହ । ପୁରା ନାଁଟିରେ ଯେତିକି ମଧୁରତା, ଛୋଟ ନାଁରେ ମଧ୍ୟ ସେତିକି ମଧୁରତା । ସେ ଓ୍ୱାନ୍‌ଖେଡ଼େ କ'ଣ ଏକଥା ବୁଝିଥିବ । ଏଇ ଓ୍ୱାନ୍‌ଖେଡ଼େ ମୋ ଅନୁରାଧାକୁ ମୋ ପାଖରୁ ଛଡ଼େଇ ନେଇଥିଲା ।

ପନ୍ଦର ବର୍ଷ ତଳର କଥା···

ପନ୍ଦର ବର୍ଷ ପରେ ସାମନା ଔଷଧ ଦୋକାନରେ ଅନୁରାଧାକୁ ମୁଁ ଦେଖୁଛି । ତଥାପି ମିଷ୍ଟର ଓ୍ୱାନ୍‌ଖେଡେ ପ୍ରତି ମୋ ରାଗଟା ଏପର୍ଯ୍ୟନ୍ତ ସେମିତି ଅଛି । ଅନେକ କଥାର କୌଣସି ଉତ୍ତର ପୁରା ଜୀବନଟା ଗଲେ ମଧ୍ୟ ମିଳେ ନାହିଁ । ସେମିତି 'ଅନୁ'ର ଓ 'ମୋର' ବିବାହ କାହିଁକି ଭାଙ୍ଗିଲା, ତା'ର ଉତ୍ତର ମୁଁ ଏପର୍ଯ୍ୟନ୍ତ ପାଇନାହିଁ । ଆମେ ପରସ୍ପରକୁ ଖୁବ୍ ଭଲ ପାଉଥିଲୁ । 'ଦୁନିଆ କି କୌଣସି ଶକ୍ତି ତାକତ୍ ହମେ ଜୁଦା ନେହିଁ କର୍ ସକତି ।'—ଏ ବାକ୍ୟଟି ଦଶଥର କୁହା ସରିଥିଲା ; କିନ୍ତୁ ପ୍ରତ୍ୟକ୍ଷରେ କାହାକୁ ବେଶୀ ତାକତ ଖର୍ଚ୍ଚ କରିବାକୁ ପଡ଼ିନଥିଲା ନାହିଁ । ଏକା ଅନୁରାଧାର ବାପା ହିଁ ଆମକୁ ଜୁଦା କରିବା ପାଇଁ ସମର୍ଥ ଥିଲେ । ତେଣୁ ବାହାଘର ଭାଙ୍ଗିଗଲା ।

ମୁଁ ଦିନକିଏ ଉପାସ ରହିଲି । ଦୁଇଦିନ ବିନା ଇସ୍ତ୍ରୀର ଲୁଗାପଟା ପିନ୍ଧିଲି । ଅନୁରାଧା ହିନିମୁନ୍‌ରୁ ଫେରି ନ ଆସିବା ପର୍ଯ୍ୟନ୍ତ ସନ୍ଧ୍ୟାରେ ବୁଲିବାକୁ ଗଲିନାହିଁ । ଦଶଦିନ ଦାଢ଼ି କାଟିଲି ନାହିଁ ।

ସେ ସମୟରେ ମୋ ବୟସ ଓ ପ୍ରେମଭଙ୍ଗ ଏହା ସହ ଖାପ୍ ନ ଖାଇଲି ଭଳି କୌଣସି କାର୍ଯ୍ୟ ମୁଁ କରି ନଥିଲି । ମୋର ଏ ପ୍ରେମଭଙ୍ଗର ନିଶା କୋଡ଼ିଏ ଦିନ ପରେ ଗ୍ଭଡ଼ିଲା । ଅନୁରାଧା ମୋତେ ଦେଖା କରିବାକୁ ଆସିଲା । କେବଳ ହିନ୍ଦୀ ସିନେମାରେ ଶୋଭା ପାଇବା ଭଳି ଏକାନ୍ତ ଆମେ ପାଇଲୁ । ଗଭୀର ଆଲିଙ୍ଗନ ସହ ପରସ୍ପରକୁ ଚୁମ୍ବନରେ ବନ୍ଦୀକରିଦେଲୁ ! ମୁଁ କାନ୍ଦିଲି । ସେ ମଧ୍ୟ କାନ୍ଦିଲା । ସେ ସମୟରେ ଯେଉଁ ସୁଯୋଗ ଆମେ ପାଇଥିଲୁ ଓ ଯେଉଁଭଳି ପରିସ୍ଥିତିରେ ଆମେ ଭେଟିଥିଲୁ. ବହୁତ କିଛି ଘଟିଥାନ୍ତା । ଯାହା ମାଗିଥାନ୍ତି ମିଳିଥାନ୍ତା ! କିନ୍ତୁ ରକ୍ତରେ ଥିବା ଆତ୍ମସନ୍ତୁଷ୍ଟି ଆତ୍ମପ୍ରକାଶ କଲା ଓ ମୁଁ ରହିଗଲି ।

ଏମିତି କାହିଁକି ହେଲା ?

ସେ ସମୟରେ ବୁଝିପାରି ନ ଥିଲି । ଆଜି କିନ୍ତୁ ବୁଝିପାରୁଛି । ସେ ସମୟରେ ମୋ ଭିତରେ ଥିବା 'କାମନା ଯେତେ ପ୍ରଜ୍ୱଳିତ ନ ଥିଲା, ତା'ଠାରୁ ଅଧିକ ଗୁଣରେ 'ଅହଙ୍କାର' ପ୍ରଜ୍ୱଳିତ ହୋଇଥିଲା । ଅନୁରାଧାର ସେତିକି ସ୍ପର୍ଶରେ ମୋ ଅହଙ୍କାର ନିର୍ବାପିତ ହୋଇଗଲା ଓ କଳ୍ପବୃକ୍ଷର ଗ୍ଭରିତଳୁ ମୁଁ ଶୁଷ୍କ ହୋଇ ବାହାରିଆସିଲି ।

ସେ ଓ୍ୱାନ୍‌ଖେଡ଼େ ମୋ ପାଖରୁ ମୋ ଅନୁକୁ ଛଡ଼େଇ ନେଇଛି, ଏହାର ଅର୍ଥ କଅଣ ? ମୁଁ ତାକୁ ଆଲିଙ୍ଗନବଦ୍ଧ କରି ଏହିକଥା ଭାବୁଥିଲି । ସେହି ଶରୀର, ସେହି ସ୍ପର୍ଶ, କିନ୍ତୁ ଅଲଗା ଅଲଗା ଲାଗୁଥିଲା । ସେଥିରେ ଏକ ଗଭୀର ସୁଖାନୁଭୂତି ଥିଲା । କାରଣ ଏଥର ସେ ଅନୁରାଧା କଳେବରର ନ ଥିଲା ।

ସେ ଥିଲା ମିସେସ୍ ଓ୍ୱାନ୍‌ଖେଡ଼େ ।

"Yes I kissed misses Wankhede"

ମୋ 'କାମ' ନିର୍ବାପିତ ହେବା ପୂର୍ବରୁ 'ଅହଙ୍କାର' ନିର୍ବାପିତ ହୋଇଗଲା । ମୁଁ ହୁରେଇଗଲି । ଅନୁକୁ ଆଶ୍ଚର୍ଯ୍ୟ ଲାଗିଲା । ସେ ମୋତେ ଖାଲି ଅନେଇ ରହିଲା ।

ଭଲ ପାଉଛି ଓ ନିଜର ଭାବୁଛି ବୋଲି କ'ଣ ସବୁକଥା କହିଦେବ ? ଆଜି ମୁଁ ପ୍ରତିଶୋଧ ନେଇଛି । ମିସେସ୍ ଓ୍ୱାନ୍‌ଖେଡ଼େର ମନର କୌଣସି ଏକ କଣରେ ଏକ ମଖମଲି ଦୁଃଖ ଅଛି ଓ ସେ ଦୁଃଖରେ ମୋ ନା ଅଙ୍କିତ ହୋଇଛି । ମୋ ପାଇଁ ଏହା ହିଁ ଯଥେଷ୍ଟ ଥିଲା । ଓ୍ୱାନ୍‌ଖେଡ଼େ, ହନିମୁନ୍‌କୁ ଯାଉ ଯାହା ନେଲୁ ତାହା କେବଳ ଏକ ଶରୀର ମାତ୍ର । ଶୃଙ୍ଗାର କଲୁ, ତାହା ସେହି ଶରୀର ସହ । ମରଣ ହିଁ ଯାହାର ପ୍ରକୃତି, ଏପରି ଶରୀର । ହନିମୁନ୍ ଶବ୍ଦରେ ହନି ହିଁ

ମହତ୍ତ୍ୱପୂର୍ଣ୍ଣ । ସେଟା ତୁ ପାଇଲୁ ନାହିଁ । ସେ ଦିନକୁ ଆଜି ମୁଁ ଭାବିଲି । ଏମିତି କେତେ କ'ଣ ମୋ ମନକୁ ଆସିଲା । ମୁଁ ଦୂରେଇଗଲି । ସେ ଆଶ୍ଚର୍ଯ୍ୟରେ ମତେ ଚାହିଁଲା । ମୁଁ କିଂବୁ କିଛି କହିଲି ନାହିଁ । ତା ବେଣୀରୁ ଖସିପଡ଼ିଥିବା ଗଜରାଟି ତାକୁ ଫେରେଇଦେଲି ।

ସେ ମୋ ଆଡ଼କୁ ପିଠିକରି ଠିଆ ହୋଇଥିଲା । ମୁଁ ତାକୁ ଡାକଥାନ୍ତି, କିଂବୁ ଏସବୁ ମନେ ପଡ଼ିଗଲା । ତେଣୁ ରହିଗଲି । କାଉଣ୍ଟର ଉପରେ ଠିଆ ହୋଇଥିବା ଲୋକଟା ତାକୁ ପଇସା ଇସାରା କଲା । ସେ ବ୍ଲାଉଜ଼ ଅନେଇଲା । ଏତେ ଜୋର୍‌ରେ ପାଟିକରି ପଚାରିଲା—'ତୁ ଏଠି ।'

"Yes, ମୁଁ ।"

'ଏଠି କେମିତି ?'

'ଯେମିତି ତୁ, ସେମିତି ମୁଁ ।'

ଆମେ ଦୋକାନରୁ ବାହାରି ଆସିଲୁ । ଚାଲୁ ଚାଲୁ ସେ ରହିଯାଇ ପଚାରିଲା—

ହଠାତ୍ ଦେଖା ହୋଇଗଲା, ନୁହେଁ ?

ମୁଁ ଖାଲି ତାକୁ ଦେଖୁଥିଲି । ମୋ କାନ୍ଧକୁ ହଲାଇ ସେ ପଚାରିଲା—

କିଛି କହୁନୁ ?

କ'ଣ କହିବି ? ମୁଁ ବିଶ୍ୱାସ କରିପାରୁନି, ତୁ ମୋ ସାମନାରେ ଠିଆ ହୋଇଛୁ । ମୁଁ ଯେଉଁ କ୍ରସ୍‌କରି ଏପଟକୁ ଆସି, ତୋ ସହିତ ଦେଖାହେବା— Simply great ଏଥର ଗୋଟିଏ କାମ କରିବା ।

"We will have coffce."

ନା'ରେ ବାବା, ବିଲ୍‌କୁଲ୍ ସମୟ ନାହିଁ । ଶୋଫର୍ ତେଣେ ଅନେଇ ବସିଥିବ ।

କେଉଁଠି ?

ପଛପଟ ରୋଡ଼ରେ ଗାଡ଼ି ପାର୍କ କରିଛି । ନନାଙ୍କ ଗାଡ଼ି ଦରକାର ଅଛି । ତୁ ଚାଲ୍ । କେଉଁଠି ରହୁଛୁ କହ ?

'ଏଇଠି ।'

ଦେଖ୍ ଚାଲିଗଲୁ । ଯେମିତି ଥିଲୁ ସେମିତି ଅଛୁ ।

ପୁରୁଷ କେବେ ବଦଳେ ନାହିଁ ।

ତୋ ସହ କଳିଆ କରିବା ପାଇଁ ମୋର ସମୟ ନାହିଁ ।

କେବେ ଥିଲା ?

ପଛ କଥା ଛାଡ଼ ।

କେବେ ଅଛୁ ?

ଆଜି ଉପରବେଳା ମୋର କିଛି କାମ ନାହିଁ ।

ଆସିବୁ ?

କୁଆଡ଼େ ?

ମୋ ଘରକୁ ।

ତୋ ଘରକୁ ?

ଆଜି ମୁଁ ଛୁଟି ନେଇଛି ।

ସେ ଟିକେ ଭାବନାରେ ପଡ଼ିଗଲା ; କିନ୍ତୁ କ୍ଷଣକ ପାଇଁ । ସଙ୍ଗେ ସଙ୍ଗେ ପଚାରିଲେ— ଘରେ ତୋ ସ୍ତ୍ରୀ ଥିବ । ତା' ଉପସ୍ଥିତିରେ ତୋ ସହ ମୁଁ ଫ୍ରି'ଲି କଥା-ବାର୍ତ୍ତା କରିପାରିବି ନାହିଁ ।

ଆମ ବିଲ୍ଡିଂର ଭଗିନୀ ସମାଜ ମ୍ୟାଟିନି 'ସୋ' ଦେଖିବାକୁ ଯିବେ ।

Surely ?

ସିଓ୍ୟୋର୍‌ଲି ।

କେତେବେଳେ ଆସିବି ?

ମ୍ୟାଟିନି ମାନେ ତିନିଟାରେ ଆରମ୍ଭ ହୁଏ । ବିଲ୍ଡିଂର ସବୁ ଡାକ୍ତରଣୀଗଣ ଦୁଇଟାରେ ବାହାରିଯିବେ । ସିନେମା ୬ଟାରେ ସରିବ । ଘରେ ପହଞ୍ଚିଲା ବେଳକୁ ସାତଟା ମାନେ ନଗଦ ପାଞ୍ଚଘଣ୍ଟା ଆମକୁ ମିଳିବ । ଅଣ୍ଟିବ ?

'ବଳିବ ।'

ଘର ପାଇବୁ ?

ନିଶ୍ଚୟ ।

କେମିତି ଆସିବୁ ?

କାର୍ ମିଳିଲେ କାର୍, ନହେଲେ ଟାକସିରେ ।

ଠିକ୍ ଅଛି । ନା ଆଣିବାକୁ ଯିବି ?

ନା ।

ଅପେକ୍ଷା କରିଛି ।

Don't worry.

ଅତି ଆହ୍ଲାଦ ମନରେ ମୁଁ ଫେରୁଥିଲି । ସବୁକିଛି କଳ୍ପନା ବାହାରେ । ଅନୁର ବିବାହ ହେଲା । ଭାବିଲି ଜୀବନର ଗୋଟିଏ ପର୍ବ ସରିଗଲା । ମନର କଥା ମନରେ ରଖି ବେଦୀରେ ବସିଲି । ସାତ ପାହୁଣ୍ଡ ଚାଲି ସାତଜନ୍ମ ପାଇଁ ଜୟଶ୍ରୀକୁ ଆପଣାର କଲି । ମିଳିଥିବା ଜୀବନସାଥୀ କେବଳ ମୋର ହୋଇ ରହୁ, ଅନ୍ୟ କାହାରି ଅଧିକାର ତା ଉପରେ ନ ରହୁ ଏକଥା ଯେମିତି ସମସ୍ତେ ଭାବନ୍ତି, ଜୟଶ୍ରୀ

ସେଥିରୁ ବାଦ୍ ନ ଥିଲ । ବିବାହର ପ୍ରଥମ ରାତିରେ ଜୟଶ୍ରୀ ସେହିକଥା ମତେ ପଗ୍ଦରିଲ । ସେହି ରାତିରେ ଓ ପରେ ଧର୍ମାବଲମ୍ବୀ ଥିବା କଥାଟିଏ ଶିଖିଲି । "ବିବାହର ମୂର୍ଖାମୀରୁ ମଣିଷର ନିସ୍ତାର ନାହିଁ, ତେଣୁ ମଣିଷ ତା'ର ଶରଣ ପଶେ ।" "କିନ୍ତୁ ଆଉ ଗୋଟିଏ ମୂର୍ଖାମୀ କେବେହେଲେ କରିବ ନାହିଁ । ସ୍ତ୍ରୀକୁ ବିଶ୍ୱାସ କରି ବିବାହ ପୂର୍ବର କୌଣସି କଥା ତାକୁ କହିବ ନାହିଁ ।" ମୁଁ ଜୟଶ୍ରୀକୁ ଅନୁରୋଧରେ ସବୁକଥା କହିଦେଲି । ମାମଲା ସେଇଠି ଚାଲିଥିଲା । ସୁଭାଷିଣୀକୁ ଧରି ହର୍ଗରେ ପଢ଼ିଥିଲି ପରେ ମୋତେ ଦେଖା କରିଥିଲେ ପ୍ରୀତି ନାଁରେ ପ୍ରେରେଇବା ପାଇଁ ତତ୍ପର ଥିବା ଜୟଶ୍ରୀକୁ ଅନୁରାଧା କଥା କହିଦେଲି । ଆଉ କିଛି ନୁହେଁ, ଦେଖେ ଯେପରି ପିଚ୍ଛିଟିଏ ମିଳିଗଲା । ସେହି ଦିନଠୁ ସେ ମୋ ଉପରେ ବିଶ୍ୱାସ କରିନାହିଁ । ସଂସାରେ କଲି 'ସନ୍ଦେହ ପିଶାଚ' ସହି । "ସଂଶୟାତ୍ମା ବିନଶ୍ୟତି" । ଏ ଶାସ୍ତ୍ର ବଚନ ପ୍ରତି ମୋର ଆଉ ବିଶ୍ୱାସ ରହିଲା ନାହିଁ । ବିନଶ୍ୟତି ନୁହେଁ—ଏ ଅଣ୍ଡା ସବୁବେଳେ ଜାଗ୍ରତ ଥାଏ, ସତର୍କ ଥାଏ ଓ ସୁଯୋଗ ଖୋଜୁଥାଏ ।

କିନ୍ତୁ ମୋର କିଛି ନ ଥିଲା । ତେଣୁ କିପରି ବା ପାରିବ ? ସେ ସନ୍ଦେହ କରୁଥିଲା ଓ ମୁଁ ଧରା ପଡ଼ୁ ନ ଥିଲି । ସେଠୁ ଆରମ୍ଭ ହେଲା ସ୍ୱପ୍ନର ମାଳିକା । ଗୋଟିଏ ମାତ୍ର ସ୍ୱପ୍ନ ସେ ସବୁବେଳେ ଦେଖିଲା । ପୁଣ୍ୟାତ୍ମାଙ୍କ ସ୍ୱପ୍ନରେ ଠାକୁରାଣୀ ଦର୍ଶନ ଦିଅନ୍ତି । କିଛି ଗୋଟେ ବର ଦିଅନ୍ତି । ଏଠି କିନ୍ତୁ ତା' ସ୍ୱପ୍ନରେ ସବୁବେଳେ ଅନୁରାଧା ଆସେ ଓ ତାକୁ କୁହେ 'ମୋ ସ୍ୱାମୀକୁ ଫେରାଇଦିଅ' ।

ପାହାନ୍ତିଆ ଶୋଇଥିବା ନିଦଟା ଲାଳ ହୋଇଯାଏ । ମତେ ଉଠେଇ କ'ଣ ସ୍ୱପ୍ନ ଦେଖିଲା କୁହେ । ସେଠୁ ଦୁଇଦିନ ପର୍ଯ୍ୟନ୍ତ କଥା ବନ୍ଦ । ତା ମନ ଥିଲେ, ନ ହେଲେ ଗରଜ ଥିଲେ ମିଶାମିଶି । ମୋ ମିଜାଜ୍ ଟିକେ ରଙ୍ଗୀନ୍ ହେଲାବେଳକୁ ପୁଣି ଅନୁରାଧା ସ୍ୱପ୍ନରେ ଆସେ । ମତେ ଖାଲି କେବଳ ଜୟଶ୍ରୀର ସ୍ୱପ୍ନରେ ଆସୁଥିବା ଅନୁରାଧା ଉପରେ ମୁଁ ଖାପଣ ରାଗୁଥିଲି । ବିବାହ ପରେ ଛଅ ପାଞ୍ଚ ବର୍ଷ ପର୍ଯ୍ୟନ୍ତ ଏ ସ୍ୱପ୍ନର ନାଗୁଆ ଚାଲିଥିଲା ।

ତା'ପରେ ଆମ ପଢ଼ଣା ଘରେ ଟେଲିଫୋନ୍ ଆସିଲା । ମତେ ହଇରାଣ କରିବାପାଇଁ ଆଉ ଗୋଟିଏ ଅସ୍ତ୍ର ତାକୁ ମିଳିଗଲା । ଅଫିସ୍‌ରୁ ଘରକୁ ଆସିବା ପାଇଁ ଡେରିହେଲେ ଜୟଶ୍ରୀ ଚୁପ୍ । ରାତିରେ ତା' ପାଖକୁ ଗଲେ ସେ ଫାଟିପଡ଼େ । ବାଦ ବିବାଦ, କଜିଆ ଓ ଝଗଡ଼ାକୁ ତାଲ କରି କେତେ କ'ଣ । ଏସବୁ ପାଇଁ ତା'ର ସମସ୍ତ ମଧ୍ୟ ନିର୍ଦ୍ଧାରିତ ଥାଏ ।

'ରାତ ଏଗାରଟା'—ଏଇଠି ଶେଷ କରୁଛୁ ଆମର ତୃତୀୟ ଅଧିବେଶନ । ଠିକ୍ ସେହି ସମୟରେ ଜୟଶ୍ରୀର ପ୍ରଥମ ଅଧିବେଶନ ଆରମ୍ଭ ହୁଏ । ରେଡ଼ିଓରେ କମ୍

ସେକମ୍ 'ପୁଣି ସାକ୍ଷାତ ହେବ ଆସନ୍ତାକାଲି ସକାଳ ଛ'ଟାରେ ଏହି ଆଶ୍ୱାସନା ଥାଏ।' ଏଠି ତାହା ମଧ୍ୟ ନାହିଁ। ଯଦି ସାକ୍ଷାତ ହେଲା—ତାହାହେଲେ ଅସମାପ୍ତ କଥାଅଛି ପୂରା କରିବା ପାଇଁ। ଏଥର ଅନୁରାଧା ସ୍ୱପ୍ନରେ ନ ଆସି ପଡ଼ୋଶୀ ଘରେ ଫୋନ୍ କରୁଥିଲା। ଫୋନ୍‌ରେ କହୁଥିଲା—ଆଜି ସୁଜାତାଙ୍କୁ ଘରକୁ ଯିବାକୁ ଡେରିହେବ। ସେ ମୋ ସହିତ ଅଛି।

ଘରେ ଜୟଶ୍ରୀ ଏପରି କିଛି ମୋ ପାଇଁ ସଜେଇ ରଖିଥିବ, ମୋ କଳ୍ପନା ବାହାରେ ଥାଏ। ତେଣୁ ନେଯାକର ଥକା ଦୂର କରିବା ପାଇଁ ବାଟରେ ତା' ପାଖକୁ ଗଲେ ସେ ଫୋନ୍ କଥା କହେ। ଆଉ କି ମିଳନ? ମୁଁ ଦୂରେଇଯାଏ। ଏମିତି କଲେ ମୋ ପ୍ରାମୀଟା ବାଟକୁ ଆସିବ—ଏଇ ସମାଧାନରେ ସେ ଶୋଇଯାଏ। ଏସବୁ ମଧ୍ୟ ଦୁଇବର୍ଷ ପର୍ଯ୍ୟନ୍ତ ସହିଲି। ଅନେକଥର ଭାବୁଥିଲି କର୍ଣ୍ଣୋଶ୍ୱରଙ୍କ ଘରକୁ ଯାଇ ଟେଲିଫୋନ୍ ଖେତ୍ରର ଆଡ୍ରେସ ଆଣିବ। ସେ ଗ୍ରେର କେଉଁଠି ରହୁଛି ଖୋଜି ବାହାରକରିବ। ଦୈବାତ୍ ଯଦି ଅନୁରାଧା ବାପଘରକୁ ଆସିଥାଏ, ତା'ହେଲେ ତାକୁ ଭେଟି ସବୁ କହିବ।

ତାହା ମଧ୍ୟ ହେଲନାହିଁ। ସହାନୁଭୂତିର ଭିକ ମାଗିବୁଲିବା ମୋ ରକ୍ତରେ ନାହିଁ। ଏଭଳି ସହାନୁଭୂତିରେ ଦାହ ମଧ୍ୟ କମ୍ ହୁଏନାହିଁ। 'କ' ବିଷୟରେ 'ଗ'କୁ କହି, 'କ' ଯାହା ବୁଝୁଛି, 'ଗ' କ'ଣ ତାକୁ ଦେଇପାରିବ?

Atleast ଜୟଶ୍ରୀ ତୋ ସହିତ ଏଭଳି ବ୍ୟବହାର କରିବା ଉଚିତ ହଉନାହିଁ। କହି କହି ଏହି କଥା ଅନୁ କହିବ। ଏ ତ ମୋ ଷ୍ଟେଟ୍‌ମେଣ୍ଟ୍। ଯାହା ବି ହଉ ଅନୁରାଧାକୁ ମୁଁ ଦେଖା କଲିନାହିଁ। ସତକଥା କହିଲେ ମୁଁ ଅନୁରାଧାକୁ ଦେଖା କରିବା ପାଇଁ ଚେଷ୍ଟା କଲିନାହିଁ।

ତେଣୁ ଆଜି ଏତେ ବର୍ଷ ପରେ ତା' ସହିତ ସାକ୍ଷାତ ହେବାପରେ ମୁଁ ଯେ କ'ଣ ସବୁ ଭାବୁଥିଲି ମୁଁ ନିଜେ ଜାଣିପାରୁ ନ ଥିଲି। ହଠାତ୍ ଭେଟ ହେବାରୁ ତା' କୋଳରେ ଶୋଇଥିବା ପିଲା ବିଷୟରେ ମଧ୍ୟ ମୁଁ ପଚାରିବାକୁ ଭୁଲିଗଲି। ମୋ ହାତକୁ ସେ ଯେଉଁଠି ଧରିଥିଲା, ସେ ଜାଗାକୁ ମୁଁ ରୁମାଲରେ ରଗଡ଼ି ସଫା କଲି। କାରଣ ଜୟଶ୍ରୀ ସେ ସ୍ପର୍ଶର ମଧ୍ୟ ବାସନା ପାଇଯିବ। ମଦ ପିଉଥିବା ମଣିଷ ଯେପରି କଥା କହିଲେ ବାସେ, ସେମିତି ଜୟଶ୍ରୀକୁ ମୋ ସ୍ତ୍ରୀ ବନ୍ଧୁମାନେ ବାସନ୍ତି। ପ୍ରତି ମାସରେ ମୁଁ ଜଣେ ସ୍ତ୍ରୀ ପେ କ୍ଲର୍କ ପାଖରୁ ମୋ ଦରମା ନିଏ, ଏକଥା ପନ୍ଦର ବର୍ଷ ହେଲା କହିନାହିଁ। ତଥାପି ସେ ନୋଟ୍‌ଗୁଡ଼ିକୁ ସୁଙ୍ଘି ଦେଖେ।

ଆଜି କ'ଣ କରାଯିବ ସେଇକଥା ଭାବୁଥିଲି। ସିନେମା ଯିବ ନିଶ୍ଚୟ; କିନ୍ତୁ ଅନୁରାଧାର ଆସିବାଟା ଅଛପା ରହିବ, ତା'ର ଗ୍ୟାରେଣ୍ଟି କ'ଣ? ହଠାତ୍ ଯଦି

କେହି ଆସି ପହଞ୍ଚେ, ତା'ହେଲେ ? ଦୁଇ ତିନି ବର୍ଷ ହେଲା ଯେଉଁ ଟିକେ ସୁଖର ସଂସାର ଗଢ଼ିଛି ସବୁ ଫସର ଫାଟିଯିବ ।

ଘଡ଼ିରେ ଦୁଇଟା ବାଜୁ ନ ଥିଲା । ବଲ୍‌ଡ଼ିଂର ସବୁ ଚାକ୍ରାଣୀତକ ଏକାଠି ହେଲାବେଳକୁ ଦୁଇଟା ପନ୍ଦର । କଥା ଗୁଡ଼ିକ ଭୁଲିଯାଇଥିଲା ତ କାହାର ଛୀର ଫ୍ରିଜ୍‌ରେ ରହି ନ ଥିଲା । ପ୍ରତି ସେକେଣ୍ଡ ସେକେଣ୍ଡକୁ ମୁଁ ଅଧୀର ହେଉଥିଲି । ଭୁଲି ତକ ଗିଳଦାଏ, ତା' ବୋଲି' କ'ଣ ଘରର କାହିଁଗୁଡ଼ିକ ଏମିତି କରିବେ ? ଶେଷକୁ ସମସ୍ତେ ବାହାରିଲେ । "କାଲେ ମୋ ପାଉଡ଼ର ଦଶୁନି ତ ?"--ଏ ପ୍ରଶ୍ନ ପ୍ରତ୍ୟେକ ପରସ୍ପରକୁ ପଚାରୁଥିବେ । ପେଟ ପିଠିରେ ଚର୍ବିର ପରସ୍ତ ଦେଖାଯାଉଛି— ସେଥିପାଇଁ ଚିନ୍ତା ନାହିଁ । ଲୋ-କଟ୍ ବ୍ଲାଉଜ୍ ଯୋଗୁଁ ଆଉ କ'ଣ ସବୁ ଦେଖାଯାଉଛି, ସେ ବିଷୟରେ ସରମ ନାହିଁ । ଅରେ ସ୍ତ୍ରୀଙ୍କୁ ଲାଗ—ପରେ ଜାଣିବ କ'ଣସବୁ ଦେଖାଯାଉଛି । ମୁଁ ଡରିଯାଇ ମନକୁ ମନ କହୁଥିଲି । ଶେଷକୁ ସେ ପଳାଇଗଲେ । ଗଲାବେଳେ ଜୟଶ୍ରୀ ଘରେ ରହି ମୋତେ କ'ଣ କ'ଣ କରିବାକୁ ହବ, ବତେଇଦେଇ ଗଲା ।

ସମସ୍ତେ ଗଲେ । ଦୁଇ ମିନିଟ୍ ପରେ ବେଲ୍ ବାଜିଲା । ମୁଁ କବାଟ ଖୋଲିଲି ।

ସାମନାରେ ଅନୁରାଧା ।

ତା' ହାତଧରି ମୁଁ ତାକୁ ଭିତରକୁ ଟାଣିନେଲି । କବାଟ ବନ୍ଦ କଲି । ସେଇଠି ଆମର ପ୍ରଥମ ଭେଟି । ମୁଁ ତାକୁ ଆଲିଙ୍ଗନବଦ୍ଧ କଲି । ମୁଁ ଖୁସି ଥିଲି । ସେ ଦେଖାହେଲା ବୋଲି ନୁହଁ, ମୋ ସନ୍ଦେହୀ ସ୍ତ୍ରୀ ପ୍ରତି ପ୍ରତିଶୋଧ ନେଇପାରିଛି ବୋଲି ।

ପ୍ରଥମ ଆବେଗ ସରିଗଲା । ମୁଁ ତା' କାନ୍ଧକୁ ଧରି ତାକୁ ସୋଫାରେ ବସେଇଲି । ସବୁ ଚାକ୍ରାଣୀତକ ଜଷ୍ଟ୍ ଗଲେ । ମୁଁ ଭାବିଲି ତାଙ୍କ ସହିତ ତୋର ଭେଟ ହେଲା ନା କ'ଣ ?

ଭେଟ ହୋଇଥାନ୍ତା । କିନ୍ତୁ ତାଙ୍କୁ ଦେଖି ମୁଁ ବଲ୍‌ଡ଼ିଂର ଆଡ଼ୁଆଳରେ ଠିଆ ହୋଇଗଲି । ସେମାନେ ଗଲାପରେ ମୁଁ ଏଠିକି ଆସିଲି ।

'ବଞ୍ଚିଗଲୁ ।'

'କାହିଁକି ?'

ତୁ ଜାଣିନୁ ଜୟଶ୍ରୀର ସ୍ୱଭାବ ।

କ'ଣ ଯେ କହୁଛୁ । ଏ ସ୍ତ୍ରୀମହଲା କୋଠାରେ ମୁଁ କାହା ଘରକୁ ଯାଉଛି ସେ କେମିତି ଜାଣିବ ?

ତତେ ଦେଖିନ ବୋଲି ବଞ୍ଚିଗଲି । ଦେଖିଥିଲେ କ'ଣ କରିଥାନ୍ତା ଜାଣିଛୁ ?

'କ'ଣ କରିଥାନ୍ତା ?'

କିଛି ଗୋଟେ କାରଣ ଦର୍ଶାଇ ସେ ଫେରିଆସି ଦେଖିଥାନ୍ତା ।

ରୁ ତୃତୀୟ ମହଲରେ ପଶିବା ଦେଖି ଜାଣିପାରିଥାନ୍ତା ।—ମୋର ପାଖକୁ ଅସିଛୁ । କାରଣ ଏ ମହଲରେ ଆଉ ଯେଉଁ ଦୁଇଟି ଘର ଅଛି, ତା'ର ଘରଣୀ-ମାନେ ତାର ସାଙ୍ଗରେ ଗଲେ । ସେମାନେ ତତେ ଚହ୍ନିଲେ ନାହିଁ । ତେଣୁ ରହିଲା କେବଳ ମୋର ଘର । ଅନୁରାଧା ମତେ ଖାଲି ଅନେଇ ରହିଲା ।

ତୋ ସ୍ୱାମୀ ଏବେ କୁଆଡେ ?

ଗ୍ଲାସ୍ଗ୍ ! ଅରେ ସ୍କଟ୍ଲାଣ୍ଡୟାର୍ଡ଼ ତାକୁ ଡକେଇଥିଲା । କିନ୍ତୁ ଆମ ସି.ବି.ଆଇ ତାକୁ ସିଧାସଳଖ ମନା କରିଦେଲା । କହିଲା, ଆମ ଦେଶପାଇଁ ସେ ବହୁତ ଜରୁରୀ ।

ଆମେଦୁହେଁ ଖୁବ୍ ହସିଲୁ । ଅନୁରାଧା ପଚାରିଲା— ସାହେବଙ୍କର ସତ୍କାର କରିବାକୁ ହେବ ।

ତା'ର ସତ୍କାର ? ସରକାର ମୋ ସତ୍କାର କରିବ । କାରଣ ଏତେବର୍ଷ ମୁଁ ଦୃଢ଼ତାର ସହ ମୁକାବିଲା କରିପାରିଛି ।

'ସତରେ ?'

ଅଫ୍କୋର୍ସ ।

ଦେଖିଲୁ କଷ୍ଟର ଫଳ ନିଶ୍ଚୟ ମିଳେ ।

ମିଳିବା ହିଁ ଦରକାର ।

ଗୁଡ଼ସନ୍ ଦେଇଥିଲେ ଏ ଧନ କ'ଣ ଦେଖିଥାଆନ୍ତୁ ?

ଅନୁରାଧାର ଏ ବାକ୍ୟଟି ମତେ ସ୍ତବ୍ଧ କରିଦେଲା ।

'ଅନୁ !'

ସୁନୀଲ ! ମୁଁ ସବୁ ଜାଣିଛି ।

କିନ୍ତୁ କେମିତି ?

'ତୋ ସ୍ତ୍ରୀର ସ୍ୱପ୍ନରେ ମୁଁ ଆସେ ଏକଥା ମଧ୍ୟ ···।'

ମୁଁ ମୋ ସ୍ଥାନରୁ ଉଠି ଅନୁ ପାଖକୁ ଗଲି । ତା' କାନ୍ଧ ଧରି ପଚାରିଲି—

ଅନୁ, ଏମିତି ଅଧା କଥା କହନା ! ସମୟ ବହୁତ କମ୍ । ଜମା ଚାରି ପାଞ୍ଚ ଘଣ୍ଟା । ଏହି ସମୟ ଭିତରେ ଆଦି ପର୍ବରୁ ଶାନ୍ତିପର୍ବ ପର୍ଯ୍ୟନ୍ତ ସବୁ କିଛି କହିବାର ଅଛି କହ ! ତତେ ଏସବୁ କିଏ କହିଲା ?

ଅନୁରାଧା କହିଲା—"ତୋ ଫାର୍ମର ପର୍ଚେଜ୍ ମ୍ୟାନେଜର ଶର୍ମା···।"

ମାଇଁ ଗୁଡ଼୍ନେସ ତା' ସହିତ ତୋର କେମିତି ଦେଖାହେଲା ?

'ସେ ଦଳ୍ପୀ ଆସିଲେ ଆମ ଘରେ ଉ୍ ଂକ୍ ପାର୍ଟି ନିଶ୍ଚୟ ହୁଏ ।' ମୁଁ ମୁଣ୍ଡରେ ହାତ ମାରି ବସିଗଲି ।

'ବେକାରରେ ଭଡେ ଏକଥା କହୁଲି ।'

'ବେକାରରେ ମୁଁ ଶର୍ମା ପାଖରେ ସବୁ କହିଲି ।'

'କାହିଁକ ? ମୁଁ ଜାଣିପାରିଲି ବୋଲି ?'

ନା···ସେଥିପାଇଁ ନୁହେଁ । ମନର ଦୁଃଖକୁ ଅନ୍ୟ ଆଗରେ ଢାଳିବସିବା ସ୍ୱଭାବ ମୋର ନାହିଁ । ଅକାରଣରେ କଥାଟି ଚୂର୍ଣ୍ଣବାଇଦ ହୁଏ । ଫାଲ୍ତୁ ଲୋକମାନେ ସେଥିରୁ ନିଜର ମନୋରଞ୍ଜନ କରନ୍ତି ।

ଶର୍ମା ସେଭଳି ଲୋକ ନୁହେଁ ?

ସେଥିପାଇଁ ତ କୌଣସି ଏକ ଦୁର୍ବଳ ମୁହୂର୍ତ୍ତରେ ତାକୁ ସବୁ କହିଲି । ଆମ ଘରେ ମଧ୍ୟ ଏମିତି ହଠାତ୍ ତୋ କଥା ପଡ଼ିଲା । କୌଣସି ଏକ ଟ୍ରାନ୍ସଫର୍ ସମୟରେ ତା' ବଦଳରେ ତୋର ଆସିବାର ଥିଲା । ସେତିକବେଳେ ତୋ ନାଁଟା ପ୍ରଥମେ ଆମ ଘରେ ଉଠିଲା । ମୁଁ ଟିକେ ବେଶୀକରି ପଚାରିବାରୁ ଅଧିକ ଖୋଲତାଡ଼ ହେଲା ।

'ଯ୍ ବ'ଣ ପଚାରିଲୁ ?'

ତୋ Jolly ସ୍ୱଭାବ ବିଷୟରେ ପଚାରିଲି ।

ତୋ ସ୍ୱାମୀ ସେଠି ଥିଲେ ?

ସେଠୁ କ'ଣ ହେଲା ।

'ପରେ ··'

ଶର୍ମା କହୁ କହୁ କହିଗଲା—Jolly but most unlucky; ସବୁ ଜାଣିପାରିଥାନ୍ତି । ତଥାପି ପଚାରିଲା ··କାହିଁକି ଅନ୍ଲକି ?

ମୁଁ କହିଲି ··ସେମିତି ମୁଁ ଅନ୍ଲକି ନୁହେଁ ।

ଘରଦ୍ୱାରର ଦରମା, ଫ୍ଲାଟ୍, ଫୋନ୍, ସବୁ କିଛି ଅଛି । କାଂରୁ ଅନୁରାଧା, ମଣିଷ କ'ଣ, କ'ଣ ସବୁ କମେଇଲି ତା' ଲଷ୍ଟ୍ ଅନ୍ୟ ପାଖରେ ଥିଲେ ମଧ୍ୟ ଭ'ଣ ସବୁ ହାତ ଛଡ଼ା କଲି ତା' ଲଷ୍ଟ୍ ତାର ପାଟରେ ଥାଏ ।

ମୋ କଥାଟି ଅନୁରାଧା ମନକୁ ଏତେ ପାଇଲା ଯେ, ତାଲପାଇଁ ସେ ହାତ ଆଗକୁ ବଢ଼େଇଲା । ସେ ହାତକୁ ମୁଁ ହାତରେ ଧରି କହିଲି—ତୋ ହାତଟା ମଧ୍ୟ ଜସୁଣୀ ହାତ ଭଳି ନରମ ।

"ତା' ହେଲେ ମୋ ପାଇଁ କାହିଁକି ଝୁରୁଛୁ ?"

ରାଧା, ଏମିତି ଫାଲ୍ତୁ କଥା କହନା ?

ଫାଲ୍‌ରୁ ନାହିଁ, କିଂରୁ ସତ କହ । ମୁଁ ନାହିଁ ବୋଲି ତୋ'ର କ'ଣ ଅସୁବିଧା ହେଉଛି ?

ଯେମିତି ଯଦି ଭାବବି, ତା'ହେଲେ ଦଦକର ପିଲଟିର ମଧ୍ୟ ମା' ବାପ ବନା ସବୁ ସୁରୁଗୁରୁଭେ ହୁଏ । ଚେଣ୍ଟୁ ଛେଉଣ୍ଡ ହେବାଟା କ'ଣ ସୁଖଦାୟକ ?

ଦେଖ୍ ସଙ୍ଗେ ସଙ୍ଗେ ପିଇପ୍ସସ୍ ହୋଇଗଲୁ ।

ସମସ୍ତ ହାତରେ ନାହିଁ । ଆହ ରୁ ଫାଲ୍‌ରୁ କଥା କହୁଛୁ ? ହଉ ଛାଡ଼ । ତୋର ପୁଅ କାହିଁ ?

ମୁଁ ପିଲଙ୍କୁ କ'ଣ ସାଙ୍ଗରେ ଆଣିଛୁ ?

ସକାଳେ ଯେଉଁ ପିଲ—

'ମୁଁ ଭାବଥିଲି, ତୁ ସେହି କଥା କହିବୁ ବୋଲି । ସେ ମୋ ନଣନ୍ଦର ପୁଅ । ସୁନୀଲ ! ମୋ ବାହାଘରକୁ ଅଠର ବର୍ଷ ହେଲଣି···। ଏ ବୟସରେ—'

'ଉସ୍‌ମେ କ୍ୟା ବଡ଼ ବାତ୍ ?'

ହୁଁ, କହୁଛୁ କେମିତି ଉସମେ କ୍ୟା ବଡ଼ ବାତ୍ ବୋଲି ! ଏ ବୟସରେ ଯଦି ଜନ୍ମଗୀର ପିଲ ହୁଏ ତତେ କେମିତି ଲାଗିବ ?

ମୁଁ ଚୁପ୍ ହୋଇଗଲି । ମୋ ଚେହେରା ବଦଳିଲା ବୋଧେ । ସେ ହଠାତ୍ କହିଲା—

"I am sorry !"

"It's alright."

ମୁଁ ଭାବିଲି ଶର୍ମା ତତେ ଏକଥା କହିଥିବ ।

ମୁଁ ଡଟେଲ୍ ପଚାରିଥିଲେ କଷ୍ଟସ୍ତ କହିଥାନ୍ତା । ମୁଁ ପଚାରିଲି ନାହିଁ ।

ଡରିଗଲୁ ?

ସେମିତି କହୁ ।

କାହିଁକି ?

ତୋ ଲାଇଫ୍‌ର···

ଓ ଓ୍ୱାଇଫ୍‌ର ମଧ୍ୟ ।

ହଁ, ଏ ବିଷୟରେ ଜାଣିବା ପରେ ବେଶୀ ଖୋଳତାଡ଼ କରିବାକୁ ସାହସ ହେଲନାହିଁ ।

ମୋତେ ମୋର ସ୍ୱାସ୍ଥ୍ୟ ବିଷୟରେ ଡର ଲାଗିଲା ।

'ସତ କହୁଛୁ ଅନୁ ?

ଯାବଲ୍ ଯାହାସବୁ ତୋର ହବା କଥା, ସେସବୁ ଆଉ କେହି ଜଣେ ଉପଭୋଗ କରୁଛି। ସବୁଠୁ ଭୟଙ୍କର କଥା କହିବି—ସେ ଆଉ କେହିଜଣେ ମଧ୍ୟ ମୋପାଇଁ ସେତିକି ପ୍ରିୟ ହୋଇଛି।

'ତୋ ସ୍ୱାମୀକୁ ତୁ ଏତେ ଭଲ ପାଉଛୁ ?'

ତୁ କ'ଣ ଜୟଶ୍ରୀକୁ ଭଲ ପାଉନୁ ?

ମୁଁ ଚୁପ୍ ହୋଇଗଲି। ସେ ଅତି ତୃପ୍ତିରେ ପଚାରିଲା। ଏମିତି ଥାଏ ଓ ଏମିତି ହବା ଦରକାର।

ମାନେ, ତୁ ମତେ ଭୁଲିଗଲୁ। ମୋ ବିଷୟରେ ଭାବୁନା ?

'ଭାବେ।'

କେତେଥର ?

ଏମିତି କେବେ ମନେ ପଡ଼ିଗଲେ। କିନ୍ତୁ ସେତେବେଳେ ସବୁ ଜୀବନଟା ଘାଣ୍ଟି ହୋଇଯାଏ।

ମତେ ଭଲ ଲାଗୁ ବୋଲି କହୁଛୁ ?

ନା—ସତରେ ସବୁକିଛି ଘାଣ୍ଟି ହେଲା ପରି ଲାଗେ—ଯେତେବେଳେ ତୋ କଥା ଭାବେ। "ଏ ସଂସାରଟା ଏକ ଧୀର ଗମ୍ଭୀର, ଉଦାତ୍ତ ରାଗଦାରୀ ଭଳି। ଘଣ୍ଟା ଧରି ଚାଲୁଥିବ। ଠାୟ, ବିଲମ୍ବିତ, ଦ୍ରୁତର ପାହାଚ ପାହାଚ ଦେଇ ବିକଶିତ ହୁଏ। କେବେ କେବେ ଅତି ମନ୍ଥର ଉଦାସ ଲାଗୁଥିବା, ବିରକ୍ତିକର ବୋଧ ହେଉଥିବା, ସେଥିରେ ତୋ ଭଳି ବନ୍ଧୁର ମନେପଡ଼ିଯିବା ରାଗଦାରୀ ପରେ ଆସୁଥିବା ଠୁମୁରି ଭଳି ଲାଗେ। ଦଶ ମିନିଟ୍‌ରେ ସରିଯାଏ। କିନ୍ତୁ ପୂରା ସଙ୍ଗୀତ ସଭାକୁ ମତୁଆଲି କରିଦିଏ।

ଅନୁରାଧାର କଥାରେ ମୋ ଆବେଗ ଓତ୍ପ୍ରୋତ ହେଲା। ମାନସିକ ଦୁର୍ବଳତା ଯୋଗୁଁ ଥକିଗଲି। ତା' ସଙ୍ଗଲାଭର ଗ୍ଲାନିରେ ମୁଁ କ୍ଲାନ୍ତ ହୋଇପଡ଼ିଲି। ମୁଁ ତାକୁ ଅନେଇ ରହିଥିଲି। ସେ ମୋ ମୁଣ୍ଡକୁ ଧରି ତା' କୋଳରେ ରଖିଲା। ମୋ ମୁଣ୍ଡ ବାଳରେ ହାତ ବୁଲେଇ ବୁଲେଇ କହିଲା—

କାଲୁ ସୁନିଲ୍... ବେଳେ ବେଳେ ରାଗଦାରୀରେ କେତେଗୁଡ଼ିଏ ବର୍ଜିତ ସ୍ୱର ଥାଏ। ତା' ପାଇଁ କ'ଣ କରାଯିବ ? ସେଥିପାଇଁ ତୋ ମନେ ପଡ଼ିବାରେ ମୋ ସ୍ୱାମୀର ସ୍ଥାନ ନାହିଁ। ଆଉ ଆମ ପରସ୍ପରର ସଂସାରରେ ଅର୍ଥାତ୍ ତୋ ସଂସାରରେ ମୋର ଓ ମୋ ସଂସାରରେ ତୋର ସ୍ଥାନ ନାହିଁ। ବର୍ଜିତ ସ୍ୱରଟା ଅଦରକାରୀ ବୋଲି ବର୍ଜିତ ହୁଏ। ଆଉ ଏକ ରାଗଦାରୀର ନିର୍ମାଣ ପାଇଁ ତାକୁ ବର୍ଜିତ କରାଯାଏ। ତେଣୁ ଖୁସିରେ ତାକୁ ଭୁଲିଯିବା ହିଁ ଶ୍ରେୟସ୍କର। ବର୍ଜିତ ସ୍ୱରର ତା'ରକୁ ଆମେ କ'ଣ ଛୁଇଁପାରୁ ? କେବଳ Over-lap କରୁ।

ତୋ କଥା ମୁଁ ବୁଝୁଛି, ଜାଣୁଛି । କିନ୍ତୁ ସପ୍ତସ୍ୱରରୁ କେଉଁ କେଉଁ ସ୍ୱରକୁ ବର୍ଜିତ କରିବ ?

ତୋର ଯଦି ପିଲାପିଲି ଥା'ନ୍ତେ ତେବେ ତୁ ଏତେ ଫିଲ୍ କରି ନ ଥାଆନ୍ତୁ । ସେମାନେ ଏ ଜୀବନକୁ ଭରିଦିଅନ୍ତି ।

ହୋଇଥିବ ।

ତୁ ଜୟଶ୍ରୀକୁ କୌଣସି ସ୍ପେଶାଲିଷ୍ଟଙ୍କୁ ଦେଖାଉନୁ ?

ସବୁ ସରିଗଲାଣି । ଦୂଇ ଜନଷ୍ଟା ଆବ୍‌ସେସନ୍ ହୋଇଗଲା । ସତ କହିଲେ— ଏଥର ମନ ମରିଗଲାଣି, ଡର ମଧ୍ୟ ଲାଗୁଛି ।

କି ଡର ?

ପିଲାଗୁଡ଼ିକ ଯଦି ତା'ର ଭଳି ସନ୍ଦେହୀ ହେଲେ ?

'ପାଗଳଟା ।'

ପରିସ୍ଥିତି କରିଛୁ ।

ଏ ଦିନ ବି ସରିଯିବ । Don't worry···

'ରାଧା···'

ଏମିତି ଶୋଇଥା···You need rest.

ସୁନୀଲ୍, ଆଜି ତୁ ମୋତେ ସମ୍ଭାଳି ନେଲୁ ।

ଶଲ୍‌କ୍ଲଲ ନୁହେଁ, ପୁଣି ଥରେ ପରିସ୍ଥିତି ଆମକୁ ସମ୍ଭାଳି ନେଲା ।

'No, No, Surely not.'

ଅନୁ, ଜୟଶ୍ରୀର ସନ୍ଦେହୀ ସ୍ୱଭାବ ଯୋଗୁଁ ବିଗତ ପନ୍ଦର ବର୍ଷ ମୁଁ ଯାହାସବୁ ସହିଛି, ସେଥିରେ ମନ ମରିଗଲାଣି । ବହୁତ କିଛି ମୁଁ କରିପାରିଥାନ୍ତି, କିନ୍ତୁ କଲିନାହିଁ । ତେଣୁ ଦମ୍ଭରେ ଠିଆ ହୋଇଛି ।

ଅନୁରାଧା କିଛି କହିଲା ନାହିଁ । ଯିବ ଯିବ କହି କବାଟ ପାଖରେ ଠିଆ ହୋଇ ରହିଲା ।

ସାତଟା ବାଜିବାକୁ ଆସିଲାଣି । ରାଧା ତତେ ଏଥର ଯିବାକୁ ହେବ । ମୁଁ ତତେ ଛାଡ଼ିବା ପାଇଁ ତଳକୁ ଯିବାର ସାହାସ କରିପାରିବି ନାହିଁ । ତୋ ସହିତ ଏହି ଭେଟ ମତେ ଆଉ ପନ୍ଦର ବର୍ଷ ତରିନେବ । ସଙ୍ଗୀତ ବିଷୟରେ ମୁଁ ଅଜ୍ଞ । ତଥାପି ଠୁମୁରର ଅର୍ଥ ବୁଝିପାରିଲି । ପନ୍ଦର ବର୍ଷ ପରେ ଆମେ ସମସ୍ତେ ବୁଢ଼ା ହୋଇଯାଇଥିବୁ । ସେତେବେଳେ ମିଷ୍ଟର ଅନୁରାଧା ଓ ମିସେସ୍ ସୁନୀଲ—ଦୁହିଁଙ୍କ ପ୍ରେଜେନ୍ସ୍‌ରେ ମୁଁ ତୋ କୋଳରେ ମୁଣ୍ଡ ରଖି ଶୋଇଲେ ମଧ୍ୟ ସେମାନେ ଫିଲ୍ କରିବେ ନାହିଁ ।

ଅନୁରାଧା ହସିଲା—"ସତରେ ! ତୁ'ଟା ପାଗଳ ।"

ଭାବୁଛ, କ'ଣ ହେଲା··· ?

ଆରେ ପନ୍ଦର ବର୍ଷ ପରେ ଯେମିତି ଶୋଇବା ପାଇଁ ଚୋର ଇଚ୍ଛା ମଧ୍ୟ ହେବ ନାହିଁ, ଏକଥା ଭାବୁଛୁ ?

ଜୟଶ୍ରୀ ସିନେମା ଦେଖି ଫେରିଲା । ଯେତେ ଯେମିତି ହାଓ୍ୱାରେ ଉଡ଼ି ଉଡ଼ି ଆସିଲା । ଆସିବା ମାତ୍ରେ ବେଡ୍‌ରୁମ୍‌କୁ ଗଲା । ଏଥର ଲାଇଟ୍ ନମ୍ବର୍ - ବ୍ଲୁ କଲା । ପଛେ ପଛେ ମୁଁ ଗଲି । ଅନୁର ଝିଅଟି ଧରେ ମୋ ମନ ପ୍ରଫୁଲ୍ଲିତ ହୋଇଥିଲା । ଏଭୁଲକ୍ଷଣରେ ମୁଁ କେବଳ ଜୟଶ୍ରୀକୁ ଚାହୁଁଥିଲି । ଦିନଟା ଭାବନାରେ କଟିଥିଲା । ଏଥର ସନ୍ଧ୍ୟା ଓ ରାତିଟା ମଧ୍ୟ ମସ୍ତିରେ କଟିବ ।

ଜୟଶ୍ରୀ ମଧ୍ୟ ମୁଡ୍‌ରେ ଥିଲା ।

ଅନୁରାଧା ଥିଲାବେଳେ ଯେଉଁ ପକ୍ଷୀଙ୍କୁ ମୁଁ ଲଗାମ ଦେଇ ରଖିଥିଲି । ସେମାନେ ଲଗାମ ଛଡ଼ା ହେଇଗଲେ । ତା' ପାଖରେ ଯାଇ ବସିଲି । ମୋ କାନ୍ଧରେ ମୁଣ୍ଡକୁ ରଖି ସେ କହିଲା—'ମୁଁ ବଢ଼ିଆ ମୁଡ୍‌ରେ ଅଛି ।'

ବଣ୍ଟୁ ତ ! ସିନେମା କେମିତି ଥିଲା ।

ବାର ବାର ଦେଖିଲି ଭଲ···

Is it ? (ଇଜ୍ ଇଟ୍)

ମୁଁ ତମକୁ ଜାଣିନେବ । ସବୁବେଳେ ହିନ୍ଦୀ ସିନେମାକୁ criticise କରୁଛ । ଏଟା ଦେଖ ।

ଏତେ ଭଲ ମାନେ ଷ୍ଟୋରି ନିଶ୍ଚୟ ଗ୍ରେଟ୍ ହୋଇଥିବ ।

ସେମିତି ଲାଗୁନାହିଁ । ଏଭଳି ଷ୍ଟୋରି everywhere possible । Story ଶୁଣିବ ?

ନିଶ୍ଚୟ, କହ ।

ତା କାହାଣୀ ଶୁଣି ଏମିତି ଲାଗିଲା—ସତେ ଯେପରି ଏହି କିଛି ସମୟ ପୂର୍ବରୁ ଘଟିଯାଇଥିବା ଷ୍ଟୋରି କଥା କହୁଛି ·· ।

ମୁଁ ତମପାଇଁ ଗୋଟିଏ ଜିନିଷ ଆଣିଛି ।

ସୁନାପିଲା ଭଳି ଘରେ ଏକୁଟିଆ ରହିଲ ବୋଲି ।

କିନ୍ତୁ ସେ ଉଠି ଚାଲିଗଲା । ମୁଁ ପଚାରିଥିବା ପ୍ରଶ୍ନର ମଧ୍ୟ ହିଁ ହସ ଲାଗିଲା । କିନ୍ତୁ ତାହା ଥିଲା ମୋର ଶେଷ ହସ । ରାଗରେ ଥର ଥର ହୋଇ ଜୟଶ୍ରୀ ମୋ ସମ୍ମୁଖରେ ଆସି ଠିଆହେଲା ।

କିଏ ଆସିଥିଲା ? ସେ ଗର୍ଜି ଉଠିଲା ।

ତା' ହାତରେ ଗଜରା ଥିଲା । ମୁଁ ଅଜ କପର ଅନୁରାଧାକୁ ଫେରାଇବାକୁ ଭୁଲିଗଲି ?

କିଏ ଆସିଥିଲା କୁହ ?

ଏ ଘରର କାନ୍ଥଗୁଡ଼ିକ, ଖାଲି ଉଥର ଚକ ନୁହଁ, ଆମ ସଂସାରର ପୂର୍ବ ଉଥନ୍ତି ଗିଳି ଦେଉଥିଲା ।

'ଅନୁରାଧା !'

ମୁଁ କହିଦେଲି । Truth is a shortcut.

ସେହିଦିନଠୁ ରାଣୀ ରୁଷିଛୁ । ଗୋଳମର ପରିସ୍ଥିତି ଅତି ଗୁରୁତର । ଘରକୁ ଆସୁଥିବା ପ୍ରତ୍ୟେକ ଲୋକ ସହିତ ସେହି ସିନେମା ବିଷୟରେ ଚର୍ଚ୍ଚା ଚାଲିଛି ।

ଜୟଶ୍ରୀ କହୁଛି । ମୁଁ ଦୁଆର ମୁହଁରେ ଠିଆହୋଇ ସବୁ ଶୁଣୁଛି । କିନ୍ତୁ ଯାହା ବି କୁହ, ଏଭଳି ଆଦର୍ଶ ପୁରୁଷ କେବଳ ସିନେମାରେ ହିଁ ସମ୍ଭବ । ପ୍ରତ୍ୟକ୍ଷରେ ଏଭଳି ସଂଯମୀ ପୁରୁଷ ମିଳିବା କଷ୍ଟକର । ମିଳିଥିବା chance କୌଣସି ପୁରୁଷ କେବେ ଛାଡ଼ିଲାଣି । ନାଟକ, ସିନେମା, ଉପନ୍ୟାସରେ ଏସବୁ ଥାଏ ।

ସେହି ଦୁଆର ମୁହଁରୁ ଜୟଶ୍ରୀ ଉଦ୍ଦେଶ୍ୟରେ ପାଟିକରି ମୋର କହିବାର ଇଚ୍ଛା ହେଲା—

'ହେ ମୂର୍ଖ ସ୍ତ୍ରୀ ! ଏଭଳି ଏକ ମର୍ଯ୍ୟାଦା ପୁରୁଷୋତ୍ତମ ଏକ୍ଷଣରେ ତୋ ଦୁଆର ମୁହଁରେ ଠିଆହୋଇଛି ।'



ମୁଦ୍ରଣ—ନୋବେଲ୍ ପ୍ରିଣ୍ଟର୍ସ, ନେତାଜୀନଗର, କଟକ-୧୦

